ଶୂଦ୍ରମୁନି ଶାରଳାଦାସଙ୍କ କୃତ

# ମହାଭାରତ

## ଭୀଷ୍ମ ପର୍ବ

भीष्मपर्व



ମୂଲ୍ୟ ଟ ୧୧-୦୦

ପ୍ରକାଶକ
ଶ୍ରୀରାଧାରମଣ ପୁସ୍ତକାଳୟ, ନମିଚଉଡ଼ି, କଟକ - ୨

ମହାଭାରତ—ଭୀଷ୍ମପର୍ବର

# ସୂଚିପତ୍ର




| ବିଷୟ | ପୃଷ୍ଠା |
| --- | --- |
| ଗଣେଶଙ୍କ ବନ୍ଦନା | ୨ |
| ଶିବ ଓ ବିଷ୍ଣୁଙ୍କର ସ୍ତବ | ୩ |
| ଶାରଳାଙ୍କ ବନ୍ଦନା | ୩ |
| ଦୁର୍ଯ୍ୟୋଧନ ଭୀଷ୍ମଙ୍କୁ ସେନାପତି ପଦରେ ବରଣ | ୪ |
| ପ୍ରହ୍ଲାଦ ଚରିତ | ୭ |
| ଭୂରିଶ୍ରବାଙ୍କ ଦ୍ୱାରା କୃଷ୍ଣ ଅର୍ଜୁନଙ୍କର ବୀରତ୍ୱ ବର୍ଣ୍ଣନ ଓ ରଥିମାନଙ୍କୁ ସୈନ୍ୟ ବଣ୍ଟନ | ୧୨ |
| ସମରର ଅନୁକୂଳ ପ୍ରସ୍ତାବେ ଭୀଷ୍ମଙ୍କ ସହିତ ଜ୍ୟୋତିର୍ବିଦ ବାମଦେବଙ୍କ କଥୋପକଥନ | ୧୫ |
| କୌରବ ପାଣ୍ଡବଙ୍କର ଯୁଦ୍ଧସଜ୍ଜା | ୨୦ |
| କୁରୁ ପାଣ୍ଡବଙ୍କର ସୈନ୍ୟସହ ସମର କ୍ଷେତ୍ରେ ପ୍ରବେଶ | ୨୪ |
| ଶ୍ରୀକୃଷ୍ଣଙ୍କ ଦ୍ୱାରା ବର୍ବରୀସେନର ଶିରଚ୍ଛେଦ | ୩୦ |
| କୁରୁସୈନ୍ୟଙ୍କୁ ଶର ପ୍ରୟୋଗ କରିବାକୁ ଅର୍ଜୁନଙ୍କର ଅନିଚ୍ଛା ଓ ଶ୍ରୀକୃଷ୍ଣଙ୍କ ପ୍ରବର୍ତ୍ତନା | ୩୨ |


## କୃଷ୍ଣାର୍ଜୁନ ସମ୍ବାଦ ଓ ଭଗବଦ୍ ଗୀତା


| | |
| --- | --- |
| ୧ । (ଅର୍ଜୁନ ବିଷାଦ ଯୋଗ) | ୩୬ |
| ୨ । (ସାଂଖ୍ୟ ଯୋଗ) | ୩୮ |
| ୩ । (କର୍ମ ଯୋଗ) | ୪୧ |
| ୪ । (ଜ୍ଞାନ ଯୋଗ) | ୪୩ |
| ୫ । (କର୍ମସନ୍ନ୍ୟାସ ଯୋଗ) | ୪୬ |
| ୬ । (ଅଭ୍ୟାସ ଯୋଗ) | ୪୭ |
| ୭ । (ଜ୍ଞାନବିଜ୍ଞାନ ଯୋଗ) | ୫୦ |
| ୮ । (ଅକ୍ଷର ବ୍ରହ୍ମ ଯୋଗ) | ୫୧ |
| ୯ । (ରାଜଗୁହ୍ୟ ଯୋଗ) | ୫୨ |
| ୧୦ । (ବିଭୂତି ଯୋଗ) | ୫୪ |
| ୧୧ । (ବିଶ୍ୱରୂପ ଦର୍ଶନ ଯୋଗ) | ୫୬ |
| ୧୨ । (ଭକ୍ତି ଯୋଗ) | ୫୯ |
| ୧୩ । (କ୍ଷେତ୍ର କ୍ଷେତ୍ରଜ୍ଞ ବିଭାଗ ଯୋଗ) | ୫୯ |
| ୧୪ । (ଗୁଣତ୍ରୟ ବିଭାଗ ଯୋଗ) | ୬୧ |

| ବିଷୟ | ପୃଷ୍ଠା |
| --- | --- |
| ୧୫ । (ପୁରୁଷୋତ୍ତମ ଯୋଗ) | ୬୨ |
| ୧୬ । (ଦେବାସୁର ସମ୍ପଦ ବିଭାଗ ଯୋଗ) | ୬୩ |
| ୧୭ । (ଶ୍ରଦ୍ଧାତ୍ରୟ ବିଭାଗ ଯୋଗ) | ୬୪ |
| ୧୮ । (ମୋକ୍ଷ ଯୋଗ) | ୬୫ |
| ରଣକ୍ଷେତ୍ରେ ଯୁଧିଷ୍ଠିର ପଡ଼ା ମାଗିବା ନିମନ୍ତେ ପୁନର୍ବାର ଗମନ ଓ ଦୁର୍ଦ୍ଧର୍ଷର ଶରଣ | ୬୮ |
| ଦୁର୍ଦ୍ଧର୍ଷ ସହିତ କୌରବମାନଙ୍କ ଯୁଦ୍ଧ ଓ ତାରକ୍ଷୀ ଡିମ୍ବ ଘଣ୍ଟଦ୍ୱାରା ରକ୍ଷା | ୭୫ |
| ଭୀଷ୍ମଙ୍କର ପ୍ରଥମ ଦିନର ଯୁଦ୍ଧ ଓ ତାରକ୍ଷୀ ପକ୍ଷୀର ବିବରଣ | ୮୧ |
| ଦ୍ୱିତୀୟ ଦିନ ଯୁଦ୍ଧରେ ଭୀଷ୍ମ କର୍ତ୍ତୃକ ପାଣ୍ଡବଙ୍କର ଦଶସହସ୍ର ଯୋଦ୍ଧା ପତନ | ୮୭ |
| ଭୀଷ୍ମଙ୍କ ନିକଟରେ ପୁରୋହିତ ଅନ୍ନଦାନ କଥା ବର୍ଣ୍ଣନ | ୯୫ |
| ଭୀଷ୍ମଙ୍କ ତୃତୀୟ ଦିନ ଯୁଦ୍ଧ ଓ ଚତୁର୍ଥ ଦିନ ଶ୍ୱେତ ସେନାପତି ପଦେ ନିଯୁକ୍ତ | ୯୮ |
| ପଞ୍ଚମ ଦିନ ଯୁଦ୍ଧରେ ଦ୍ରୋଣଙ୍କ ବ୍ରହ୍ମାସ୍ତ୍ରରେ ଶ୍ୱେତର ପତନ | ୧୧୦ |
| ଷଷ୍ଠଦିନ ଯୁଦ୍ଧରେ ଭୀଷ୍ମଙ୍କ ଅମୋଘ ଶକ୍ତି ପ୍ରେରଣ ଓ ଶ୍ରୀକୃଷ୍ଣଙ୍କ ଚକ୍ରଦ୍ୱାରା ତାହା ଛେଦନ ଏବଂ ବଳରାମଙ୍କ ତୀର୍ଥ ଭ୍ରମଣ | ୧୧୭ |
| ଭୀଷ୍ମ ଓ ଅର୍ଜୁନଙ୍କ ସପ୍ତମ ଦିନ ଯୁଦ୍ଧ | ୧୨୨ |
| ଭୀଷ୍ମଙ୍କର ଅଷ୍ଟମ ଦିନ ଯୁଦ୍ଧ ଓ ଅଗ୍ନିଙ୍କଠାରୁ ଅର୍ଜୁନର ଶରପ୍ରାପ୍ତ | ୧୨୨ |
| ଭୀଷ୍ମଙ୍କର ନବମ ଦିନ ଯୁଦ୍ଧ ଓ ଦୁର୍ଯ୍ୟୋଧନ ନିକଟରୁ ଅର୍ଜୁନର ଅନର୍ଘ ମଣି ମୁକୁଟ ଆନୟନ | ୧୩୦ |
| ଭୀଷ୍ମଙ୍କର ଶରଶଯ୍ୟା | ୧୩୭ |


—ଭୀଷ୍ମପର୍ବ ସୂଚିପତ୍ର ସମ୍ପୂର୍ଣ୍ଣ—



# ମହାଭାରତ

## ଭୀଷ୍ମ ପର୍ବ



ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ॥

ତଂ ବେଦଶାସ୍ତ୍ରପରିନିଷ୍ଠିତଶୁଦ୍ଧବୁଦ୍ଧିଂ,
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୁତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଲାପଂ,
ବ୍ୟାସଂ ନମାମି ଶିରସା ତିଳକଂ ମୁନୀନାଂ ॥

ଆଦୌ ଧୃତରାଷ୍ଟ୍ରପାଣ୍ଡୁଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୂତେ ସ୍ତ୍ରୀହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳା ଗୋ ହରଣଂ ହ୍ୟନେନ ଚରଣଂ ସନ୍ଧିକ୍ରିୟା ଜୃମ୍ଭଣଂ,
ଭୀଷ୍ମଦ୍ରୋଣସୁଯୋଧନାଦି ଦଳନଂ ଏତନ୍ମହାଭାରତଂ ॥

ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନାବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ ସତ୍କର୍ଣ୍ଣଧାରେ ହରିଃ ॥

ଆଦ୍ୟପର୍ବଂ ସଭାପର୍ବଂ ପର୍ବମାରଣ୍ୟକଂ ତଥା ।
ବିରାଟପର୍ବଂ ବିଜ୍ଞେୟଂ ଚତୁର୍ଥଂ ତଦନନ୍ତରଂ
ଉଦ୍ୟୋଗଂ ପଞ୍ଚମଂ ପର୍ବଂ ଭୀଷ୍ମପର୍ବଂ ତତଃପରଂ ।
ସପ୍ତମଂ ଦ୍ରୋଣପର୍ବଂ ସ୍ୟାତ୍ କର୍ଣ୍ଣପର୍ବଂ ତଥାଷ୍ଟମଂ ॥
ନବମଂ ଶଲ୍ୟପର୍ବଂସ୍ୟାତ୍ ଗଦାପର୍ବଂ ତତଃପରଂ ॥
ସୌପ୍ତିକଂ ତୁ ତଥା ପ୍ରୋକ୍ତଂ ଗର୍ଭନାଶନମେବ ଚ ।
ତ୍ରୟୋଦଶଂ ତୁ ସ୍ତ୍ରୀପର୍ବଂ ପ୍ରଦାନମୁଦକସ୍ୟ ତୁ
ଶାନ୍ତିପର୍ବଂ ତତଃ ପ୍ରୋକ୍ତଂ ଅଶ୍ୱମେଧିକମେବ ଚ

ସ୍ୱର୍ଗାରୋହଣକଂ ଚୈବ ହରିବଂଶଂ ତଥୈବ ଚ
ଇତ୍ୟଷ୍ଟାଦଶପର୍ବାଣାଂ ସଂଖ୍ୟା ଦ୍ୱୈପାୟନେରିତାଃ ।
ହେମନ୍ତେ ପ୍ରଥମେ ମାସି ଶୁକ୍ଳପକ୍ଷେ ତ୍ରୟୋଦଶେ
ପ୍ରବୃତ୍ତଂ ଭାରତଂ ଯୁଦ୍ଧଂ ନକ୍ଷତ୍ରେ ଯମଦୈବତେ
ଭାରତ ଶ୍ରୁତମାତ୍ରେଣ ଗଙ୍ଗାସ୍ନାନେନ ମାନବଃ
ବିଷ୍ଣୁ ସ୍ମରଣ ମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ।
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷଂ
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ।
ତତ୍ରୈବ ଗଙ୍ଗା ଯମୁନା ଚ ତତ୍ର, ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣି ତୀର୍ଥାନି ବସନ୍ତି ତତ୍ର, ଯତ୍ରାଚ୍ୟୁତୋଦାର କଥା ପ୍ରସଙ୍ଗଃ ।

## ଗଣେଶଙ୍କ ବନ୍ଦନା

ଜୟ ତୁ ଦଧିବାମନ ମୂର୍ତ୍ତି ବିଘ୍ନରାଜ
ଦର୍ଶନେ ପ୍ରସନ୍ନେ ସିଦ୍ଧି କରୁ ସର୍ବକାର୍ଯ୍ୟ ।
ସୁସିଦ୍ଧ ପୁରୁଷ ନାଥ ସଦା ରସେ ଭୋଳ
ମୁହିଁ ତାହା ଲେଖିଲଇଁ ଶ୍ୱେତଗଙ୍ଗା କୂଳ
ଆଦ୍ୟାବତାରେ ଶୂଦ୍ରକ ନାମେ ଏକ ବ୍ରହ୍ମା
ବହୁକାଳ ବଞ୍ଚେ ତୋତେ ଧ୍ୟାୟି ମହାତ୍ମା ।
ମୂଷିକ ବାହନେ ନୃତ୍ୟରଙ୍ଗେ ସଦା ଭୋଳା
ମତ୍ତ ସଙ୍ଗୀତେ କରୁ ତୁ ତାଣ୍ଡବରେ ଲୀଳା ।
କଟିରେ ଘଣ୍ଟି ଘାଗୁଡ଼ି ଶୋଭଇ ତୋହର
ଦିନକର ତେଜସମ ପର୍ଶୁ କରେ ତୋର ।
ସ୍ୱାମୀ ସ୍କନ୍ଦ ବାମପାଦ ପ୍ରହାରିଲେ ତୋତେ
ଦକ୍ଷିଣ ଦନ୍ତ ତୋହର ଭାଙ୍ଗିଲା ସେ ଘାତେ
ସେ ଭଗ୍ନ ଦନ୍ତ ଖଣ୍ଡକ ପଡ଼ନ୍ତେ ପୃଥ୍ୱୀରେ
ରସାଗତ ହୋଇଥାନ୍ତା ପୃଥ୍ୱୀ ତା ଭରରେ
ତାହା ଦେଖି ତୋତେ କହୁଁ ଦେବ ଶୂଳପାଣି
ବାମଭୁଜେ ସେ ଦନ୍ତକୁ ସଂହରିଲୁ ଆଣି ।
କୋପ ସଂହର ନ ପାରି କ୍ରୁଦ୍ଧ ହୋଇ କ୍ରୋଧୀ
କୋଇଲୁ ଭ୍ରାତ ତୋ ପାଦେ ହେଉ କୁଷ୍ଠବ୍ୟାଧି
ଯେତେ କହିଲେ ବ୍ୟାଧିରୁ ନୋହିଲେ ସେ ରକ୍ଷା
ଅପାର ନାସ୍ତି କରଣ ଛୁହାଇଲୁ କକ୍ଷା ।
ଅମୃତ ଭୋଜନେ ତୋର ମାନସ ତୃପତ
ନୃତ୍ୟ ରଙ୍ଗରେ ତୋହର ବିନାୟକ ମୂର୍ତ୍ତି ।
ଝମଝମ ତୋ ପାଦରେ ବାଜଇ ନୂପୁର
ଟଳଇ ଗିରି କନ୍ଦର ପାଦଭରେ ତୋର ।
ଗର୍ଜନ୍ତି ପଇତା ହୋଇ ତୋର ଅଙ୍ଗେ ଫେଣ୍ଟୁ
ବ୍ରହ୍ମାଣ୍ଡ କମ୍ପେ ତୋହର ବାଜନ୍ତେ ଡମ୍ବରୁ ।
ମେରୁ କମ୍ପିଲା କାଞ୍ଚିରେ ବ୍ରହ୍ମ ବେନି ଆଖି
ଅପସରା ଭଜନ୍ତେ ତୋର ନୃତ୍ୟ ଦେଖି ।
ଶ୍ରୀଭୁଜରେ ଶୋଭେ ତୋର ଅମୃତ ଲଡ଼ୁ ଟି
ସା ରି ଗା ମା ପା ଧା ନି ସା ସୁରଧାରେ ରଟି
ସ୍ୱାମୀ ମାଳବ ବସନ୍ତ ରାଗ ଭଇରବୀ
ମାଳଶିରୀ ନାରାୟଣୀ ଗୌରୀ ରାଗ ଭାବ ।
ରାଗରାଜା କର୍ଣ୍ଣାଟି ଯେ ମଙ୍ଗଳ ଭୋପାଳ
ମହ୍ଲାର ଅମର ଆଉ ଭୂପାଳ ନେପାଳ ।
ରାଗରାଜା ମାଳବ ଯେ ବଙ୍ଗଳା ଧନାଶ୍ରୀ
ମଧୁକେଶୀ ରାମକେଶୀ ବରାଡ଼ି ମାଳଶ୍ରୀ ।
ରାଗରାଜା ଦେଶାକ୍ଷ ଯେ ଦେଶ ଚନ୍ଦ୍ରାଦେଶୀ
ହିନ୍ଦୋଳ ଦେଶୀ ଭୈରବୀ ବିଧାନ ବିଭାଷୀ
ରାଗରାଜା ଗୁଜ୍ଜରୀ ଯେ ଅକଲ ଗୁଜ୍ଜରୀ
କଳ ଗୁଜ୍ଜରୀ ମଙ୍ଗଳ ଗୁଜ୍ଜରୀ ଆହୁର ।
ରାଗ କେଦାର ବରାଡ଼ି ସିନ୍ଧୁଡ଼ା ବସନ୍ତ
ମଙ୍ଗଳ ବରାଡ଼ି ଶୋକବରାଡ଼ି ଏମନ୍ତ ।
ଷଡ଼ରାଗରୁ ଛତିଶ ରାଗ କଲ ଜାତ
ଖଟନ୍ତି ବିଳାସିମାଏ ଏଥେ ହୋଇ ରତ ।
ଗୁଣସାଗର ନାଥ ହେ ଭୋଳାନାଥ ସୁତ
ଅସଂଖ୍ୟ ମହିମା ତୋର କେ କହି ସମର୍ଥ ।

ତୋ ନୃତ୍ୟେ ମୋହିତ ହେଲେ ସର୍ବବୃନ୍ଦାରକ
ଶଙ୍କର ମୋହିତ ହେଲେ ପୁଣି ନାଗଲୋକ ।
ଯେ ତୋହର ନାମ ଗୋଟି ହୃଦେ ସୁମରଇ
ମୂର୍ଖ ଦୋଷରୁ ସେ ନର ଅବଶ୍ୟ ତରଇ ।
ଶ୍ରୀବିଘ୍ନରାଜ ଚରଣ ଧରେ ମମହୃଦେ
ବଞ୍ଚିତ ସମଭୟରୁ ତବ ପରସାଦେ ।
ହେ ପ୍ରଭୁ ଗଜବଦନ ପାର୍ବତୀ ନନ୍ଦନ
ଦୟା କର ହର ପ୍ରଭୁ ମୋର ବିଘ୍ନମାନ ।
ଜୟ କାମିନୀମୋହନ ପ୍ରଭୁ ମନସିଜ
ସଦା ମୋ ହୃଦେ ବିରାଜୁ ତୋ ପଦପଙ୍କଜ ।
ଏହି ଭିକ୍ଷା ମାଗେ ପ୍ରଭୁ କରି ବଡ଼ ଆଶ
ଶାରଳା ଦାସର ପୂର୍ଣ୍ଣ କର ଅଭିଳାଷ ।

## ଶିବ ଓ ବିଷ୍ଣୁଙ୍କର ସ୍ତବ

ଜୟ ଜୟ ଯୋଗେଶ୍ୱର ଦେବ ପଞ୍ଚାନନ
ତୁହି ପ୍ରଭୁ ଶମନର ଦରପ ଧ୍ୱଂସନ ।
ପଣ୍ଡିତ-ଜନମାନଙ୍କ ହୃଦ ପୁଷ୍ପମାଳ
ସୁରସିଦ୍ଧ ମୁନିଙ୍କୁ ତୁ ପ୍ରଭୁ ପ୍ରତିପାଳ ।
ଜଗତଜନଙ୍କ ପ୍ରଭୁ ତୁହି ଚିନ୍ତାମଣି
ତପ ପାଦେ ନମସ୍କାର ହେ ତ୍ରିଶୂଳପାଣି ।
ଉମାବଲ୍ଲଭ ପରମଯୋଗୀ ଯୋଗେଶ୍ୱର
ତବ କମଳ ଚରଣେ ଲୁଚୁ ମମ ଶିର ।
ଏ ସଂସାର ଗୋଟି ପ୍ରଭୁ ମୋହଜଳ ଫାଶି
ଏହା ହତ କରି ମୋତେ ମୁକ୍ତି ଗତି ଦେସି ।
ଅପଣ୍ଡିତ ମୂର୍ଖ ମୁହିଁ ନୁହେଁ ଶାସ୍ତ୍ରବେତ୍ତା
ଶ୍ରୀ ପୁରୁଷୋତ୍ତମ ନାଥ ପାଦେ ସଦା ଚିନ୍ତା ।
ମାଳେନ୍ଦୀଦଳ ସଦୃଶ୍ୟ ଯାର ମୁଖ ଗୋଟି
ଅନେକ ଜନ୍ମ ସୁଭାଗ୍ୟ ଅଛି ତାଙ୍କୁ ଭେଟି ।
ଭାରତୀ ବଲ୍ଲଭ ସେହି ରମା ପ୍ରାଣବନ୍ଧୁ
ଏ ସଂସାର ଅନ୍ଧାରକୁ ଏକା ପୂର୍ଣ୍ଣଇନ୍ଦୁ ।
ଦେବକୀ ଦେବୀ ନନ୍ଦନ ବସୁଦେବ ବଳା
ଅଷ୍ଟମଲ୍ଲ କ୍ଷୟ ସୂଦନ ହୃଦେ ବନମାଳା ।
ବାମେ କମ୍ବୁ ଡାହାଣରେ ଚକ୍ର ସୁଦର୍ଶନ
ନରକରୁ ଉଦ୍ଧାର ତୁ କରୁ ନାରାୟଣ ।
ସବନକ ତୀର୍ଥ ନାଥ ଭେଟିଲି ମୁଁ ମୋତେ
ସଦୟ ଚିତ୍ତରେ କର ଅନୁଗ୍ରହ ମୋତେ ।
କଂସ ଅଷ୍ଟମଲ୍ଲ କାଳଯବନ ନାଶକା
ବାଳକାଳେ ବିନାଶିଲୁ ଏମାନଙ୍କୁ ଏକା ।
ତୁହି ଦେବାଧିରାଜାଙ୍କ ପରେ ମହାରଜା
ତୋ ଆଶ୍ରିତଜନେ ଯମ ନ ଦିଅଇ ସଜା ।
ଜଗତ ଜନ ରକ୍ଷଣେ ଜଗନ୍ନାଥ ନାମ
ପରମ ପୁରୁଷ ତୁହି ପୁରୁଷ ଉତ୍ତମ ।
ଅନିତ୍ୟ ସଂସାର ଏଥେ ନ ପାଏ ମୁଁ ଥଳ
ତବ ନାମ ଚିନ୍ତା ମୋତେ ଦିଅ ଆଦିମୂଳ ।
ତୁଳସୀବଲ୍ଲଭ ପାଦପଦ୍ମ ସଦା ସେବି
ବଦତି ଶୂଦ୍ର ଶାରଳାଦାସ ମହାକବି ।



## ଶାରଳାଙ୍କ ବନ୍ଦନା

ବନ୍ଦଇ ଶ୍ରୀ କୃପାଜଳ ମହାଋଷି ପୁତ୍ରୀ
ସତ୍ୟଯୁଗେ ନର୍ମଦା ତୋ ନାମ ସରସ୍ୱତୀ ।
କଳିକାଳ ଧ୍ୱଂସିନୀ ଗୋ ଝଙ୍କଡ଼ବାସିନୀ
ଜନ୍ମେ ଜନ୍ମେ ମୁଁ ତୋ ଦାସ ଦାସ ଗୋ ଜନନୀ
ଯମଦଗ୍ନି ସୁତ ପର୍ଶୁ ଥିଲେ ତୋତେ ପୂଜ
ସତ୍ୟଯୁଗେ ଅଜ ନୃପ ହବେ ଥିଲେ ଭଜ ।
ପର ଦୁଃଖେରେ କାତର ହେଉ ସଦା ଭୋଳ
ସଂସାରେ କୌତୁକେ ବାଳରୂପେ ତୁ ମା ଖେଳ
ଆଦିଅନ୍ତ ମଧ୍ୟେ ଅବସାନ ତୋର ନାହିଁ
ମୁହିଁ ତୋତେ ପାଇଲି ମା ଜନ୍ମେ ଜନ୍ମେ ଧ୍ୟାୟୀ
ମୂର୍ଖ ଅପଣ୍ଡିତ ମୁହିଁ କିଛି ନ ଜାଣଇ
ଅଭୟା କାମାକ୍ଷି ମାତ ସବୁ ଦେଉ କହି ।
ନାହିଁ ନୋହିଲା ଏ ପୁଣ୍ୟ ମୋର କେଉଁଯୁଗେ
ଏସନ ବରଦାୟିନୀ ତୁହି ମଧ୍ୟସ୍ୱର୍ଗେ ।
ତୋ ବିନୁ ଚିତ୍ତ ମୋହର ନ ବଳଇ ଆନେ
ଖଣ୍ଡିଲି ମୁଁ ମୂର୍ଖଦୋଷ ତୋହର ପ୍ରସନ୍ନେ ।
ତୋର ପାଦ ଅଭିଷେକ ହେଉ ମୋର ମାଥେ
ସର୍ବଦା ଭଜେ ମୁଁ ତୋତେ ମୋର ପଞ୍ଚଭୂତେ
ଶ୍ରୀ ଚଣ୍ଡୀ ଶାରଳା ପାଦେ ମୋହର ଦଇନ୍ୟ
ମୁକତି ଇଚ୍ଛେ ଶାରଳା ଦାସ ଶୂଦ୍ରମୁନି ।

## ଦୁର୍ଯ୍ୟୋଧନ ଭୀଷ୍ମଙ୍କୁ ସେନାପତି ପଦରେ ବରଣ

ଏଥୁ ଅନନ୍ତରେ ପୁଣି ବୈବସ୍ୱତ ମନୁ
ପାଦ୍ୟ ଅର୍ଘ୍ୟ ପୂଜିଲା ସେ କୁମ୍ଭଋଷି ସୂନୁ ।
ସାଧୁ ମହିମା ତୁମ୍ଭର ପଣ୍ଡିତ ଅଗସ୍ତି
ମହା ବ୍ରହ୍ମବେତ୍ତା ତୁମ୍ଭେ ପୁଣ୍ୟେକ ଉତ୍ପତ୍ତି ।
ମାୟାମୟ ଅଟଇ ଏ ସଂସାର ପୟୋଧି
ଏଥୁଁ ତରିବାକୁ ଅଛି ତୁମ୍ଭଠାରେ ବୁଦ୍ଧି ।
ଯେବେ ମୋହଠାରେ ଦୟା ଅଛି ମହାଶୟ
ତେବେ ଗତି ଦିଅ କହି ଭାରତ ବିଷୟ ।
ଏହି ଶ୍ରୀ ମହାଭାରତ ପ୍ରଥମ ଯୁଦ୍ଧରେ
କିଏ ସେନାପତି ହେଲା କୌରବ ମଧ୍ୟରେ ।
ଏହା ସଂକ୍ଷେପିଣ ମୋତେ କହିବା ଅଗସ୍ତି
ପରମଗତି ଲଭିବି ଶୁଣି ତବ କତି ।
ଅଗସ୍ତି ବୋଇଲେ ତୁମ୍ଭି ଶୁଣ ହେ ରାଜନ
ଯୁଦ୍ଧ କରିବାକୁ ଇଚ୍ଛା କଲା ଦୁର୍ଯ୍ୟୋଧନ ।
ମ.ର୍ଗଶିର ଶୁକ୍ଳ ଦ୍ୱାଦଶୀ ଯେ ଭୌମବାର
ଅଶ୍ୱିନୀ ନକ୍ଷତ୍ର ଭୋଗ ଥିଲା ସେ ଦିନର ।
ବାଳବ ନାମେ କରଣ ପରିଘ ଯେ ଯୋଗ
ଅଷ୍ଟମ ଘରେ ମିଥୁନ ବୃହସ୍ପତି ଭୋଗ ।
ବିଜୟ ମାନଗୋବିନ୍ଦ ସମ୍ଭବ ଆସ୍ଥାନେ
ସଭାରେ ବସିଅଛନ୍ତି ସବୁ ଯୋଦ୍ଧାମାନେ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ପୁଣି ଭୂରିଶ୍ରବା ଶଲ୍ୟ
କୃପ ଅଶ୍ୱତ୍ଥାମା ସୋମଦତ୍ତ ମହାମଲ୍ଲ ।
ମହୀ ଜିଣିବାକୁ ଏହୁ ଅଟନ୍ତି ଶକତା
ଯୁଦ୍ଧେ ଥିଲେ ଯମକୁ ନ କରନ୍ତି ଗଣିତା ।
ଭୀଷ୍ମ ଯେ ଏହି ପୃଥ୍ୱୀକି ପାରନ୍ତି ସେ ଭେଦି
ଅଦୃଷ୍ଟିରେ ଥିଲେ ତନୁ ପାରନ୍ତି ସେ ଛେଦି
ଶଲ୍ୟ ବୋ.ଲି ଯେ ଅଛନ୍ତି ସେ ଶବ୍ଦଭେଦୀ ।
ଶବଦ ଶୁଭିଲେ ସେହୁ ପାରନ୍ତି ଯେ ଛେଦି ।
ଭୂରିଶ୍ରବା ମହାମଲ୍ଲ ପୁଣି ସେ ଅଛନ୍ତି
ନାମ ଧରିଣ ଡାକିଲେ ଛେଦି ସେ ପ.ରନ୍ତି ।
ଅତି ଅଗୋଚର ଅଟେ ଦ୍ରୋଣଙ୍କ ମହିମା
ବ୍ରହ୍ମାଣ୍ଡ ଭେଦି ପାରଇ ତାଙ୍କର ଗରିମା ।
ବିଗଭେଦୀ ଅଟନ୍ତି ଯେ ବୀର ସୋମଦତ୍ତ
ଏକା ନାରାଚରେ ଭେଦି ପାରନ୍ତି ଜଗତ ।
ଦ୍ରୋଣଙ୍କର ନନ୍ଦନ ଯେ ଅଟେ ଅଶ୍ୱତ୍ଥାମା
ତ୍ରୈଲୋକ୍ୟ ଭେଦିପାରେ ସେ ଋଷିଙ୍କ ଉତ୍ତମା ।
ବାହ୍ଲିକ ବୋଲି କହିଣ ଯେଉଁ ମହାରଥୀ
ମେଘମାନେ ଥିଲେ ଲକ୍ଷ ଭେଦିଣ ପାରନ୍ତି ।
କୃପାଚାର୍ଯ୍ୟଙ୍କ ମହିମା ଅତି ଅଗୋଚର
ଧନୁ ଧରିଲେ କମ୍ପନ୍ତି ଜାଣ ସୁରାସୁର ।
ରାଧାର ନନ୍ଦନ ଯେହୁ ଅଟେ ବୀର କର୍ଣ୍ଣ
ସୁହୃଦ ଦେଖି ମଇନ ହେଲା ଦୁର୍ଯ୍ୟୋଧନ ।
ଅତି ସୁକୁମାର ସେହୁ ଅଟେ ମହାବୀର
ଦୃଷ୍ଟିଭେଦୀ ଯୋଗେ ଅସ୍ତ୍ର ବ୍ୟର୍ଥ ନୁହେଁ ତାର ।
ଏମନ୍ତ ସମୟେ ତହିଁ ରାଜା ଦୁର୍ଯ୍ୟୋଧନ
ସମସ୍ତଙ୍କ ସାକ୍ଷାତରେ କଲା ଏ ବିଧାନ ।
ରତନମୁକୁଟ ଆଉ ରତ୍ନମାଳା ଏକ
ଖଡଗ ସହ ଘେନି ସେ ଅର୍ଘ୍ୟ ଯେ ସାପେକ ।
ସୁବର୍ଣ୍ଣ ପାତ୍ରରେ ସବୁ ପୂରାଇ ରାଜନ
ଦୁର୍ଯ୍ୟୋଧନ ଉଭାହେଲା ସଭା ମଧ୍ୟସ୍ଥାନ ।
ଷାଠିଏ ସହସ୍ର ଦେଶର ଛତ୍ର ଦଣ୍ଡଧାରୀ
ଏହାଙ୍କର ପାଟମନ୍ତ୍ରୀ ଯୋଦ୍ଧା ଆଦିକରି ।
ଏସନକ ସମୟରେ ଆସ୍ଥାନର ତଳେ
ଖଡ୍‌ଗ ଅର୍ଘ୍ୟସ୍ଥାଳୀ ରଜା ଥୋଇ କୁହନ୍ତେ
ବୋଲେ ତୁମ୍ଭେ ବହୁଦେଶୁ ଅଛ ମହାରଥୀ
ଅନେକ ଦେଶର ବସିଅଛ ଯେ ନୃପତି ।
କିଏ କେବଣ ବିଦ୍ୟାରେ ଅଟ ପାରଙ୍ଗମ
ନ ଜାଣେ ମୁହିଁ ତୁମ୍ଭମାନଙ୍କ ପରାକ୍ରମ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚାରିଜାତି
ବସିଅଛ ଅଷ୍ଟାଦଶ ବଂଶ ନରପତି ।
ମୋର ଏକ କଥା ଶୁଣ ସର୍ବେ ଦେଇ ଚିତ୍ତ
ମାନଗୋବିନ୍ଦ ମୋ ନାମ ମୁଁ ହସ୍ତିନା ନାଥ ।
ପାଣ୍ଡବଙ୍କ ସଙ୍ଗେ ମୁହିଁ ହୋଇଲି ବିବାଦୀ
କ୍ଷତ୍ରୀପଣେ ତାଙ୍କ ସମ ନୋହୁ ଆମ୍ଭେ ଯୋଧୀ
ନ ଦେଲି ମୁଁ ତାଙ୍କୁ ଭାଗ ନ କଲି ପୀରତି
ସୋଦର ପଣକୁ ଛାଡ଼ି କରିଲି ଅନୀତି ।
ନଷ୍ଟପ୍ରାୟ ବିବାଦକୁ ମୁଁ କରିଲି ମାନସ
ମୋର ଦର୍ପ ନାହିଁ ତୁମ୍ଭ ବାହୁକୁ ମୋ ଆଶ
କହୁ ଭାଗ୍ୟେ ଏବେ ପୁଣ ଜଗନ୍ନାଥେ ଭେଟି
ତାଙ୍କୁ ନ ସେବିଲି ମୁହିଁ ବଳଗର୍ବେ ଖଟି ।

ଶ୍ରୀକୃଷ୍ଣେ ସେହି ପାଣ୍ଡବେ ମହାବଳବନ୍ତ
ଚୌଦିଗେ ଡମ୍ବକ ପଡ଼େ ତାହାଙ୍କ ବାରତା ।
କାଳେବର ଗଦା ବହେ ବୃକୋଦର ଭୀମ
ସେ ଗଦା ଥିଲେ ତା କରେ ଭୟ କରେ ଯମ
ଏ ଜମ୍ବୁଦ୍ୱୀପର ମଧ୍ୟେ ତୁମ୍ଭେ ନରନାଥ
ଦ୍ରୌପଦୀର ସ୍ୱୟମ୍ବର ସର୍ବେ ଦେଖିଛ ତ ।
ବିନ୍ଧି ନ ପାରିଲେ କେହି ତହିଁ ସାରପାର୍ଥ
ମହାଲକ୍ଷ ରାଧାଚକ୍ରେ ବିନ୍ଧିଲା ଭାରତ ।
ନକୁଳର ହାତେ ଥିଲେ ମହାନକ୍ଷି କୁନ୍ତ
ଚୌଦ ବ୍ରହ୍ମାଣ୍ଡ ଧାରଣେ ସେ ଅଟେ ସମର୍ଥ ।
ସହଦେବ ମନ୍ତ୍ରୀଗଣ ତୁମ୍ଭେ ଥିବ ଜାଣି
ଭୂତ ଭବିଷ୍ୟତ ଜାଣେ ମନ୍ତ୍ରୀ ଚୂଡ଼ାମଣି ।
କସ କହିବ ମହିମା ରାଜସୂୟ କାଳେ
ଦିଗ୍‌ବିଜେ କରି ସବୁଙ୍କୁ ଜିଣିଲେ ସେ ହେଳେ ।
ମୁହିଁ କସ କହିବଇଁ ତାଙ୍କର ଗାରିମା
ସମସ୍ତେହିଁ ଜାଣ ତୁମ୍ଭେ ତାହାଙ୍କ ମହିମା ।
ପ୍ରାଣୁ ଅଧିକ ଗୃହାନ୍ତ ତାଙ୍କୁ ଭଗବାନ
ଏକା ତ୍ରୈଲୋକ୍ୟ ଜିଣନ୍ତା ଅଟଇ ଅର୍ଜୁନ ।
ଆଉ ଅନ୍ୟ କଥାରେ ମୋ ନାହିଁ ପ୍ରୟୋଜନ
କେ ସମର୍ଥ ଅଛୁ କହ ଜିଣିବ ଅର୍ଜୁନ ।
ନ ଜାଣଇ ବ୍ୟୂହ ମୁହିଁ ନ ଡରେ କାହାକୁ
କିଏ ପୁଣି ଜିଣିବ ସେ କୃଷ୍ଣ ଅର୍ଜୁନଙ୍କୁ ।
ଏହି ଖଡ଼୍ଗ ଗୋଟି ମୋତେ ତୋଳଦେବ ଯେହୁ
ଅର୍ଜୁନକୁ ଜିଣିବାକୁ ସମରଥ ସେହୁ ।
ମୁହିଁ ତଳହସ୍ତ କରି ଘେନିବି ସେ ଦାନ
ତା ବାହୁକୁ ଆଶ୍ରା କରିଥିବ ପ୍ରତିଦିନ ।
ଏମନ୍ତ କହିଲା ଯହୁଁ ସେ ମାନଗୋବିନ୍ଦ
ସମସ୍ତ ନୃପତି ଶୁଣି ପାଇଲେ ବିଷାଦ ।
ବିସ୍ମରନ୍ତି ରାଜାମାନେ ସାଧିବୁ କି ବିଦ୍ୟା
କୃଷ୍ଣଙ୍କୁ ଜିଣିବାକୁ କେ ଅଛୁ ଏଡ଼େ ଯୋଦ୍ଧା ।
ରାଜାମାନଙ୍କ ମୁଖରୁ ନ ସ୍ଫୁରିଲା ବାଣୀ
ସର୍ବେ ଊର୍ଦ୍ଧ୍ୱକୁ ଗୃହାନ୍ତ ପ୍ରେତପୁଂସ ଜାଣି ।
ମାଳବ ଦେଶର ଯେହୁ ରାଜା କୃତବର୍ମା
ତାହାର ଅଶ୍ୱର ନାମ ଅଟେ ଅଶ୍ୱତ୍ଥାମା ।
ସେହି କୃତବର୍ମା ବୋଲେ ଶୁଣ ଦୁର୍ଯ୍ୟୋଧନ
ପାଣ୍ଡବେ ଜିଣିବାକୁ କେ ନୁହନ୍ତି ଭାଜନ ।
ଯେତେ ନୃପତି ନମନ୍ତି ଅଛୁ ତୁମ୍ଭ ଆଣି
ସମସ୍ତେ ସହଦେବକୁ ନ ପାରିବେ ଜିଣି ।
ତୋ ବଚନ ଶୁଣି ସର୍ବେ ହୋଇଲେ ମଉନ
କେ କହିବ ଜିଣିବି ମୁଁ ହରି ଅରଜୁନ ।
ତୁ ବା ବୋଲିବୁ ତୁମ୍ଭର ବଳବୀର୍ଯ୍ୟ ନାହିଁ
କସ ବୋଲି ସଂଗ୍ରାମକୁ ଆସିଅଛ ଧାଇଁ ।
ଶ୍ରୀକୃଷ୍ଣ ସାରଥି ହେବେ ଅର୍ଜୁନର ରଥେ
ସମସ୍ତେ ଅଇଲୁ ତାଙ୍କୁ ଦେଖିବା ନିମନ୍ତେ ।
ପାଣ୍ଡବଙ୍କୁ ଜିଣି ଆମ୍ଭେ ତୋତେ ରାଜ୍ୟଦେବୁ
ଏହି କଥାକୁ ବିଶ୍ୱାସ ନ କର ତୁ ବାବୁ ।
ବହୁତ ଶୃଗାଳ ଯେବେ ହେବେ ଏକମେଳ
ବ୍ୟାଘ୍ରକୁ ଧରି ସେମାନେ ପାରିବେ କି ବଳ ।
ବହୁତ ଗଜ ଯେବେ କି ହେବେ ଏକରୁଣ୍ଡ
ସିଂହ ଦେଖି ନିଶ୍ଚଳ କି ହେବ ତାଙ୍କ ପିଣ୍ଡ ।
ଆମ୍ଭର ବଳରେ ତୋତେ ନ ପାରିବୁ ରଖି
ଅର୍ଜୁନ ହାତେ ମରିବୁ କୃଷ୍ଣ ମୁଖ ଦେଖି ।
ତୋ ପାଇଁ ଯୁଝି ମରିବୁ ଭାରତ ସମରେ
ଶଙ୍ଖ ଚକ୍ର ଚିହ୍ନ ଦେଖି ବସିବୁ ସ୍ୱର୍ଗରେ ।
ହେ ମାନଗୋବିନ୍ଦ ଏବେ ଶୁଣ ଆମ୍ଭ କଥା
ଏଥି କେଉଁ ଲୋକ ଅଛି ପାଣ୍ଡବେ ଜିଣନ୍ତା ।
ଆମ୍ଭର ବାହୁକୁ ଯେବେ କଲୁ ତୁମ୍ଭ ଆଶ
ଏ ସମର କଥା ଛାଡ଼ି ବନେ କର ବାସ ।
କୃତବର୍ମା ବାକ୍ୟେ ସର୍ବେ ସାଧୁ ସାଧୁ କଲେ
ଯଥାର୍ଥ ଅଟଇ ଜାଣ ଏ ଯାହା କହିଲେ ।
କୃତବର୍ମା କଥା ଶୁଣି ସର୍ବ ନରନାଥ
ଦୁର୍ଯ୍ୟୋଧନେ କହିଲେ ସେ ଏହି ଆମ୍ଭ ମତ ।
ସମସ୍ତଙ୍କୁ କୃତବର୍ମା କଥା ଯୋଗାଇଲା
ସବୁ ରାଜାମାନଙ୍କର ସନମତ ହେଲା ।
ଆମ୍ଭେ ଆଶ୍ରେ କରୁ ତୋତେ ତୁ ଆମ୍ଭର ମେରୁ
ଆମ୍ଭର ବାହୁକୁ ରାଜା କସ ଆଶ୍ରା କରୁ ।
ରାଜାଙ୍କ ବାକ୍ୟେ ବିରସ ହେଲା ଧାର୍ତ୍ତରାଷ୍ଟ୍ରୀ
ଗନ୍ଧାସୁତ ଆସ୍ଥାନରୁ ଅଇଲେକ ଉଠି ।
ଚକ୍ର ତୋଳି ଦୁର୍ଯ୍ୟୋଧନ ଦେଲେ ସେ ଖଡ଼ଗ
ବୋଇଲେ ଘେନ ରେ ବାବୁ ଆଉ କସ ମାଗ
ଦୁର୍ଯ୍ୟୋଧନ ବୋଲେ ଯାହା ଇଚ୍ଛାଥିଲି ହୃଦେ
ପାଇଲି ଏଥର ଗତି ତୁମ୍ଭର ପ୍ରସାଦେ ।

ମହାସଂକଳ୍ପ କରିଲେ ଭୀଷ୍ମ ମହାବଳୀ
ତିନିବାର ସତ୍ୟକରି ଖଡ୍ଗ ଦେଲେ ତୋଳି
ତଳହସ୍ତ କରି ନେଲା ମାନଚକ୍ରବର୍ତ୍ତୀ
ବୋଲେ ହରି ଅର୍ଜ୍ଜୁନକୁ ମାରି ଦେବୁ ପୃଥ୍ୱୀ ।
ଭୀଷ୍ମ ବୋଇଲେ ତୁ ବାବୁ ନିଶ୍ଚିନ୍ତେ ଏବେ
କୁଞ୍ଜରଗଳ ଅଇଶ୍ୱର୍ଯ୍ୟ କରି ଭୋଗ ଦମ୍ଭେ ।
ମାରିବି ସମରେ ମୁହିଁ ହରି ଅରଜୁନ
କୌରବ ଥାଟେ ଶୁଭିବ ମୋର ଧନ୍ୟ ଧନ୍ୟ
ଦୁର୍ଯ୍ୟୋଧନ ବୋଲେ ତୁମ୍ଭେ ମୋର ପିତାଗୁରୁ
ଇନ୍ଦ୍ର ଦେବ ଶଙ୍କା କରେ ତୁମ୍ଭେ ଧନୁ ଧରୁ ।
ତୁମ୍ଭେ ପୁଣି ପିତାମହ ପରମ ବୈଷ୍ଣବ
କାଳେ ପାଣ୍ଡବଙ୍କୁ ଯେବେ ଉପ୍ରୋଧ କରିବ ।
ଅସଂଖ୍ୟ ମହିମା ଅଟେ ତୁମ୍ଭ ବାହୁବଳ
ଯେସନ ପ୍ରକାରେ ସିନ୍ଧୁ ନ ଲଙ୍ଘଇ କୂଳ ।
ଯେବେ ସିନ୍ଧୁ ଉଚ୍ଛୁଳିବ ପୃଥ୍ୱୀ କି ରହଇ
ତୁମ୍ଭ ଶର ସନ୍ଧାନରେ ସର୍ବେ ଭୟ ପାଇ ।
ଏରୂପେ ବହୁ ପ୍ରଶଂସା କରି ଦୁର୍ଯ୍ୟୋଧନ
ଭୀଷ୍ମଙ୍କ ଶିରେ ମୁକୁଟ ବାନ୍ଧିଲା ତକ୍ଷଣ ।
ସାର ଭୂଷଣରେ ତାଙ୍କୁ ମଣ୍ଡନ କରିଲା
ରତ୍ନମାଳା ଗୋଟି ନେଇ ଗଳେ ଲମ୍ବାଇଲା ।
ପାଞ୍ଚକୋଟି ରତ୍ନ ଯେଣୁ ଆପଣା ଶ୍ରୀହସ୍ତେ
ତାହା ବୃଷ୍ଟି କଲା ରାଜା ଭୀଷ୍ମଙ୍କର ମାଥେ ।
ବହୁତ ପ୍ରକାରେ ରତ୍ନ ରାଜା ନେଇଥିଲା
ତାହା ସବୁ ନେଇ ଭୀଷ୍ମ ଦେବେ ସମର୍ପିଲା ।
ପଞ୍ଚ ମରଭୂତ ରଥ ଅର୍ବୁଦେକ ରଥୀ
ବେନିବୃନ୍ଦ ଅଶ୍ୱ ତିନିସହସ୍ର ପଦାତି ।
ଆଡ଼େଣି ତପେସ ପାଟଛନ ପାଞ୍ଚଲକ୍ଷ
ପାଞ୍ଚଲକ୍ଷ ଅସୁଆର ଦେଲା ମୁଖ୍ୟ ମୁଖ୍ୟ ।
ସାରତୂର ପାଞ୍ଚଲକ୍ଷ ଟମକ ବାଉଣ୍ଡି
ପାଞ୍ଚଗୋଟି ଅଶ୍ୱ ଭୀଷ୍ମ ରଥେ ଦେଲା ମଣ୍ଡି ।
ଅନେକ ରତନ ଦେଇ ସେ ମାନଗୋବିନ୍ଦ
ମନେ ମନେ ଅତିଶୟ ହୁଅଇ ଆନନ୍ଦ ।
ବିଜୟ କଲେ କି ମର୍ତ୍ତ୍ୟେ ଅମରାଧିପ ଇନ୍ଦ୍ର
ସେହିପରି ଦେଖାଗଲା ଭୀଷ୍ମଙ୍କ ହମ୍ବିର ।
ଘୁମୁରେ ଅନେକ ଢୋଲ ଦମାମ୍ ବାଜଇ
ସାରତୂର ଶବଦରେ ପୃଥିବୀ କମ୍ପଇ ।

ଭୀଷ୍ମ ହମ୍ବିର ଦେଖନ୍ତି ମହା ଯୋଦ୍ଧାମାନେ
ଅଶ୍ୱତ୍ଥାମା ନ ସହଣି କହେ କୋପମନେ ।
ତୁ ଅଜ୍ଞାନ ବୁଦ୍ଧି କଲୁ ହେ ମାନଗୋବିନ୍ଦ
ସବୁ ଶୁଭ କଥାମାନ କଲୁ ଏବେ ମନ୍ଦ ।
ପ୍ରଥମେ ଶୁଭ କାର୍ଯ୍ୟରେ ଅଶୁଭ ଇଚ୍ଛିଲୁ
ଭୀଷ୍ମ ଅପୁତ୍ରକ ତାଙ୍କୁ ବରଣ କରିଲୁ ।
ମର୍ତ୍ତ୍ୟେ ଜନ୍ମ ହୋଇ ଯାର ଭାର୍ଯ୍ୟା ପୁତ୍ର ନାହିଁ
ପ୍ରଭାତ ସମୟେ ତାର ମୁଖକୁ ନ ଚାହିଁ ।
ପ୍ରଥମେ ମୁକୁଟ କପାଁ ଦେଲୁ ତୁ ତାହାକୁ
ଅନୁକୂଳ ଭଗ୍ନ ଯୋଗ ହୋଇଲା ତୁମ୍ଭଙ୍କୁ ।
ମରଣକୁ ଭୟ ନାହିଁ ଅପୁତ୍ରକ ଦୋଷେ
ରଣଯାଗ କରିବ ସେ ମନର ହରଷେ ।
ଯାତ୍ରାକାଳେ ଚାହିଁ ଯେବେ ଅପୁତ୍ରକ ମୁଖ
କାର୍ଯ୍ୟବ୍ୟର୍ଥ ହୋଇ ଯାଏ ଅବଶ୍ୟ ସେ ଦୁଃଖ
ଶୁଣି ପ୍ରତିବାକ୍ୟ ଦେଲା ସେ ମାନଗୋବିନ୍ଦ
ଆହେ ଅଶ୍ୱତ୍ଥାମା ତୁହି କହୁ କପାଁ ମନ୍ଦ ।
ଶାନ୍ତନୁଙ୍କ ସୁତ ଗଙ୍ଗା ଯାହାଙ୍କର ମାଏ
ଇଚ୍ଛାମୃତ୍ୟୁ ଯାହାଙ୍କର ଯମକୁ ନିର୍ଭୟେ ।
ତାହାଙ୍କୁ କପାଇଁ ତୁହି ନିନ୍ଦା କରୁ ଦ୍ରୋଣି
ବ୍ରାହ୍ମଣ ହୋଇ ତୁ ଏଡ଼େ ଅମଙ୍ଗଳ ପ୍ରାଣୀ ।
ତ୍ରୈଲୋକ୍ୟ ଚମକ ପଡ଼େ ଯାହାଙ୍କର କଥା
ପର୍ଶୁରାମେ ଜିଣିବାକୁ ଯାହାଙ୍କ କ୍ଷମତା ।
କଣ୍ଠିତ ଘଟିବ ସେ ଯେବେ କରିବେ ସଂଗ୍ରାମ
କାଳଦଣ୍ଡ ତେଜ୍ୟାକରି ପଳାଇବ ଯମ ।
ଦ୍ରୋଣ ବୋଲେ ଅଶ୍ୱତ୍ଥାମା ନ ଜାଣୁ ତୁ କିଛି
ମାନଗୋବିନ୍ଦ ଭୁଞ୍ଜିବ ଏବେ ରାଜଲକ୍ଷ୍ମୀ ।
ସେନାପତି ହୋଇଲେଣି ଭୀଷ୍ମ ଯେତେବେଳେ
ଏବେ ଦୁର୍ଯ୍ୟୋଧନ ରାଜ୍ୟ କରିବ ନିଶ୍ଚଳେ ।
ତାହାଙ୍କର କଥା ଶୁଣି ବୋଲେ ଭୂରିଶ୍ରବା
ଭୀଷ୍ମ ନ ଜାଣି ପ୍ରତିଜ୍ଞା କରନ୍ତନ୍ତି ଅବା ।
ଜଗନ୍ନାଥେ ଜିଣିବାକୁ କାର ବଳ ଅଛି
ମହାଭାରତରେ ମଲ୍ଲ ଏପରି କେ ଅଛି ।
ଯେଉଁ ବନ ସଭା ମଧ୍ୟେ ଅନେକ ମୂରତି
କେଶବ ଧଇଲେ ସର୍ବେ କଲେ ମହାଭ୍ରାନ୍ତି ।
ନୃସିଂହ ମୂର୍ତ୍ତି ଧଇଲେ ସେହୁ ଯେତେବେଳେ
ଦେଖିଣ ଭୟ କରିଲେ ସର୍ବେ ସେତେବେଳେ

ଜୟ ହେ କମଳା ପତି ଦାରୁବ୍ରହ୍ମ ହରି
ନୀଳକନ୍ଦର ବିହାରୀ ଶଙ୍ଖ ଚକ୍ରଧାରୀ ।
ସନ୍ଥଜନ ହିତକାରୀ ଦୁଷ୍ଟେ କର ନାଶ
ତୁମ୍ଭ ଭକ୍ତ ଯେ ନ ଯାଏ ଦଣ୍ଡଧର ପାଶ ।
ତୁମ୍ଭେ ଗତି ମୁକ୍ତି ଦାତା ଜୀବମାନଙ୍କର
ଶାରଳା ଦାସକୁ ଗତି ଦିଅ ଚକ୍ରଧର ।

— — —

## ପ୍ରହ୍ଲାଦ ଚରିତ

ପୁନରପି ପୃଚ୍ଛାକଲେ ମନୁ ଦଣ୍ଡଧର
ଭୂରିଶ୍ରବା କି କହିଲେ କହ ମୁନିବର ।
ସେହି କଥା ଶୁଣିବାକୁ ବଳନ୍ତି ମାନସ
ତୁମ୍ଭ ମୁଖୁଁ ଶୁଣି ମୁଁ ତ ହୋଇବି ସନ୍ତୋଷ ।
ଅଗସ୍ତି କହିଲେ ଆହେ ମନୁ ନରପତି
ଅପୂର୍ବ ଚରିତ ଏହି ଶୁଣ ଦେଇ ମତି ।
ସବୁଙ୍କୁ ଚାହିଁ ବୋଇଲେ ଋଷୀ ଭୂରିଶ୍ରବା
ବହୁତ ଦିନର ଏକ କଥାଏ କହିବା ।
ଏହି କଥାଗୋଟି ସତ୍ୟଯୁଗ ସମାଚାର
ହିରଣ୍ୟକଶିପୁ ଥିଲା ଗୋଟିଏ ଅସୁର ।
ମହା ପ୍ରତାପୀ ଅଟଇ ସେହି କଉଣପ
ନବଲକ୍ଷ ଯୋଜନ ତା ବ୍ୟାପିଲାକ ଦର୍ପ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ନାଶିଲା ସେ ଜଣେ
ଇନ୍ଦ୍ରାଦି ଦେବେ ନୋହିଲେ ତାକୁ ସମ ରଣେ
ଏକାକେ ବ୍ୟାପିଲା ସେହି ସପ୍ତଦ୍ୱୀପା ପୃଥ୍ୱୀ
ତାହାକୁ ନାଶିଲେ ପ୍ରଭୁ ନରସିଂହ ମୂର୍ତ୍ତି ।
ହିରଣ୍ୟାକ୍ଷ ଡରେ ରହି ନ ପାରି ଅମରେ
ଆକାଶ ତେଜିଣ ଦେବେ ଗଲେ ବ୍ରହ୍ମାପୁରେ ।
ଧାତାକୁ କହିଲେ ଦେବ ହିରଣ୍ୟ କୌଣପ
କି କହିବୁ ନାଶ କଲା ସମସ୍ତଙ୍କ ଦର୍ପ ।
ବ୍ରହ୍ମା ଇନ୍ଦ୍ର ସର୍ବେ ଗଲେ କ୍ଷୀରସିନ୍ଧୁ କତି
ଆତ୍ମାରେ ଲୟ କରିଣ ବସି ଏକ ମୂର୍ତ୍ତି ।
କ୍ଷୀରସିନ୍ଧୁ ତୀରେ ଯୋଗେ ବସିଣ ଅଛନ୍ତି
ନାରାୟଣଙ୍କୁ ଗୁହାରି କଲେ କରି ସ୍ତୁତି ।
ଦେବଙ୍କ ଆକୁଳ ଦେଖି ପ୍ରଭୁ ଦେବରାଜେ
ବିରଳଚନ୍ଦ ଆସନେ କରିଲେକ ବିଜେ ।
ବେଗେ ପ୍ରଣମି ବୋଇଲେ ପ୍ରଭୁଙ୍କୁ ସମ୍ମୁଖରେ
ଆମ୍ଭେ ରହି ନ ପାରିଲୁ ହିରଣ୍ୟର ଡରେ ।
ତୁ ତାକୁ ମାଇଲେ ଆମ୍ଭେ ସର୍ବେ ସ୍ୱର୍ଗେ ଯିବୁ
ନୋହିଲେ କାହିଁରେ ଆଶା ନାହିଁ ଯାଉ ସବୁ ।
ଦେବଙ୍କ ବଚନେ କୋପଜଲେ ପଦ୍ମମୁଖ
ମାରିବି କୌଣପ ମନେ ନ କର ହେ ଦୁଃଖ ।
ତୁମ୍ଭେମାନେ ଯାଅ ଏବେ ଯେଝା ନିକେତନେ
ତାକୁ ବଧିବି ନିଶ୍ଚୟ ମୁଁ ଅଳପ ଦିନେ ।
କାମଦେବ ଚାହିଁ ଆଜ୍ଞା ଦେଲେ ନାରାୟଣ
ବୈକୁଣ୍ଠ ତେଜିଣ ତୁହି ଯାଅ ଏହିକ୍ଷଣ ।
ତୁ ଯାଇ ଜନ୍ମ ହୋଇବୁ ହିରଣ୍ୟର ଘରେ
ତାହାର ଯେ ଭାର୍ଯ୍ୟା ଅଛି ପୁଲକା ଗର୍ଭରେ ।
ନାରାୟଣଙ୍କ ବଚନେ କାମଦେବ ଗଲା
ହିରଣ୍ୟର ପୁରେ ଯାଇ ପରବେଶ ହେଲା ।
ନାରାୟଣଠାରୁ ଦେବ ଏମନ୍ତ ଶୁଣିଲେ
ତହୁଁ ସର୍ବେ ନିଜପୁରେ ଆନନ୍ଦରେ ଗଲେ ।
ହିରଣ୍ୟକଶିପୁ ଭାର୍ଯ୍ୟା ଥିଲା ଯେ ପୁଲକା
ନିର୍ମଳ ନିଷ୍ଟଳାସନେ ଥିବା ତାକୁ ଦେଖି ।
ତାହାର ଗର୍ଭେ ଯାଇଣ ରହିଲେ ଅନଙ୍ଗ
ବୈକୁଣ୍ଠକୁ ବିଜେକଲେ ପ୍ରଭୁ ଶିରୀରଙ୍ଗ ।
କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ ବୁଧବାର
ଅଶ୍ୱିନୀ ନକ୍ଷତ୍ର ଭୋଗ ଥିଲା ସେ ଦିନର ।
ତୈତିଳ ନାମେ କରଣ ବ୍ୟତିପାତ ଯୋଗ
ହସ୍ତ ସଙ୍କ୍ରାନ୍ତିକ ଯେ ତିନିଦିନ ଭୋଗ ।
ଜନ୍ମିଲା ସେହି କୁମର ଅପୂର୍ବ ସୁନ୍ଦର
ଦେଖି ଅସୁର ହୋଇଲା ଆନନ୍ଦ ଅପାର ।
ସେହି କୁମରର ନାମ ଦେଲା ପ୍ରହଲାଦ
ତାର ମାତା ତାକୁ ଦେଖି ହୋଇଲା ପ୍ରମୋଦ ।
ଦେବଅଂଶେ ଦୈତ୍ୟବଂଶେ ଉପୁଜିଲା ବଳା
ଅବତାର ହୋଇଅଛି ଯେନ ବିଷ୍ଣୁକଳା ।
ଜନ୍ମ ହେଲା ମାତ୍ରେ ସ୍ତବକରେ ସେ ନନ୍ଦନ
ଆରତେ ଡାକଇ ରକ୍ଷା କର ନାରାୟଣ ।
ପୁତ୍ର ଦେଖିବାକୁ ଦୈତ୍ୟ ଭିତରକୁ ଗଲା
ବିଷ୍ଣୁ କଳା ଦେଖି ଦୈତ୍ୟ ଉପୁରେ ଘୂର୍ଣ୍ଣିଲା
ତା ମୁଖୁ ଶୁଣିଣ ସେହି ନାରାୟଣ ବାଣୀ
ପୁତ୍ରର ବେକ ଖଡ୍ଗରେ ପକାଇଲା ହାଣି ।
ପର୍ଶୁଘାତେ ବାଳକକୁ କଲା ବେନି ଖଣ୍ଡ
ଫିଙ୍ଗିଦେଲା ନେଇ ତାକୁ ସମୁଦ୍ରର ଗଣ୍ଡ ।

ଶୁଣହେ କୌରବ କୃଷ୍ଣ କଲେ ଯେଣୁ ମାୟା
ସମୁଦ୍ରେ ପୁତ୍ର ପଡନ୍ତେ ନ ବୁଡ଼ିଲା କାୟା
ଗଣ୍ଠିମୁଣ୍ଡ ଯୋଡ଼ିକରି ଦେଇ ପ୍ରାଣଦାନ
ଅନ୍ତର୍ଦ୍ଧାନେ ଗୁଡ଼ିଣ ଗଲେ ଭଗବାନ ।
ପୁତ୍ର ବିନାଶେ କାନ୍ଦଇ ଦୁଃଖେ ମହାଦେଈ
ମାତା ଅଗ୍ରତେ ମିଳିଲା ସେ କୁମର ଯାଇ ।
ବେନି କରେ ତୋଳିକୋଳେ ବସାଇଲା ରାଣୀ
କ୍ଷୀରପାନ କରାଇଲା ସେ କୁମରମଣି ।
କୁମରକୁ କ୍ଷୀର ଦେଇ ରାଣୀ ଘେନିଗଲା
ରାଜାଙ୍କ କୋଳରେ ନେଇ ତାକୁ ବସାଇଲା ।
ପ୍ରହ୍ଲାଦ ଦେଖି ବିସ୍ମିତ ହେଲା ଦୈତ୍ୟରାଜ
ଭାବିଲା ମନ ମଧ୍ୟରେ ଏ ବଡ଼ ଆଶ୍ଚର୍ଯ୍ୟ ।
ପୁଣି ଭାବେ ଖଡ଼ଗେ ମୁଁ ବେନିଖଣ୍ଡ କରି
ସମୁଦ୍ରେ ଫିଙ୍ଗିଲି ତହୁଁ ଅଇଲା କପରି ।
ଏହା ଭାବୁ ପୁତ୍ର ପୁଣି ରୋଦନ କରିଲା
ସେ ବଦନରୁ କୃଷ୍ଣ କୃଷ୍ଣ ଶବ୍ଦ ଶୁଣାଗଲା ।
ତା ଶୁଣି ହିରଣ୍ୟ କୋପେ ହେଲା ପରଚଣ୍ଡ
ବେଗେ ଟିକି ଟିକି କରି କାଟିଲା ତା ପିଣ୍ଡ ।
ଏଥୁ ଅନ୍ତେ ଦୈତ୍ୟରାଜ ମଣୋହିକ ଗଲା
ଶତଖଣ୍ଡ ହେବା ପୁତ୍ର ପୁଣି ଗୁରୁଣ୍ଡିଲା ।
ସ୍ନେହଭରେ ସୁଲକ୍ଷା ଯେ ପୁତ୍ର ଧରି କୋଳେ
ବୋଲଇ ବଞ୍ଚିଲୁ ବାବୁ ମୋର ପୁଣ୍ୟବଳେ ।
ଏତେ କଷ୍ଟେ ନ ଡରିଣ ବାଳୁତ କୁମର
ରହିଲା ଗୃହେ ଖେଳନ୍ତା ସିଂହର ପ୍ରକାର ।
ଶୁକ୍ରଙ୍କ କୁମର ମହା ପଣ୍ଡିତ ଅଟଇ
ପୁତ୍ରଙ୍କୁ ପେଷିଲା ଦୈତ୍ୟ ବିଦ୍ୟାଶିକ୍ଷା ପାଇଁ ।
ପଣ୍ଡିତଙ୍କୁ ବୋଇଲା ସେ ହିରଣ୍ୟ ଅସୁର
ଶିବ ପୁରାଣ ପଢ଼ାଅ ପୁତ୍ରକୁ ମୋହର ।
ପଢ଼ାନ୍ତେ ଶିବ ପୁରାଣ ପୁତ୍ର ନ ପଢ଼ଇ
ବିଷ୍ଣୁ ଗୁଣେ ଅଭୁତେ ସର୍ବଦା ଘୋଷଇ ।
ଦୈତ୍ୟ ବୋଲେ ଶିବଙ୍କର ପୁରାଣକୁ ଛାଡ଼ୁ
ବିଷ୍ଣୁଙ୍କ ପୁରାଣ ତୁହି କପାଁ ପୁତ୍ର ପଢ଼ୁ ।
ବଂଶକୁ ଶଲ ଆମ୍ଭର ଅଟଇ ମାଧବ
କପାଁ ହୃଦେ ବାଞ୍ଛାକରୁ ପୁତ୍ର ସେହି ଭାବ ।
ପ୍ରହଲାଦ ବୋଲେ ତାତ ଶିବ ବୋଲି କାହିଁ
ନିସ୍ତାର ବିଷ୍ଣୁ ବିନୁ ଆନ କେହି ନାହିଁ ।

ଆହେ ତାତ ମାଉ ଅବା କରି ମୋତେ ରକ୍ଷା
ବିଷ୍ଣୁ ବିନା ଭବେ ଆଉ ନାହିଁ ମୋର ସଖା ।
ସେ ନାରାୟଣଙ୍କୁ ପିତା ଯଦ୍ୟପି ସେବିବା
ଅବହେଳେ ପାପ ଛେଦ ବୈକୁଣ୍ଠେ ବସିବା ।
ପୁତ୍ର ମୁଖରୁ ହିରଣ୍ୟ ଏହି କଥା ଶୁଣି
ପ୍ରହ୍ଲାଦ କେଶକୁ କରେ ଧରି ଦୈତ୍ୟମଣି ।
ଫିଙ୍ଗୁ ପୂର୍ବ ଭାଗେ ପଡ଼ି ବଡ଼ବାନଳରେ
ଅଶୀ ସହସ୍ର ଯୋଜନ ସମୁଦ୍ର ବିସ୍ତାରେ ।
ପୁତ୍ରେ ନ ଦେଖି କାନ୍ଦିଲା ପୁଣି ଦୁଃଖେ ରାଣୀ
ମାତା ପାଶରେ କୁମର ମିଳିଲା ସେକ୍ଷଣି ।
ପୁତ୍ରକୁ ଧରିଣ ରାଣୀ ଦୈତ୍ୟପାଶେ ଗଲା
ହିରଣ୍ୟର କୋଳେ ନେଇ ତାକୁ ବସାଇଲା ।
ଦୈତ୍ୟବୋଲେ ସମୁଦ୍ରେ ମୁଁ ଫିଙ୍ଗିଲିଇଁତୋତେ
ଅଗାଧ ସମୁଦ୍ର ତୁହି ଅଇଲୁ କେମନ୍ତେ ।
ବାଳୁତ କୁମର ତୁହି ତୋ ମହିମା ମେରୁ
ଚରାଚୁ ହେବୁ ଶିବଙ୍କୁ କପାଁ ନ ସୁମରୁ ।
କୋଳରେ ଥାଇ ବୋଇଲା କୁମର ପ୍ରହ୍ଲାଦ
ଶିବଙ୍କୁ ଛାଡ଼ି ତୁ ସେବ ବିଷ୍ଣୁଙ୍କର ପାଦ ।
ଶିବ ଅଟେ ମହାଯୋଗୀ ନାହିଁ ତାର ଚିନ୍ତା
କାହାରି ସେ ଭଲ ମନ୍ଦ ନୁହଇ ଜାଣନ୍ତା ।
ପ୍ରପଞ୍ଚ ବେଶ ଭିକ୍ଷାର୍ଥୀ ଶମଶାନବାସୀ
ଭ୍ରମଣ କରେ ବଳଦ ବାହନରେ ବସି ।
ନିଶ୍ଚଳ ହୋଇଣ କାହିଁ ନ ରହେ ସେ ଦଣ୍ଡେ
ଡମ୍ବରୁ ବଜାଏ ଶୂଳ ଧରିଥାଏ ଖଣ୍ଡେ ।
ଅଳଙ୍କାର ବିହୀନେ ତା ଗଳେ ହାଡ଼ମାଳ
ବସ୍ତ୍ରାଭାବେ କଟିରେ ସେ ପିନ୍ଧେ ବ୍ୟାଘ୍ରଛାଲ ।
ଅରଖ ଦୁଦୁରା ଗେଂଶ ପୁଣି ବେଲପତ୍ରି
ଏହା ତାର ଫୁଲ ଭସ୍ମ ବିଲେପନ ନିତି ।
ଯେତେ ଲୋକଙ୍କୁ ସେ ପିତା ଦେଇଛନ୍ତି ବର
ଏ ମହୀରେ ରହିଛି କେ ହୋଇଣ ଅମର ।
ବିଷ୍ଣୁଙ୍କୁ ସେବା କରଇ ଯେହୁ ସର୍ବକାଳେ
ଏ ସଂସାରୁ ତରେ ସେହୁ ତାଙ୍କ କୃପାବଳେ ।
ତୁ ଶିବଙ୍କ ଭକ୍ତ ମୁହିଁ ବିଷ୍ଣୁଙ୍କ ଭକତ
ମୋ ପ୍ରାଣ ସଂହାର କରି ନ ପାରିବୁ ତାତ ।
ନିଶ୍ଚୟ ତାରିବେ ମୋତେ ପ୍ରଭୁ ଦୟାମୟ
ହେ ପିତା ତାଙ୍କର ତୁମ୍ଭେ ନିଅ ଯେ ଆଶ୍ରୟ ।

ବିଷ୍ଣୁ ମହିମା ପ୍ରହ୍ଲାଦ ଯହୁଁ ବଖାଣିଲା
ଶୁଣି ଶୁଣି ସେ ହିରଣ୍ୟ ପ୍ରଜ୍ୱଳିତ ହେଲା ।
ମହାକୋପେ ଦନ୍ତ ଚିପି ଉଠି ଶିରଝୁଣି
ଅସିପତ୍ରେ ପ୍ରହଲ୍ଲାଦେ ପକାଇଲା ହାଣି ।
ତିରଣ ପ୍ରମାଣେ ମାଂସ ପକାଇଲା ଛେଦି
ତା ରକ୍ତ ଯେତେକ ସବୁ ଭୂମିଗଲା ଭେଦି ।
ଭୂମିରେ ପଡ଼ିଲା ପୁତ୍ର ହୋଇ ଖଣ୍ଡି ଖଣ୍ଡି
ହରିନାମ ବୋଲନ୍ତି ସେ ପୁତ୍ର ମୁଣ୍ଡ ଗଣ୍ଡି ।
ତଥାପି ନ ନିବୃରଣ କୋପେ ନିଶାଚର
ବେନି ପଥର କଚୁଡ଼ି ମାଂସର ଉପର ।
ତା ଅସ୍ଥି ଚର୍ମ ମାଂସକୁ ଛେଚି କଲା ମେଞ୍ଚି
ଶିଳେ ବାହୁଁ ଶବ୍ଦ ଶୁଭେ ରଖ ହେ ଶ୍ରୀହରି ।
ଶୁଣି ପ୍ରଚଣ୍ଡ ଦଇତ ପୁଣି କୋପେ ଗଲା
ସେ ସମସ୍ତ ମାଂସ ନେଇ ଅନଳେ ଭରିଲା ।
ତହିଁର ଉପରେ ନେଇ ଢାଳେ ଘୃଆହୁତି
ଘୃତ ପାଇଣ ଅନଳ ଉଠେ ପ୍ରଜ୍ୱଳିତ ।
ଦୈତ୍ୟ ବୋଇଲେ ପ୍ରହ୍ଲାଦ ହରି ଆଶ୍ରେ କରୁ
ଦେଖିବା ଏଥର ହରି ତୋତେ ରକ୍ଷା କରୁ ।
ପୁତ୍ରକୁ ନାଶି ଉତ୍ସବ କଲା ଦୈତ୍ୟେଶ୍ୱର
ବୋଲେ ଏବେ ନାଶଗଲା ବଇରୀ ମୋହର
ଏତେ ବୋଲିଣ ଅସୁର ଗଲା ନିଜପୁର
ମନ ମଧ୍ୟରେ ହୁଅଇ ଆନନ୍ଦ ଅପାର ।
ସ୍ନାନକରି ମଣୋହିକୁ ବିଜେ ଦୈତ୍ୟରାଜ
ଅନଳୁ ବାହାରେ ପୁତ୍ର ଜିଣି ଚନ୍ଦ୍ର ତେଜ ।
ବହୁରତ୍ନ ଅଳଙ୍କାର ଭୂଷଣ ତା କାୟେ
ଧାଇଁଯାଇ ପିତାକୋଳେ ବସିଲା ତନୟେ ।
ବୋଲେ ପ୍ରହ୍ଲାଦ ମୁଁ ତୋର ଏକମାତ୍ର ସୁତ
ମୋତେ ତେଜିଣ ମଣୋହି କରୁଛୁ କେମନ୍ତ ।
କାଳାନଳ ତେଜ ଜିଣି ବିକାଶେ ତା କାୟ
ପୁତ୍ରକୁ ଦେଖି ହିରଣ୍ୟ କଲା ମହାଭୟ ।
ବୋଲେ ରେ କୁମର ତୋତେ ଦେଲି ପରମାଦ
ଅନଳୁ ଅଇଲୁ କେହ୍ନେ ନ ହୋଇ ଦଗଧ ।
ପିତା ବାକ୍ୟ ଶୁଣି ବୋଲେ ପ୍ରହଲାଦ ଭକ୍ତ
ମୋତେ ଉଦ୍ଧାରିଲେ ପିତା ଦେବ ଲକ୍ଷ୍ମୀକାନ୍ତ
ସେ ପ୍ରଭୁଙ୍କ ଆଶ୍ରେନେଇ ମାରକଣ୍ଡ ଯତି
ଏହି ବ୍ରହ୍ମାଣ୍ଡରେ ସାତକଳ୍ପ ବଞ୍ଚିଛନ୍ତି ।
ସେ ପ୍ରଭୁଙ୍କ ଆଶ୍ରେନେଇ ଦେବ ମହେଶ୍ୱର
ଯୁଗେ ଯୁଗେ ରହିଛନ୍ତି ହୋଇଣ ଅମର ।
ମୁଁ ତାଙ୍କ ଆଶ୍ରେ ନେଇଛି ହୋଇବି ଅମର
ତୁମ୍ଭେ ଦଣ୍ଡ ପାଇବ ଯେ ଯାଇ ଯମପୁର ।
ପ୍ରହ୍ଲାଦ ବଚନେ ପୁଣି କୋପଇ ଅସୁର
ବେନିକରେ ଲୁହାଗଦା ବୁଲାଇଣ ବୀର ।
ପ୍ରହଲ୍ଲାଦେ ଡାକ ବୋଲେ ଶୁଣ ରେ କୁମର
ଆମ୍ଭେ ଯାହା ପଚାରୁଛୁ ଦିଅ ତା ଉତ୍ତର ।
ବୋଇଲୁ ଯେବେ ତରିଲୁ ନାରାୟଣ ଧ୍ୟାୟି
ମୋତେ ଦେଖା ନାରାୟଣ ଅଛି ତୋର କାହିଁ
ପ୍ରହଲ୍ଲାଦ ବୋଇଲାକ ଶୁଣ ଆହେ ତାତ
ଜଗନ୍ନାଥ ନାମଗୋଟି ଜଗତେ ବିଖ୍ୟାତ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ସବୁଠାରେ ହରି
ଜଳ ସ୍ଥଳ ଅନଳରେ ଅଛନ୍ତି ସେ ପୂରି ।
ପୃଥ୍ୱୀ ଆପ ତେଜ ବାୟୁ ଆବର ଆକାଶ
ସ୍ଥାବର ଜଙ୍ଗମ ଘଟେ ହରିଙ୍କ ନିବାସ ।
ବ୍ରହ୍ମା ରୁଦ୍ର ଆଦିକରି ବୃକ୍ଷଲତା ଗିରି
ଅନାଦିନାଥ ସେ ସର୍ବଘଟେ ଛନ୍ତି ପୂରି ।
କାଷ୍ଠ ପାଷାଣ ମୃତ୍ତିକା ସବୁଠାରେ ସେହି
ଯୋଗରେ ମନ୍ତ୍ର ବାଧିଲେ ତାଙ୍କ ଦେଖାପାଇ
ଆଦିଅନ୍ତ ମଧ୍ୟେ ହରି ଜଗତ କାରଣ
ମାନ ଦାନ ଧ୍ୟାନ ଆଉ ଯଜନ ଯାଜନ ।
ସିଦ୍ଧ ଆଉ ସାଧକର ହରି ଅଟେ ମୂଳ
ଚନ୍ଦ୍ର ସୂର୍ଯ୍ୟ ସମ କାଳନିଦ୍ରା ଏ ସକଳ ।
ମନ ବଚନ କର୍ତ୍ତବ୍ୟେ ଅଛନ୍ତି ସେ ହରି
ସେ ନାମ ସ୍ମରଣ ମାତ୍ରେ ପାପୁଁ ଯାନ୍ତି ତରି ।
ଯଜନ ଯାଜନ ଅଧ୍ୟୟନ ମୂଳଗୋଟି
ସ୍ମରନ୍ତେ ଅନ୍ଧପଟଳ ନେତ୍ରୁ ଯିବ ଫିଟି ।
ବୈଦ୍ୟପୁରୁଷ ସେହି ଯେ ଦିବ୍ୟ ମହୌଷଧି
ସ୍ତମ୍ଭନ ମୋହନ ବଶ୍ୟ ଉଚାଟନ ଆଦି ।
ଅନନ୍ତ ମହିମା ତାର ସେହି ଦେବରାୟ
ଏ ସଂସାରେ ଯାହା ଦେଖ ସର୍ବ ବିଷ୍ଣୁମୟ ।
ତୁମ୍ଭେ ହରି ମୁହିଁ ହରି ସର୍ବଜୀବେ ହରି
ସବୁଠାରେ ସେହି ପ୍ରଭୁ ରହିଛନ୍ତି ପୂରି ।
ମାଉ ଅବା ତାର ପିତା ତହୁଁ ଅନ୍ୟ ନାହିଁ
ଯେ ଶରଣ ନିଏ ତାର ତାକୁ ତାରେ ସେହି ।

ଆଜ୍ଞା ଅବଜ୍ଞା ଅଟଇ ଯେହ୍ନ ଚକ୍ରଧର
ତାରଣ ମାରଣ ଯେହ୍ନ ପ୍ରଭୁ ନିରାକାର ।
ସବୁଠାରେ ଯେହ୍ନ କରିଅଛନ୍ତି ବିଜୟେ
ସେ ପ୍ରଭୁ କୃପାରେ ପୃଥ୍ୱୀ ଆତଯାତ ହୁଏ ।
ତୁ ବୋଲୁ କେଉଁଠି ଅଛି ଦେଖା ତୋର ହରି
ମୋର ପ୍ରଭୁ ଏହି ସ୍ତମ୍ଭେ ଛନ୍ତି ବିଜେକରି ।
ପୁତ୍ରର ବଚନ ଶୁଣି ଗର୍ଜିଲା ହିରଣ୍ୟ
ତା ଗର୍ଜ୍ଜନଘାତେ ପୃଥ୍ୱୀ ହେଲା କମ୍ପମାନ ।
ପୁଣି କୋପେ ଗର୍ଜିଲେକ କୃତାନ୍ତକ ଜାଣି
ଭୈରବ ମୂର୍ତ୍ତି ଧଇଲା ଦୈତ୍ୟ ଶିରୋମଣି ।
ରେରେକାର କରି ଦୈତ୍ୟ ସଭରେ ଉଠିଲା
ସେ ସ୍ତମ୍ଭେ ବାମପାଦକୁ ଆଣେ ପ୍ରହାରିଲା ।
ଯେଉଁ ସ୍ତମ୍ଭରେ ମାଇଲା ସେ ଅସୁର ପାଦ
ନୃସିଂହ ବାହାରି ତହୁଁ କରି ଘୋରନାଦ ।
ଊର୍ଦ୍ଧ୍ୱଲୋଚନ କପାଳ ଦଶଇ ଓସାର
ବିକଟ ଦଶନ ମୂର୍ତ୍ତି ଦିଶେ ଭୟଙ୍କର ।
ପଞ୍ଜରା ଅଟଇ ଲମ୍ବ କ୍ଷୀଣୋଦର କଟି
ସୁବିସ୍ତାର ବକ୍ଷସ୍ଥଳ ବ୍ରହ୍ମାଣ୍ଡ ଚରଟି ।
ନାସିକା ଉଚ୍ଚଦ୍ୱି ପୃଷ୍ଠା ଉନ୍ନତ ସେ ଗମ୍ଭୀର
ପବନ ବହନ୍ତେ ତହୁଁ ପୃଥ୍ୱୀ ଥରହର ।
କୁଞ୍ଚିତ କେଶ ବର୍ତ୍ତୁଳ ଅଟେ ବେନି ବାହା ।
ପାଞ୍ଚନଖମାନ ତୀକ୍ଷ୍ଣ ମୁନିଆଁ ମୁନିଆଁ ।
ଯୋଜନେ ଯୋଜନେ ଲମ୍ବ ଦେହ ରୋମାବଳି
ସୁଗନ୍ଧ ମୁକୁଟ ଶୋଭା ପାଉଛି ମଉଳି ।
ଗହ ଗହ ହାକ୍ଷୋଡ଼ଇ ଲହ ଲହ ଜିହ୍ୱା
ଟହଟହ ହସିକରି ମୁଖ କରି ନିଆଁ ।
ରଟ ରଟ ମଟ ମଟ କରି ଦନ୍ତପାଟି
ଏକକାଳେ ନରସିଂହ ପୃଥ୍ୱୀ ଗଲେ ଘୋଟି ।
ନବଲକ୍ଷ ପୁଣ ଅଟେ ହିରଣ୍ୟକଶିପୁ
ନୃସିଂହଙ୍କ ନଖକୋଣେ ରହିଲା ତା ବପୁ ।
ହିରଣ୍ୟ ଦୈତ୍ୟକୁ ଦେବ ଧରି ମୁଠିକରି
ଉତ୍ତାନଶାୟୀ କରିଣ ଜାନୁପରେ ପାରି ।
କୁଟିଳ ଲୋଚନ ସ୍ୱାମୀ ଘୂରେ ଚକ୍ରପାୟେ
ବକ୍ଷସ୍ଥଳ ବିଦାରଣ କଲେ ଦଶନହେ ।
ଗଙ୍ଗା ଯମୁନା ଯେ ସରସ୍ୱତୀ ଧାର ପ୍ରାୟେ
ସେହିରୂପେ ହିରଣ୍ୟ ବୁକୁଁ ରକ୍ତ ବହିଯାଏ ।

ଅତ୍ୟନ୍ତ ବିକଟାଳ ସେ ନୃସିଂହଙ୍କ ରୂପ
ବେଳକୁବେଳ ତାହାଙ୍କର ବଢ଼େ ମହାକୋପ ।
ଆକର୍ଷି ଦୈତ୍ୟ ବକ୍ଷକୁ ଧରି ମହାଗାଢ଼େ
ରକ୍ତମାଂସ ଚୋବାଉଣ କଲେ ନଖଦାଢ଼େ ।
ଅନ୍ତ ପଇତା କରିଣ ରକ୍ତ ମାଂସ ଚାରି
ଭକ୍ଷିଣ ସନ୍ତୋଷ କଲେ ଦେବ କଳେବର ।
ଅସୁରର ଅସ୍ଥି ମେଦ ମାଂସଆଦି କରି
ଖାଇ ସୁଆଦ ପାଇଣ ଦେବ ନରହରି ।
ସେ ସୁଆଦ ପାଇ ପ୍ରଭୁ ମୂର୍ଚ୍ଛି ନ ପାରିଲେ
ଖାଇବାପାଇଁକି ପୁଣି ଭ୍ରମଣ କରିଲେ ।
ହିରଣ୍ୟ ଦୈତ୍ୟର ଥିଲେ ଯେତେ ରକ୍ଷବଳ
ସେମାନଙ୍କୁ ଧରି ପ୍ରଭୁ କରିଲେ କବଳ ।
ଅସୁର ବଳଙ୍କୁ ମାରି ଜନଜନ୍ତୁ ଦେଖି
ଗୋଠା ଗୋଠା ସେମାନଙ୍କୁ ଦେଲେ ପ୍ରଭୁ ଭକ୍ଷି
ଏହିରୂପେ ଶତ ଶତ ସହସ୍ର ସହସ୍ର ଧରି
ଖାଇଲେ ଗୋଡ଼ାଇ ପ୍ରଭୁ ନ ଗଲେ ଉଦୁରି ।
ସପ୍ତଦ୍ୱୀପେ ଥିଲେ ଯେତେ ନର ଆଉ ଜୀବ
ସବୁଙ୍କୁ ଭକ୍ଷିଲେ ସେହ୍ନ ନରସିଂହ ଦେବ ।
କ୍ଷଣକେ ଭ୍ରମଣ କଲେ ନବଦ୍ୱୀପ ପୃଥ୍ୱୀ
ନୃସିଂହ ରୂପରେ ପ୍ରଭୁ ଭକ୍ଷନ୍ତି ସବୁନ୍ତି
ଅତି ଭୟଙ୍କର ଅଟେ ତାହାଙ୍କର ମୂର୍ତ୍ତି
ତାଙ୍କ ଆଗୁ ପଳାଇଣ କିଏ ଯିବ ବର୍ତ୍ତି ।
ମର୍ତ୍ତ୍ୟ ସମସ୍ତଙ୍କୁ ଭକ୍ଷି ନ ଲଭିଣ ଶାନ୍ତି
ଦେବତାଙ୍କୁ ଖାଇବାକୁ ବଳାଇଲେ ମତି ।
ସ୍ୱର୍ଗକୁ ଗମନ୍ତେ ଦେଖିକରି ମହାଭୟେ
ଅମର ତେଜି ପଳାଇ ଗଲେ ଦେବତାଏ ।
ଷଡ଼ଲକ୍ଷ ଯୋଜନେ ସେ ରହିଲେକ ଯାଇ
ସ୍ୱର୍ଗେ ନୃସିଂହ ଦେଖିଲେ ଗୋଟିଏ କେ ନାହିଁ
ବିହନ୍ତା ପୁରୁଷମାନେ କହିଲେ ଧାତାକୁ
ନୃସିଂହ ନାଶ କରିଣ ମର୍ତ୍ତ୍ୟ ସମସ୍ତଙ୍କୁ ।
ସ୍ୱର୍ଗ ଭୁବନକୁ ଦେବ ଅଇଲେଣି କ୍ଷେପି
ଏକ କାଳେ ବ୍ରହ୍ମାଣ୍ଡରେ ରହିଛନ୍ତି ବ୍ୟାପି ।
ନୃସିଂହଙ୍କ ରୂପ ଦେଖେ ଅନୁକ୍ଷଣେ ଇଚ୍ଛି
ଏକାକେ ମରାଳେ ବସି ବିଜୟ ବିରିଞ୍ଚି ।
ଦେଖିଲେ ନୃସିଂହ ରୂପ ବିକଟାଳ ମୁଣ୍ଡ
ପ୍ରକାଣ୍ଡ ମୂର୍ତ୍ତିରେ ଘୋଟି ଅଛନ୍ତି ବ୍ରହ୍ମାଣ୍ଡ ।

ନୃସିଂହ କବଚ ବୋଲି ଏକ ମହାମନ୍ତ୍ର
ତାହା ପଢ଼ିଲେକ ଧାତା ଶାନ୍ତିର ନିମିତ୍ତ ।
ଅନେକ ବଚନେ ସ୍ତବ କଲେ ବୃନ୍ଦାରକେ
ନୃସିଂହ ମନ୍ତ୍ର ପଢ଼ନ୍ତି ସର୍ବେ ଏକେ ଏକେ ।
ଦେବଙ୍କ ରକ୍ଷଣେ ଦେବ ଇଚ୍ଛା କରିଥିଲେ
ଧାତାଦି ଦେବଙ୍କ ସ୍ତବେ ଶାନ୍ତିକୁ ଲଭିଲେ ।
କାଳଚକ୍ର ପ୍ରାୟେ ଭ୍ରମେ ତାଙ୍କ ନେତ୍ର ଦୁଇ
ସନ୍ନିଧେ ଭରସି ପଶି ନ ପାରନ୍ତି କେହି ।
ଶାନ୍ତମୂର୍ତ୍ତି ଦେଖି ସୁଦ୍ଧା ଦେବ ପିତାମହ
ପାଶକୁ ନ ଗଲେ ମନେ ହେଲା ମହାଭୟ ।
କମଳାଙ୍କ ପୁରେ ଯାଇ ହୋଇଲେ ପ୍ରବେଶ
ତାଙ୍କୁ ସବୁ ଜଣାଇଣ କହିଲେ ଏ ଘୋଷ ।
ତୁମ୍ଭେ ମାତ ଯାଅ ତାଙ୍କ ଆଗେ ହୁଅ ଉଭା
ତୁମ୍ଭଙ୍କୁ ଦେଖିଲେ ଶାନ୍ତ ହୋଇବେ ସେ ଅବା
ଧାତାଙ୍କ ବଚନେ ବାରିନିଧିର ଦୁଲାଳୀ
ଜଗତଜନ ମୋହିନୀ ତାଙ୍କ ପାଶେ ମିଳି ।
ଯହୁଁ ଦେଖିଲେ ସେ ପଦ୍ମଆସନୀର ମୁଖ
ତହୁଁ ଶାନ୍ତିକୁ ଭଜିଲେ ଛାଡ଼ି ମନୁ କୋପ ।
ଗରଳଭକ୍ଷ ଗୌରୀକୁ ଦେଖି ଯେହ୍ନେ ମୋହି
ଶାନ୍ତ ଭଜିଲେ ନୃସିଂହ ତେହ୍ନେ ଲକ୍ଷ୍ମୀ ଚାହିଁ ।
ଶାନ୍ତ ଭଜି ମହାପ୍ରଭୁ ଅତି ପ୍ରେମଭୋଳେ
ନୃସିଂହ ମୂର୍ତ୍ତିରେ ତାଙ୍କୁ ବସାଇଲେ କୋଳେ ।
ଜୟ ଜୟ ଲକ୍ଷ୍ମୀ ନରସିଂହ ମହାମୂର୍ତ୍ତି
ଖଣ୍ଡିଲେ ବିପଦ ଧରି ବାରୁଣୀର ଜ୍ୟୋତି ।
ଯେଉଁ ଡାକ ଦେଲେ ପ୍ରଭୁ କରି ଗରଜନ
ସେ ଡାକରେ କମ୍ପିଗଲା ଚଉଦ ଭୁବନ ।
ଜୟ ଜୟ ନରସିଂହ ବାଳ ନରସିଂହ
ବୃଦ୍ଧ ନରସିଂହ ତୁମ୍ଭେ ତରୁଣ ନୃସିଂହ ।
ଜୟ ନରସିଂହ ତୁମ୍ଭେ ଯୋଗ ନରସିଂହ
ବଳିଷ୍ଠ ନୃସିଂହ ତୁମ୍ଭେ କପଟ ନୃସିଂହ ।
ସ୍ତମ୍ଭନ ନୃସିଂହ ତୁମ୍ଭେ ମୋହନ ନୃସିଂହ
ଶାନ୍ତ ନରସିଂହ ତୁମ୍ଭେ ଲକ୍ଷ୍ମୀ ନରସିଂହ ।
ନରକେଶରୀ ନୃସିଂହ ତୁମ୍ଭେ ମହାମୂର୍ତ୍ତି
ତୁମ୍ଭ ଶ୍ରୀଚରଣେ ଦେବ ସହସ୍ର ପ୍ରଣତି ।
ଏହିରୂପେ ବହୁସ୍ତୁତି କଲେ ବେଦବର
ତାହା କି ବର୍ଣ୍ଣିବ ସ୍ଥିର ମନୁଷ୍ୟ ମାତର ।
ଶ୍ରୀସିଦ୍ଧ ଶାରଦାଚଣ୍ଡୀ କହିଲେ ଯା ମୋତେ
ତାହା କହିଲଇଁ ମୁହିଁ ଶୁଣି ଶ୍ରୁତିପଥେ ।
ଏ ଅନିତ୍ୟ ସଂସାରରୁ ସେ ଜନ ତରିବ
ଯମ ଦଣ୍ଡକୁ ନ ଯେ ଜନ ଭୀତ କରୁଥିବ ।
ଦୃଢ଼ଚିତ୍ତ ଭଜୁ ସେହି ନରସିଂହ ରୂପ
ତାଙ୍କୁ ଧ୍ୟାନକରି କରୁ ତାହାଙ୍କର ଜପ ।
ସେ ସୁଜ୍ଞାନୀ ଜନ ଯେବେ ଦୃଢ଼ରେ ଭଜିବ
ନିଶ୍ଚୟ ପାତକ ଖଣ୍ଡି ବୈକୁଣ୍ଠକୁ ଯିବ ।
ଅନେକ ଜନ୍ମରେ ପାପ କରିଥିବ ଯାହା
ନୃସିଂହ ସ୍ମରଣ କଲେ ଖଣ୍ଡିଯିବ ତାହା ।
କଳିକାଳରେ ଅତ୍ୟନ୍ତ ଅଜ୍ଞାନୀ ମନୁଷ୍ୟ
ମାୟାମୋହେ ପଡ଼ି ଅରଜନ୍ତି ବହୁଦୋଷ ।
ଶରୀର ମଧ୍ୟରେ ସାର କଲା ଆଖି ଦୁଇ
ଲୋଭ ଦେଖାଇ ପ୍ରାଣୀକୁ ନାଶ କରେ ସେହି
ଯମ ଚଞ୍ଚିକାରେ ଚିତ୍ର ବିଚିତ୍ର ଏ ବେନ
ଲୋଭ ଦେଖି ପ୍ରାଣୀ କଥା ସବୁ ଯାଏ ଘେନ ।
ଅପାର ପାପ କରନ୍ତି ଯାହା ଇହଲୋକେ
ଯାଙ୍କ ବାକ୍ୟେ ଯମ ତାଙ୍କୁ ଫିଙ୍ଗେ ନାନାନର୍କେ
ନାଶକରନ୍ତି ସେ ଯାହା କହିବେ ବୁଝାଇ
ଏହାଙ୍କର ବାକ୍ୟେ ଯମ ନାନା ଶାସ୍ତି ଦେଇ ।
ହେ ଚକ୍ର ବିଚକ୍ର ମୋତେ ଏଥୁ ରକ୍ଷାକର
ଲୋଭ ମୋହରୁ ହେଉ ମୋ ମାନସ ଅନ୍ତର ।
ସର୍ବ୍ୟେ ଅସର୍ବ୍ୟେ ମୋ ଚିତ୍ତ ଯହିଁଥିଲେ ଥାଉ
ନୃସିଂହଙ୍କ ପାଦୁ ମନ ଅନ୍ତର ଯେ ନୋହୁ ।
ଅଭୟ ନୃସିଂହଙ୍କୁ ମୁଁ ସ୍ମରେ ସଦା ହୃଦେ
ପାଇବି ସଦ୍‌ଗତି ମୁହିଁ ତାହାଙ୍କ ପ୍ରସାଦେ ।
ଦର୍ଶନ କରିବି ମୋତେ ହେଉ ସେହି ଦୃଶ୍ୟ
ତାଙ୍କୁ ଧ୍ୟାଇଲେ ମୋହର ଲୋଭ ହେବ ବଶ ।
ହୃଦେ ସୁମରିଲେ ନରସିଂହ ନାମ ଗୋଟି
ଅନେକ ଜନ୍ମର ପାପ ଥିଲେ ଯାଇ ଛୁଟି ।
ହିରଣ୍ୟ ବଇରୀ ଯେଉଁ ପ୍ରଭୁ ଜଗନ୍ନାଥ
ପ୍ରହ୍ଲାଦକୁ ଚିରଆୟୁ ଦେଲେ ଅଦଭୁତ ।
ନରସିଂହ ନାମକୁ ଯେ ସଦା କରେ ଲୟ
ସର୍ବପାପ ଖଣ୍ଡେ ତାର ନିର୍ମଳ ସେ କାୟ ।
ଯମରାଜା କାଳଦଣ୍ଡ ହେବାକୁ ଅଜୟ
ନରସିଂହ ରୂପୀ ମୋତେ ହୁଅନ୍ତୁ ସଦୟ ।

ଦଶ ଅବତାର ମଧ୍ୟେ ନରସିଂହ ରୂପ
ସ୍ମରଣ କରନ୍ତେ ଖଣ୍ଡେ ଶତଜନ୍ମ ପାପ ।
ନୃସିଂହ ବୋଲଣ ତୁଣ୍ଡ ଅହର୍ନିଶି ରଟୁ
ନୃସିଂହ ସ୍ମରଣ ନରେ ଯମଦଣ୍ଡ ଛୁଟୁ ।
ନୃସିଂହ ସ୍ମରଣ ନରେ ଯାଉ ସର୍ବବ୍ୟାଧି
ନୃସିଂହ ନାମ ଅଟଇ ପରମ ଔଷଧି ।
ନୃସିଂହ ସ୍ମରଣ ନରେ ଦୂର ହେଉ ଜରା
ନୃସିଂହ ସ୍ମରଣ ନରେ ଯାଉ ପାପଭରା ।
ନୃସିଂହ ସ୍ମରଣ ନରେ ଯାଉ ପଥଶ୍ରମ
ନୃସିଂହ ସ୍ମରଣ ହେବ ବହୁତୀର୍ଥ ଧର୍ମ ।
ନୃସିଂହ ନାମକୁ କେହି ନାହିଁ ସରସମ
ନୃସିଂହ ସ୍ମରଣ ପୂରୁ ତୁମ୍ଭ ମନସ୍କାମ ।
ବଂଶରେ ଯାହାକୁ ଯେତେ କଳଙ୍କ ରହିଛି
ନୃସିଂହ ସ୍ମରଣ ତାର ନ ରହିବ କିଛି ।
ଯେଉଁପରି ଅଗ୍ନି ତୃଣରାଶିକୁ ଦହଇ
ସେରୂପେ ନୃସିଂହ ନାମେ ପାପ ଧ୍ୱଂସ ହୋଇ
ସୁଫଳ ସୁଗତି ପାଇଁ ଯହିଁ ଥାଏ ମତି
ନରସିଂହ ନାମଗୋଟି ହୋଷ ନିତି ନିତି ।
ଯଦ୍ୟପି ତାହାକୁ ସର୍ପ ଦଂଶନ କରିବ
ନୃସିଂହ ସ୍ମରଣେ ବିଷ ତାର ଉତୁରିବ ।
ଯେବେ କର୍ମଫେଡ଼ ପରେ ପଡ଼ୁଥିବ ଗଣ୍ଠି
ନୃସିଂହ ନାମ ସ୍ମରଣେ ତାହା ଯିବ ଫିଟି ।
ଗଜଭୟ ବ୍ୟାଘ୍ରଭୟ ସର୍ପ ଆଦି ଭୟ
ନୃସିଂହ ନାମ ସ୍ମରନ୍ତେ ଯାଏ ସମୁଦାୟ ।
ସ୍ନାନ ଦାନ ଜପ ମନ୍ତ୍ର ନରସିଂହ ସର୍ବ
ନୃସିଂହ ସ୍ମରନ୍ତେ ଗତି ମୁକତି ପାଇବ ।
ନରସିଂହ ପିତା ନରସିଂହ ଅଟେ ମାତା
ନରସିଂହ ସଖା କୁଳ ବାନ୍ଧବ ଦେବତା ।
ନାନା ତୀର୍ଥ ଭ୍ରମି ଭ୍ରମି ପଥଶ୍ରମ ନୁହ
ନୃସିଂହ ସ୍ମରଣ ଘରେ ବସି ଫଳ ପାଅ ।
ନରସିଂହ ନାମଗୋଟି ହୃଦେ କର ଦୃଢ଼
ନରସିଂହ ନାମ ମନ୍ତ୍ର ଜପକର ପଢ଼ ।
ବ୍ରାହ୍ମଣ ହେଉ କି ଅବା କ୍ଷତ୍ରୀ ହେଉ ଅବା
ବୈଶ୍ୟ ହେଉ ଶୂଦ୍ର ହେଉ ଯେ ହେଉ ଅଥବା
ଅଷ୍ଟାଦଶ ପାତକରେ ଚଣ୍ଡାଳ ସହିତ
ଅଭେଦ ନ କର ଜପ ନରସିଂହ ମନ୍ତ୍ର ।
ସଚରାଚର ଭକ୍ଷିଲେ ଯେଉଁ ନରସିଂହ
ବ୍ରାହ୍ମଣ ଚଣ୍ଡାଳ ତାର ସର୍ବେ ଏକଅଙ୍ଗ ।
ଶ୍ରୀନୃସିଂହ ଚରଣରେ ମୋହର ଦଇମା
ଭୀଷ୍ମ ପର୍ବରେ କହଇ ଶ୍ରୀଶାରଳା ମୁନି ।



## ଭୂରିଶ୍ରବାଙ୍କ ଦ୍ୱାରା ଅର୍ଜ୍ଜୁନଙ୍କ ବୀରତ୍ୱ ବର୍ଣ୍ଣନ ଓ ରଥୀମାନଙ୍କ ସୈନ୍ୟ ବର୍ଣ୍ଣନ

ଏଥୁଅନନ୍ତରେ ପୁଣି ମନୁ ନରନାଥ
ଅଗସ୍ତିଙ୍କ ଶ୍ରୀଚରଣେ କରି ପ୍ରଣିପାତ ।
ପୃଚ୍ଛାକଲେ କହ ମୁନି ଭୂରିଶ୍ରବା ବୋଲେ
କୌରବ ସଭାରେ ପୁଣି କି ବିସ୍ତର କଲେ ।
ତାହା ଶୁଣିବାକୁ ମନ ହୁଏ ଉଦବେଗ
କୃପାକରି ସେ ବିଷୟ କହ ମହାଭାଗ ।
ଶୁଣି ଅଗସ୍ତି କହିଲେ ଶୁଣ ନରନାଥ
ଭୂରିଶ୍ରବା ପୁନରପି କହିଲେ ଏମନ୍ତ ।
ସତ୍ୟ କହୁଅଛି ମୁହିଁ ଏ ସଭା ମଧ୍ୟରେ
ସମସ୍ତେ ବଞ୍ଚିଅଛନ୍ତି ନୃସିଂହ କୃପାରେ ।
ଅଜ୍ଞାନେ ତୁମ୍ଭେ ସବୁଙ୍କୁ ଘେନୁଛ ଆପଦ
ଜଗତନାଥଙ୍କୁ କାହିଁ କେ ଦେବ ପ୍ରମାଦ ।
ସଭାମଧ୍ୟରେ ଯେ ରୂପ କୃଷ୍ଣ ପ୍ରକାଶିଲେ
ଆମ୍ଭେ ବିସ୍ତରିଲୁ ନଷ୍ଟେ ମଲୁ ଏକାବେଳେ
ପାଣ୍ଡବମାନଙ୍କ ହେତୁ ଦୟା କଲେ ମନେ
ଯେଣୁ ପାଣ୍ଡବ ସୋଦର ଅଟ ତୁମ୍ଭେମାନେ ।
ତେଣୁ ଶାନ୍ତ ହୋଇ ପ୍ରଭୁ କୋପ ସମ୍ବରିଲେ
ବହୁ ଆପଦୁ ପାଣ୍ଡବେ ତୁମ୍ଭଙ୍କୁ ରଖିଲେ ।
ପାଣ୍ଡବାସୁର ଯେ କାଳେ କୌରବେ ଭକ୍ଷିଲା
ଭୀଷ୍ମ ଦ୍ରୋଣ ଆଦି ଥିଲେ କେ ରଖିପାରିଲା ।
ଗର୍ଭେ ଥାଇ ଦୁର୍ଯ୍ୟୋଧନ ପାର୍ଥକୁ ଡାକିଲା
ରକ୍ଷାକର ରକ୍ଷାକର ବୋଲଣ କହିଲା ।
ସାଧୁ ସେ ପାର୍ଥ ପେଷିଲା ଶର ମନଭେଦୀ
ହୋଇଲା ଯେ ଡାକେ ତାକୁ ରଖ ଶତ୍ରୁ ଭେଦି
ଅର୍ଜ୍ଜୁନ ବାକ୍ୟେ ଚଳିଲା ମନଭେଦୀ ଶର
ଷଡ଼ ଯୋଜନେ ପଡ଼ିଲା ରାକ୍ଷସ ଉଦର ।
ହୃଦେ ପଡ଼ନ୍ତେ ବିଫାଳ ହୋଇଲା ଅସୁର
ଦୁର୍ଯ୍ୟୋଧନ ଭ୍ରାତା ସହ ହୋଇଲେ ବାହାର

ସଞ୍ଜକେତୁ ନାମେ ଦୈତ୍ୟ କଲା ଯେଉଁ କୃତ୍ୟ
ଭାନୁମତୀକ ହରିଲା ଆଉଁ ଶତେ ଭ୍ରାତ ।
ଭାନୁମତୀ କେଶଧରି ବସାଇଲା ରଥେ
ଡାକଦେଲା ଭାନୁମତୀ ପାର୍ଥ ରଖ ମୋତେ ।
କୁଣ୍ଡଳୀ ପର୍ବତେ ଥାଇ ଶୁଣି ତା ଅର୍ଜୁନ
ରାକ୍ଷସ ଦଳକୁ ଅସ୍ତ୍ରେ କରିଣ ନିଧନ ।
ବତିଶ ମର୍ଦ୍ଦିତ ରଥ ସୈନ୍ୟ ସିନ୍ଧୁ ଥିଲେ
ଅର୍ଜୁନର ଶରଘାତେ ସର୍ବେ ନାଶଗଲେ ।
ପଡ଼ିଲେ ରାକ୍ଷସ ଯହୁଁ ଶରଘାତ ପାଇ
ଭାନୁମତୀକ ଅର୍ଜୁନ ରକ୍ଷା କଲେ ତହିଁ ।
ଅମୃତ ଶରେ ସବୁଙ୍କୁ ଦେଲା ଜୀବଦାନ
ସର୍ବଦା ତାହାଙ୍କ ମନ ଶାନ୍ତା କ କାରଣ ।
ହେ ଭୀଷ୍ମ ଦେଖିଅଛ ତ ଘୋଷଯାହା ବେଳେ
ଦୁର୍ଯ୍ୟୋଧନେ ବାନ୍ଧିନେଲା ଚିତ୍ରସେନ ବଳେ ।
ଲକ୍ଷେ ଯୋଜନରେ ଥିଲା ଚିତ୍ରସେନ ରଥ
ଜଳପାଶେ ବାନ୍ଧି ତାକୁ ନ ଛାଡ଼ିଲା ପଥ ।
ସେ ଚିତ୍ରସେନ ଗନ୍ଧର୍ବ ନ ପାରିଲା ଯାଇ
ଅଧା ସ୍ୱର୍ଗରେ ତା ରଥ ଅଛି ବନ୍ଧାହୋଇ ।
ମାତଳିକ ବୋଲେ ମୋର ରଥ ବାହା ବେଗେ
ଦୁର୍ଯ୍ୟୋଧନ ଶିର ବଳିଦେବି ଚଣ୍ଡୀ ଆଗେ ।
ମାତଳି ବୋଲେ ଯିବାକୁ ନାହିଁ କାହିଁ ପଥ
ଜଳ ପାଶରେ ଅର୍ଜୁନ ବାନ୍ଧିଛି ତୋ ରଥ ।
ତୁ ଯେଣୁ ବାନ୍ଧି ଆଣିଲୁ ରାଜା ଦୁର୍ଯ୍ୟୋଧନ
ଭାଇ ବଚନେ ବାନ୍ଧିଲା ତୋତେ ଅରଜୁନ ।
ବେଗେ ଦୁର୍ଯ୍ୟୋଧନକୁ ତୁ ଛାଡ଼ ଚିତ୍ରରଥ
ଅମରନାଥ ହୋଇଣ ହେବୁ ଭୂମିଗତ ।
ଚିତ୍ରସେନ ବୋଲେ ଏହୁ ପାଣ୍ଡବ ଦୋରେହା
ବାନ୍ଧିଥିଲି ମାରିଥାନ୍ତି ଭଲଥିଲା ଏହା ।
ରାଗରେ ବୋଇଲା ସ୍ୱାକୁ ଫିଙ୍ଗୁଛି ଏଠାରୁ
କପର ରଖିବ ପାର୍ଥ ଏଥୁଁ ପଡ଼ି ମରୁ ।
ଏହା କହି ଦୁର୍ଯ୍ୟୋଧନ ଯହୁଁ ଛାଡ଼ିଦେଲା
ତା ଦେଖି ପାର୍ଥ ଶରରେ ପାବଛ ବାନ୍ଧିଲା ।
ସେ ଶର ପଥେ ଅଇଲା ଗଡ଼ି ଦୁର୍ଯ୍ୟୋଧନ
ଆସି ଭୂମିପରେ ପଡ଼ି ଲଭିଲା ଚେତନ ।
ସେ ସମସ୍ତେ ଦେଖିଥିଲ ତୁମ୍ଭେ ତ ସକଳେ
ତୁମ୍ଭର ବଳବୀର୍ଯ୍ୟ କି ନ ଥିଲା ସେ କାଳେ ।
ଗୋଧନ ହରଣ କାଳେ ଜଗତେ ସେ କଥା
ଏକା ପାର୍ଥ ତହିଁ ଦେଲା ଯେତେକ ଅବସ୍ଥା ।
ଉତ୍ତରକୁ ପାର୍ଥ ଯେବେ ଆଜ୍ଞା ଦେଇଥାନ୍ତା
କ୍ଷଣକେ ସବୁଙ୍କ ଶିର ଖଡ଼୍‌ଗେ କାଟିଥାନ୍ତା ।
ପ୍ରାଣେ ନ ମାରି ସବୁଙ୍କ ଦରପ ଗଞ୍ଜିଲା
ଏକାକୀ ପାର୍ଥ ତୁମ୍ଭଙ୍କୁ କି ଶାସ୍ତି ନ ଦେଲା ।
ବହୁଦିନ ନୁହଇ ଯେ ଅଟେ କାଲି କଥା
ସେମାନ ପାସୋରି ଏବେ କହୁଛ ଅନ୍ୟଥା
ତୁମ୍ଭେ ଯେ ଜାଣିବ ମୋର ନ ଆସଇ ମନେ
ଏତେ ଦିନ ବର୍ତ୍ତି ପାର୍ଥଯୋଗେ ତୁମ୍ଭେମାନେ
କଲା ଉପକାର ନ ମାନନ୍ତି ଯେଉଁ ପ୍ରାଣୀ
ଅସୁର ଶୃଗାଳ ଜୀବ ମଧ୍ୟେ ତାକୁ ଗଣି ।
ହାରିଗଲେ ପାର୍ଥେ ହଳୀ ସୁଭଦ୍ରା ହରଣେ
ହରି ଅର୍ଜୁନ ଜିଣିବ ଏପରି କେ ଜଣେ ।
ଈଶ୍ୱର ଯଦ୍ୟପି ଇନ୍ଦ୍ର ଆସିବେଟି ବ୍ରହ୍ମା
ଜିଣି ନ ପାରିବେ ହରି ଅର୍ଜୁନ ଏକାତ୍ମା ।
ଆମ୍ଭଠାରେ ପାଣ୍ଡବେ ତ ନୁହନ୍ତି ବିରୋଧୀ
ଦୁହିଁଙ୍କୁ ମିଳାଇବାକୁ ପାଞ୍ଚୁଛି ମୁଁ ବୁଦ୍ଧି ।
ଦୁର୍ଯ୍ୟୋଧନ ବୋଲେ କ୍ଷତ୍ରୀ ହୋଇ ଏହା କହ
ପାଣ୍ଡବେ ଶରଣ ପଶ ମୋ ତହିଁ ନ ରହ ।
ନିୟମ କରିଛି କୃଷ୍ଣ ଆଗେ ମୋର ସାଧେ
ପାଣ୍ଡବେ ଭାଗ ନ ଦେବି ମୁହିଁ ବିନା ଯୁଦ୍ଧେ ।
ସବୁ ଯୋଦ୍ଧାମାନଙ୍କୁ ମୁଁ କହୁଅଛି ଭଲେ
ପ୍ରାଣକୁ ଯେ ଆଶା କରେ ନ ରହ ମୋ ତୁଲେ
ଯେବା ଭୟେ ଉପରୋଧ କରିବ ସଂଗ୍ରାମେ
ତାର ହତ୍ୟା ଦୋଷ ମୋତେ ଲାଗିବଟି ଧର୍ମେ
ଯୁଦ୍ଧ କରିବାକୁ ମୁହିଁ କରିଅଛି ସତ୍ୟ
ନ ଲଙ୍ଘିବି ସତ୍ୟ ପ୍ରାଣ ହେଲେ କଣ୍ଠାଗତ ।
ହେ ଭୀଷ୍ମ ଦ୍ରୋଣ ଆଦି ଯା ପ୍ରାଣେ ଆଶାଅଛି
ପାଣ୍ଡବେ ଶରଣ ପଶ ମୁଁ ଏହା କହୁଛି ।
ଲକ୍ଷ୍ମଣ କୁମର ମୋର ଊନଶତ ଭ୍ରାତ
ଭଗ୍ନୀପତି ମୋର ସିନ୍ଧୁଦେଶ ନରନାଥ ।
ଏ ଯେବେ ଆଶା କରନ୍ତି ତାଙ୍କ ଜୀବନକୁ
ଶରଣ ମାଗନ୍ତୁ ଯାଇ ପଞ୍ଚପାଣ୍ଡବଙ୍କୁ ।
ମୋର ଏ ଜୀବନେ ମାତ୍ର କିଛି ଆଶା ନାହିଁ
ଭୁଞ୍ଜେ ଅଥବା ନ ଭୁଞ୍ଜେ ରାଜଲକ୍ଷ୍ମୀ ମୁହିଁ ।

ପ୍ରାଣୀଙ୍କର ଶେଷକାଳ ପ୍ରବେଶ ହୋଇଲେ
ଅନର୍ଥକୁ ଅର୍ଥ କର ମନ୍ତ୍ରେ ସେ ଭଲେ ।
ଭୀଷ୍ମ ବୋଲେ ଦୁର୍ଯ୍ୟୋଧନ ନ କର ସନ୍ତାପ
ସଂଗ୍ରାମ କର ଖଣ୍ଡିବ ତୋର ମନୁ ତାପ ।
ଏହାଙ୍କ କଥାରେ କିଛୁ ନୋହୁ ସେ ଆମ୍ଭର
ପ୍ରଥମେ ସଂଗ୍ରାମ ଭୂମେ ଦେଖ ହେ ମୋହର ।
ଦଶଦିନ ଯାଏ ଯୁଦ୍ଧ କରିବ ମୋ ସାଧେ
ଦଶସସ୍ର ରଥୀ ନିତି ମାରିବି ମୁଁ ଯୁଦ୍ଧେ ।
ଯେଉଁଦିନ ନ ମାରିବି ଦଶସସ୍ର ରଥୀ
ସେ ଦିନ ମୁଁ ନ ଭୁଞ୍ଜିବି ଏ ସତ୍ୟ ଭାରଥି ।
ଭୀଷ୍ମଙ୍କର ଏ ପ୍ରତିଜ୍ଞା ଶୁଣି କଉରବେ
ବୋଇଲେ ଏଥର ନଷ୍ଟେଁ ମରିବେ ପାଣ୍ଡବେ ।
ଏ ଯବେ ହସ୍ତା ଉତ୍ପ୍ରୋଧ ମନୁ ଛାଡ଼ିଲେଣି
ପାଣ୍ଡବମାନଙ୍କୁ ଭବେ କେ ରଖିବ ପୁଣି ।
ଜୟ ଜୟ ଶବଦରେ କଲେ ଶଙ୍ଖଧ୍ୱନି
ଭୀଷ୍ମ ଦେବେ ଅଭିଷେକ କଲ କୁରୁମଣି ।
ଲକ୍ଷେ ରଥ ରଥାରୋହୀ ବେନିଲକ୍ଷ ହସ୍ତୀ
ଚରିଲକ୍ଷ ତୁରଙ୍ଗମ ଦ୍ୱିକୋଟି ପଦାତି ।
ଢୋଲ ଦମାଲୁ ଟମକ ବାଜେ ବଜଘୋଷ
ସଙ୍ଗତରେ ପାଟଛତ ଦେଲେ ପଞ୍ଚବଂଶ ।
ମସ୍ତକେ ମୁକୁଟ ଲଗିଅଛି ତହିଁ ମଣି
ନାନା ରତ୍ନ ଆଭରଣେ ଶୋଭା ବୀରମଣି ।
ବାହୁ ହସ୍ତରେ କଙ୍କଣ ହୃଦେ ରତ୍ନମାଳା
କଟିରେ ମେଖଳା ପାଦେ ଅଛି ଜଗଦ୍‌ବଳା ।
ଶିରେ ଖଞ୍ଜା ହୋଇଅଛି ବହୁମୂଲ୍ୟ ମାଳା
ନାନାରତ୍ନେ ବିଭୂଷିତ ଶାନ୍ତନୁର ବଳା ।
ଏହିପରି ଆଡ଼ମ୍ବରେ ମାନଚକ୍ରବର୍ତ୍ତୀ
ପ୍ରଥମ ଯୁଦ୍ଧରେ ଭୀଷ୍ମ କଲ ସେନାପତି ।
କୋଟିଏ ରଥ ଆବର ଦ୍ୱିକୋଟି ମାତଙ୍ଗ
ସାଗରେ ପଦାତି ଦେଲ କୋଟିଏ ତୁରଙ୍ଗ ।
ରତନ ହାରକୁଣ୍ଡଳ ଦେଇ କୁରୁପତି
ଏତେକ ସୈନ୍ୟ ଦ୍ରୋଣକୁ କଲ ସେନାପତି ।
ପାଞ୍ଚ ଅଇବ୍ରତ ରଥୀ ପଞ୍ଚାଲକ୍ଷ ହସ୍ତୀ
ଚରିଲକ୍ଷ ଅଶ୍ୱାରୋହୀ କ୍ଷୌଣୀଏ ପଦାତି ।
ବିବିଧ ଭୂଷଣମାନ ଘେନି କୁରୁପତି
ଛତ୍ର ଆଲଟ ମୟୂର ଝାଲର ଯେ ଛନ୍ଦି ।

ଏତେକେ ଐଶ୍ୱର୍ଯ୍ୟ ପୂଜା କଲ ଦୁର୍ଯ୍ୟୋଧନ
ଏହି ସମସ୍ତଙ୍କୁ ଘେନି ରଥୀ ହେଲ କର୍ଣ୍ଣ ।
ପାଞ୍ଚଲକ୍ଷ ରତ୍ନବର ନବଲକ୍ଷ ରଥୀ
ଦୁଇଲକ୍ଷ ବାଦ୍ୟକାର ଷଉଣୀ ପଦାତି ।
ରତନ ହାର କୁଣ୍ଡଳ ମୁକୁଟାଦି ଭୁଲେ
ଏତେକ ସୈନ୍ୟ ଉପରେ ଶଲ୍ୟ ରଥୀ ହେଲେ
ମର୍ତ୍ତେକ ରଥ ଘେନି ମରଭୂତେ ହସ୍ତୀ
ଅଶ୍ୱାରୋହୀ ସାଗରେକ ଦ୍ୱିକ୍ଷୌଣୀ ପଦାତି ।
ଆଲମ୍ବ ଯେ ଏକଲକ୍ଷ ଛତ୍ର ପାଞ୍ଚଲକ୍ଷ
ଉଦଣ୍ଡ ଲକ୍ଷେ ମୟୂରଝାଲର ଯେ ପକ୍ଷ ।
ଅନେକ ରତ୍ନ ମୁକୁଟ ଘେନି କୁରୁପତି
କୃତବର୍ମା ରଥୀଙ୍କୁ ସେ କଲ ସେନାପତି ।
ରଥୀଙ୍କ ମଧ୍ୟରେ ଏହି ହେଲେ ମହାମେରୁ
ଏହାଙ୍କ ରଥେ ସାରଥି ସଉଭାଗ୍ୟ ଗୁରୁ ।
ଏକ ଅରବୁଦ ରଥ ଦ୍ୱିଅର୍ବୁଦ ଯୋଦ୍ଧା
ତିନି ସାଗର ତୁରଙ୍ଗ ପଦାତି ଯୁ ଅଧା ।
ବହୁରତ୍ନ କୁରୁପତି ଭଣ୍ଡାରୁ ଆଣିଲ
ବାହ୍ଲିକ ରଥୀ ଶିରରେ ମୁକୁଟ ବାନ୍ଧିଲ ।
ଟମକ ଦମାଲୁ ବାଦ୍ୟ ବାଜେ ବଜଘୋଷ
ବହୁ ବାଦ୍ୟନାଦେ କମ୍ପେ ଶୂନ୍ୟ ଦଶଦିଶ ।
ଶତେ ଡାଳମ୍ବାମ୍ବରର ଶତେ ଛତ୍ର ଘେନି
ଗଜାରୋହୀ ପାଗବନ୍ଧା ଯୋଦ୍ଧା କୋଟି ତିନି ।
ସୋମଦତ୍ତ ମସ୍ତକରେ ମୁକୁଟ ବାନ୍ଧିଲ
ବହୁ ସୈନ୍ୟ ଦେଇ ତାକୁ ସେନାପତି କଲ ।
ପାଞ୍ଚଲକ୍ଷ ରତ୍ନବର ବଂଶଲକ୍ଷ ହସ୍ତୀ
ତିନିକୋଟି ଅଶ୍ୱାରୋହୀ ସାଗର ପଦାତି ।
ଶିର ଭୁଜରେ ମୁକୁଟ ବାନ୍ଧି କୁରୁନାଥ
ଏତେ କରେ ସେନାପତି ହେଲେ ଜୟଦ୍ରଥ ।
ମାଳବ ଦେଶର ରାଜା ନାମ କୃପବର୍ମା
ବଂଶଲକ୍ଷ ହସ୍ତୀପରେ ତାର ଅଶ୍ୱତ୍ଥାମା ।
ମାଧବସେନ ନାମରେ କନାଉଜ ରାଜା
ବଂଶକୋଟି ଯୋଦ୍ଧା ଘେନି କଲ ଆସି ପୂଜା ।
ବରଙ୍ଗ ଦେଶର ରାଜା ଅଟେ କୃତକେଶୀ
ଅଶୀଲକ୍ଷ ଯୋଦ୍ଧା ଘେନି ସମରେ ପ୍ରବେଶି ।
ମନୁ ଦେଶ ରାଜାନାମ ଅଟେ କୃତମାଳ
ତିନି ଅର୍ବୁଦ ଯୋଦ୍ଧାକୁ ଘେନି ଯୁଦ୍ଧେ ମିଳ ।

ଉଣ୍ଡ୍ରମ୍ବ ଦେଶ ରାଜା ଅଟେ ସାରବାହୁ
ପଞ୍ଚସ୍ତର ଲକ୍ଷ୍ୟ ସୈନ୍ୟ ଘେନ ସଜ ସେହୁ ।
ଅଳମ୍ବୁଷ ଦେଶ ରାଜା ଅଟେ ବଭ୍ରୁପାଷ
ଛାର ଭୂଲେ ଅଶ୍ୱ ରଥ ସୈନ୍ୟ ନବଲକ୍ଷ ।
ଭୁଜବଳ ଦେଶ ରାଜା ଯେ ବରଦସେନ
ସାଜଲ ସେ ବାଅସ୍ତରକୋଟି ଯୋଦ୍ଧା ସୈନ୍ୟ
ବ୍ରହ୍ମମଣ୍ଡଳ ଦେଶର ସୁବାହୁ ନୃପତି
ଅଶୀଲକ୍ଷ ସୈନ୍ୟ ଘେନ ହେଲା ସେନାପତି ।
ଗରୁଡ଼ ଦେଶର ରାଜା ଯେ ମଳୟ ରାୟେ
ସାଗରେକ ସୈନ୍ୟ ଘେନ ସମରେ ବିଜୟେ ।
ଏ ବିଧିରେ ଥିଲେ ଯହିଁ ଯେତେ ଦେଶ ରାଜା
କାର୍ଯ୍ୟହେତୁ ଦୁର୍ଯ୍ୟୋଧନ କଲା ତାଙ୍କୁ ପୂଜା ।
ସକଳ ଦେଶ ରାଜାଙ୍କୁ କରି ସନମାନ
କହଇ ମାନଗୋବିନ୍ଦ ବିନୟ ବଚନ ।
ସମସ୍ତ ରାଜାଏ କଲେ ସାଧୁ ସାଧୁ ବାଣୀ
ପଞ୍ଚକଟକରେ ତୁମ୍ଭେ ହେବୁ ନୃପମଣି ।
ଅକଣ୍ଟକେ ରାଜ୍ୟ କର ବସିଣ ସମ୍ପଦେ
ଜସ ତୋହର ସମରେ କରିବେ ପାଣ୍ଡବେ ।
ସର୍ବେ ସତ୍ୟ କଲେ ଗଙ୍ଗାଜଳ ହସ୍ତେ ଧରି
ତୋତେ ରାଜା କଲୁ ଆମ୍ଭେ ଯିବୁ ଯୁଦ୍ଧ କରି ।
ପଶ୍ଚିମେ ଉଦୟ ହେବେ ଯେବେ ଦିନକର
ଏ କଥା ନୋହିବ ଆନ ପାଷାଣର ଗାର ।
ଜଳ ତେଜ ସ୍ଥଳେ ଯେବେ ଫୁଟିବ କମଳ
କଦାପି କ୍ଷତ୍ରୀଙ୍କ ବାକ୍ୟ ନୋହିବ ବିଫଳ ।
ଯୋଦ୍ଧାମାନଙ୍କ ପ୍ରତିଜ୍ଞା ଏହିପରି ଦେଖି
କୌରବ ସୈନ୍ୟେ ମନରୁ ଭୟକୁ ଉପେକ୍ଷି ।
ବଜାଇଲେ ଜୟ ଶଙ୍ଖ ହରଷେ ସକଳେ
ଜୟଗୀତିକା ସରବେ ଗାଇଲେ ମଙ୍ଗଳେ ।
ହେ ଗୋବିନ୍ଦ ଦୟାମୟ ସନ୍ତେ ଦୟାକରି
ନାନା ରୂପେ ଏ ସଂସାରେ ତୁମ୍ଭେ ଅବତରି ।
ଦୁଷ୍ଟ ରାକ୍ଷସଙ୍କୁ ବଧି ପୃଥ୍ୱୀ ଉଦ୍ଧାରିଣ
ସଂସାର ଅଭୟ କରି ଯାଅ ନିକେତନ ।
ତୁମ୍ଭର ବିକ୍ରମର ପ୍ରଭୁ କେ ଜାଣି ପାରିବ
ଜାଣି ନ ପାରନ୍ତି ଯାହା ଦେବ ବ୍ରହ୍ମା ଶିବ ।
ହେ ପ୍ରଭୁ ତୁମ୍ଭ ଚରଣେ ସହସ୍ର ପ୍ରଣତି
ଖାରଳା ଦାସକୁ ଦିଅ ଶେଷକାଳେ ଗତି ।

## ଯୁଦ୍ଧର ଅନୁକୂଳ ପ୍ରସ୍ତାବରେ ଭୀଷ୍ମଙ୍କ ସହିତ ଜ୍ୟୋତିର୍ବିଦ୍ ବାମଦେବଙ୍କ କଥୋପକଥନ

ଏଥୁଅନନ୍ତରେ ପୁଣି ମନୁ ନରନାଥ
ଅଗସ୍ତିଙ୍କ ଶ୍ରୀଚରଣେ କରି ପ୍ରଣିପାତ ।
କରଯୋଡ଼ି ପୁଚ୍ଛାକଲେ କହ ମୁନିବର
କୌରବପତି ପୁନଶ୍ଚ କଲା କି ବିସ୍ତର ।
ଅଗସ୍ତି କହିଲେ ଶୁଣ ମନୁ ନରପତି
ଏଥୁଅନ୍ତେ ଯାହା କଲା ମାନଉନ୍ନବର୍ତ୍ତୀ ।
ସୁଦେବ ନାମରେ ଥିଲା ପଣ୍ଡିତ ଗୋଟିଏ
ତାଙ୍କୁ ଡାକି ପୂଜାକଲା ହସ୍ତିନାର ରାୟେ ।
ନୂତନ ଶୁକ୍ଳ ବସନ ତୁଳସୀର ଦଳ
ସୁବର୍ଣ୍ଣ ଥାଳୀରେ ଭରି କୁସୁମ ତଣ୍ଡୁଳ ।
କେନ ଶତ ମାଡ଼ ସ୍ୱର୍ଣ୍ଣ ଶତେକ ଶ୍ରୀଫଳ
ଏହା ସ୍ୱର୍ଣ୍ଣପାତ୍ରେ ପୁଣି କରିଲାକ ଠୁଳ ।
ସୁବର୍ଣ୍ଣ ଦୀପାବଳୀରେ ପୂରାଇଣ ଘୃତ
ନେତର ବଳତା ତହିଁ କରିଣ ସଂଯୁକ୍ତ ।
ସୁବର୍ଣ୍ଣ ପୀଢ଼ା ଉପରେ ତାହାଙ୍କୁ ବସାଇ
ବରଣ ବିଧି ଯୋଗାଡ଼ ସକଳ କରଇ ।
ସୁବର୍ଣ୍ଣ କୁମ୍ଭ ଉପରେ ନଡ଼ିଆଳ ଫଳ
ଦଧିଭାଣ୍ଡ ସ୍ୱର୍ଣ୍ଣଭାଣ୍ଡ ଦ୍ରବ୍ୟ ଅନୁକୂଳ ।
ଏ ସର୍ବେ ଯୋଗାଡ଼ ରଖି ଗ୍ରହବିଦ ପାଶ
ଯୁଦ୍ଧ ଅନୁକୂଳ ପୁଚ୍ଛେ ହସ୍ତିନାର ଈଶ ।
ଭୀଷ୍ମଦେବ ପୁଚ୍ଛାକଲେ କହ ହେ ପଣ୍ଡିତେ
ଏ ଯୁଦ୍ଧେ କ୍ଷତ୍ରିୟେ ମୁକ୍ତି ଲଭିବେ ଯେମନ୍ତେ
ଦ୍ୱାଦଶ ମାସର ମଧ୍ୟେ ମୋକ୍ଷ କେଉଁ ମାସ
କେଉଁ ମାସେ ମୃତ ହୋଇ ପ୍ରାପ୍ତ ହେବ ଯଶ
ଏମନ୍ତ ଶୁଣି କହନ୍ତି ଗ୍ରହବିଦ ରାଜ
ଶୁଣ ହେ ରାଜନ ଶାସ୍ତ୍ର ବିସ୍ତର କହିବି ।
ଶରତ ବରଷା ହେମ ଗ୍ରୀଷମ ଶିଶିର
ବସନ୍ତ ଷଡ଼ଋତୁରେ ହୁଅଇ ବତ୍ସର ।
ମାଘରୁ ଆରମ୍ଭ କରି ଛମାସ ପର୍ଯ୍ୟନ୍ତେ
ଉତ୍ତରାୟଣ ବୋଲିଣ କହନ୍ତି ସମସ୍ତେ ।
ଆଷାଢ଼ୁ ଗଣନ୍ତି ସର୍ବେ ଦକ୍ଷିଣ ଆୟନ
ଏହି ପରିଷ୍ଟେ ବର୍ଷଙ୍କ ହୁଅଇ ସମ୍ପୂର୍ଣ୍ଣ ।

ବୈଶାଖରୁ ପକ୍ଷେ ଜ୍ୟେଷ୍ଠ ଆଷାଢ଼ରୁ ପକ୍ଷେ
ଗ୍ରୀଷ୍ମ ଋତୁ ବୋଲଣ ଶାସ୍ତ୍ରଙ୍କରେ ଲେଖେ ।
ଆଷାଢ଼ ପକ୍ଷେ ଶ୍ରାବଣ ଭାଦ୍ରବରୁ ପକ୍ଷେ
ବରଷା ଋତୁ ବୋଲଣ ଜାଣିବ ପ୍ରତ୍ୟକ୍ଷେ ।
ଭାଦ୍ରରୁ ପକ୍ଷେ ଆଶ୍ୱିନ କାର୍ତ୍ତିକରୁ ପକ୍ଷେ
ଶରତ ଋତୁ କହିଲ ଶାସ୍ତ୍ରର ଉଲ୍ଲେଖେ ।
କାର୍ତ୍ତିକରୁ ମାର୍ଗଶିର ପୌଷ ଏକପକ୍ଷେ
ହିମ ଋତୁ ବୋଲି ଏହା ଜାଣିବ ପ୍ରତ୍ୟକ୍ଷେ ।
ପୌଷର ପକ୍ଷେ ମାଘ ଯେ ଫାଲଗୁନ ପକ୍ଷେ
ଶିଶିର ଋତୁ ବୋଲଣ ପଞ୍ଜିକାରେ ଲେଖେ ।
ଫାଲ୍‌ଗୁନରୁ ପକ୍ଷେ ଚୈତ୍ର ବୈଶାଖରୁ ପକ୍ଷେ
ବସନ୍ତ ଋତୁ ବୋଲଣ ଅବଦରେ ଲେଖେ ।
ମେଷ ବୃଷ ମିଥୁନ ଯେ କକଡ଼ା ଆବର
ସିଂହ କନ୍ୟା ତୁଳା ବିଛା ଧନୁ ଯେ ମକର ।
କୁମ୍ଭ ମୀନକୁ ମିଶାଇ ଏହି ବାରମାସ
ଏ ଦ୍ୱାଦଶ ମାସେ ଶ୍ରେଷ୍ଠ ଯେ ବୁଝ ନରେଶ
କାର୍ତ୍ତିକ ମାଘ ବୈଶାଖ ଏହି ତିନମାସ
ଅତ୍ୟନ୍ତ ପୁଣ୍ୟ ସମସ୍ତ ଏ ନଉ ଦିବସ ।
ଏ ତିନମାସ ମକର ମାସ ଯାକୁ କହି
ଅଶେଷ ପୁଣ୍ୟ ମାସକଯାକ ଏ ଅଟଇ ।
ଏ ମାସେ କିଞ୍ଚିତ ଯେହୁ ଧର୍ମ କାର୍ଯ୍ୟ କରି
ଅନେକ ଧର୍ମେ ଶତେକ ଜନ୍ମ ପାପୁଁ ତରି ।
ଏମନ୍ତ ମାସର ପୁଣ୍ୟ ବୁଝ ହେ ନରେଶ
ଏହା ସଙ୍ଗେ ସରି ନୁହେଁ ଅନ୍ୟ ଦୁଇମାସ ।
ମକର ଶେଷ ଦିନରେ ଯେହୁ ଧର୍ମ କରେ
ଅଶ୍ୱମେଧ ଯଜ୍ଞଫଳ ମିଳଇ ତାହାରେ ।
ମାଧବ ନାମେ ଔଷଧି ହରେ ସର୍ବ ବ୍ୟାଧି
ପୁଣ୍ୟମାସ ମଧ୍ୟେ ମାଘ ସଂସାରେ ପ୍ରସିଦ୍ଧ ।
ଯାଗ ଯଜ୍ଞ ତୀର୍ଥ ଧର୍ମ ମାଘମାସ ମଧ୍ୟେ
ଶକ୍ତି ସଙ୍କେ ଝାସ ଦେବ ଅବା ମର ଯୁଦ୍ଧେ
ମରିଲେ ବୈକୁଣ୍ଠେ ବାସ ତରିଲେ ମଙ୍ଗଳ
ଏହି ମାସେ ସମରକୁ କର ଅନୁକୂଳ ।
ସୌମଦ ପ୍ରଳୟ ଅନ୍ତେ ସୌର ନାମେ ପୃଥ୍ୱୀ
ଏକାଳେ ଭରତ ଯୁଦ୍ଧ ହୋଇଥିଲା ଏଥି
ଭାରତ ଯୁଦ୍ଧ ନାମଟି ରହିଛି କପାଇଁ
ଭାନୁ ଭରତ ସମର କଲେ ଦୁଇ ଭାଇ ।

ସେହି ଯୁଦ୍ଧ ହୋଇଥିଲା ଭାଦ୍ରମାସ ମଧ୍ୟେ
ଭାରତ ନାମ ରହିଛି ଭାଇ ଭାଇ ଯୁଦ୍ଧେ ।
ଏ ଯୁଗ ଶେଷେ ମାସକେ ପ୍ରଳୟ ହୋଇଲା
ପୁନଶ୍ଚ ଅବର୍ମା ନାମ ପୃଥିବୀ ରହିଲା ।
ସେ କାଳେ ଭାରତ ଯୁଦ୍ଧ ହେଲା ମାର୍ଗଶିର
ଯୁଝିଲେ ରାଜାଏ ଧନୁ ମାସ ଦ୍ୱାଦଶୀର
ଧନୁ ଶୁକ୍ଳ ଦ୍ୱାଦଶୀରେ ମଲେ ରାଜାଗଣ
ତହିଁ ଭାରତ ସମର ହୋଇଲା ସମ୍ପୂର୍ଣ୍ଣ ।
ପୁଣି ପ୍ରଳୟ ହୋଇଲା ନୂଆ ଯୁଗ ହେଲା
ଜନ ଜନ୍ତୁ ପୂର୍ଣ୍ଣ ହେଲା ପୃଥିବୀ ବସିଲା ।
ତାରଣୀ ବୋଲଣ ନାମ ବହିଲା ବସୁଧା
ଗୁରୁ ପ୍ରତିପଦା ଦିନ ସଜ ହେଲେ ଯୋଦ୍ଧା ।
କ୍ଷୀରାନ୍ତକ ବୋଲି ଏକ ହୋଇଲା ପ୍ରଳୟେ
କ୍ଷିତି ନାମରେ ପୃଥିବୀ ହୋଇଲା ଉଦୟେ ।
ସେ କାଳେ ହୋଇଲା ପୁଣି ଭାରତ ସଂଗ୍ରାମ
ଆଶ୍ୱିନ ମାସ ଶୁକଳ ଚତୁର୍ଥୀର ଦିନ ।
ଅନନ୍ତ ପ୍ରଳେ ହେଲାଣି ଏ ଅନନ୍ତ ବିଧି
ପ୍ରଳୟ ଅନ୍ତେ ପୃଥିବୀ ପୁନଶ୍ଚ ସମ୍ପାଦ ।
ଏହି ରୂପେ କେତେବାର ହେଲାଣି ପ୍ରଳୟ
ଊନଶତ ବାର ଯୁଦ୍ଧ ହୋଇଛି ହେ ରାୟ ।
ପ୍ରଳୟାନ୍ତେ ପୁନଃ ପୁନଃ ପୃଥିବୀ ହୁଅଇ
ପ୍ରଜାପତି ନବସୃଷ୍ଟି ତିଆଣ କରଇ ।
ଏହା ଶୁଣି ପୁଚ୍ଛା କଲେ ପୁଣି ଧୃଷ୍ଟ ଦେବ
କେଉଁପରି ହୋଇଥାଏ ଭାରତ ପ୍ରସ୍ତାବ ।
ସ୍ୱରଯୁଗେ ରମାୟଣ ଭାରତ ସଂଗ୍ରାମ
କି ହେତୁ ହୁଏ ତା କହ କେବଣ ନିୟମ ।
ସୁଦେବ ବୋଲନ୍ତି ତହୁଁ ହେ ଗାଙ୍ଗେୟ ଶୁଣ
ଫିଟାଇ କହୁଛୁ ମୁହିଁ ତହିଁର କାରଣ ।
ଏକର ପରେ ଏକକୁ ନିଃଶ୍ୱାସେକ ବୋଲି
ଷଡ଼ ନିଃଶ୍ୱାସରେ ଏକ ମୁହୂର୍ତ୍ତ କହିଲି ।
ଷଡ଼ ନିଃଶ୍ୱାସ ହୋଇଲେ କ୍ଷଣେକ ହୁଅଇ
ଷଡ଼କ୍ଷଣ ହୋନ୍ତେ ତାକୁ ଲିତା ବୋଲି କହି ।
ଷାଠିଏ ଲିତାରେ ପୁଣି ହୁଏ ଏକ ଦଣ୍ଡ
ଏ ନିୟମେ ଯୁଗେ ଯୁଗେ ଚଳଇ ବ୍ରହ୍ମାଣ୍ଡ ।
ବେନି ଦଣ୍ଡରେ ହୁଅଇ ଘଡ଼ି ଏକ ଜାଣ
ଚାରି ଘଡ଼ିରେ ପ୍ରହରେ କଳିକ ତିଆଣ ।

ଚୁର ପ୍ରହର ହୁଅନ୍ତେ ଦିନେକ ହୁଅଇ
ଚୁର ପ୍ରହରରେ ରାତ୍ର ସମାପତ ହୋଇ ।
ଏମନ୍ତ ବିଭାଗେ କାଳ ଲେଖେ ପ୍ରଜାପତି
ଏହା ଯେଣ ପ୍ରାଣୀଙ୍କର ଆୟୁ ଗଣେ ନିତି ।
ଆଠ ପ୍ରହର ବାଷଠି ଦଣ୍ଡ ଅହୋରାତ୍ର
ଆହୋରାତ୍ର ଦିବସର ଅଟେ ଅବା ଅର୍ଥ ।
ତିନଶ ଷାଠିଏ ଦିନେ ସମ୍ବତ୍ସର କହି
ଶଏଆଠ ବର୍ଷ ଆୟୁ ସୃଷ୍ଟିର କଲ ବିହି ।
ଯେତେ ଦିନ ଏକବର୍ଷେ ମାନବେ ବୋଲାଇ
ସେହି କାଳକୁ ଆକାଶେ ଏକ ଦିନ କହି ।
ଆକାଶ ପୁରୁଷେ ଏବେ ଏକବର୍ଷ ହୋଇ
ବିଶ୍ୱେଦେବା ପୁରୁଷଙ୍କ ଦିନେକ ହୁଅଇ ।
ବିଶ୍ୱେଦେବା ପୁରୁଷଙ୍କ ଏକ ବରଷରେ
କର୍ମଦେବତା ଯେ ଏକଦିନ ଭୋଗ କରେ ।
କର୍ମ ପୁରୁଷଙ୍କୁ ଯେଉଁ ଏକବର୍ଷ ଭୋଗ
ଦଇବତ ପୁରୁଷଙ୍କୁ ହୁଏ ଦିନେ ଯୋଗ ।
ଏକବର୍ଷ ଦଇବତ ପୁରୁଷଙ୍କୁ ହେଲେ
ଅରଷ୍ଟ ପୁରୁଷେ ଦିନେ ଭୋଗ ହୁଏ ଭଲେ ।
ଅରଷ୍ଟ ପୁରୁଷେ ଯେବେ ବର୍ଷେ ଭୋଗ ହୁଏ
ବିଦ୍ୟାଧର ପୁରୁଷଙ୍କୁ ଦିବସେ ବୋଲାଏ ।
ଏ ପ୍ରକାରେ ବିଦ୍ୟାଧର ପୁରୁଷଙ୍କୁ ବର୍ଷେ
ବିଶାଖା ପୁରୁଷେ ଭୋଗ ହୁଅଇ ଦିବସେ ।
ଏହିପରି ଏକଶତ ଆଠ ଦିବସରେ
ଶମନ ନାଶ ହୁଅନ୍ତି ବୁଝିବ ମନରେ ।
ଏହିରୂପେ ଶମନକୁ ଦିବସେ ହୋଇଲେ
ନାଶକରେ ଜୀବଜନ୍ତୁ ଆୟୁଷପୂରିଲେ ।
ଏହାଙ୍କର ଏକଶତ ଅଷ୍ଟମ ବରଷେ
ବରଷକେ ଭୋଗ ହୁଏ ବିହନ୍ତା ପୁରୁଷେ ।
ଏହି ଗଣନାରେ ଅଷ୍ଟୋତ୍ତର ବର୍ଷ ଶତେ
ବିନାଶ ପ୍ରାପ୍ତ ହୁଅଇ ରୁଦ୍ର ଦଇବତେ ।
ରୁଦ୍ର ଦଇବତେ ଯହୁଁ ବିନାଶ ଲଭଇ
ଦିନକର ଦେବଙ୍କର ଦିବସେ ହୁଅଇ ।
ଏହିପରି ଦିନ ମାସ ବରଷ ଶେଷର
ବିନାଶ ପ୍ରାପତ ହୁଏ ଚନ୍ଦ୍ର ଦେବଙ୍କର ।
ଚନ୍ଦ୍ର ଯହୁଁ ଏ ପ୍ରକାରେ ବିନାଶ ଲଭିଲ
ନିଶାନାଥଙ୍କର ଭୋଗ ତହୁଁ ଶେଷ ହେଲ ।
ଚନ୍ଦ୍ର ଦେବଙ୍କର ଭୋଗ କ୍ଷୟ ଗଲ ଯହୁଁ
ପିତାମହଙ୍କୁ ଦିନେକ ହୋଇଲାକ ତହୁଁ ।
ଦିନର ଶେଷ ହୁଅନ୍ତେ ଆସଇ ଯେ ରାତି
ସନ୍ଧ୍ୟାଦି ସ୍ଥା ଶେଷେ ନିଦ୍ରା ଯାନ୍ତି ପ୍ରଜାପତି ।
ଯେତେବେଳେ ପ୍ରଜାପତି ନିଦ୍ରାନ୍ତୁ ଉଠିଲେ
ଚରାଚର ଲୋକ ତହୁଁ ଆତଯାତ ହେଲେ ।
ଅସାଷ୍ଟମେ ନିଦ୍ରା ଗଲେ ଯହୁଁ ପ୍ରଜାପତି
ସମସ୍ତେ ବିନାଶ ହେଲେ ଶୂନ୍ୟ ହେଲ କ୍ଷିତି
ନବସୃଷ୍ଟିର କରତା ବିହନ୍ତା ପୁରୁଷ
କେହି ଚିନ୍ତା କରିବାକୁ ନୋହିଲେ ସାହସ ।
ଚିନ୍ତା ନ କରନ୍ତେ ନାଶଗଲ ସଇଲୋକ
ଜଳରେ ମଗ୍ନ ହୋଇଲ ଦ୍ୟୁଲୋକ ଭୂଲୋକ ।
ସ୍ୱର୍ଗଲୋକ ନାଗଲୋକ ସୁତଳ ପାତାଳ
ନାଶକଲେ ଆକାଶରେ ସବୁ ଦିଗପାଳ ।
ସ୍ଥାବର ଜଙ୍ଗମ ଜୀବେ ନ ରହିଲେ କିଛି
ଏକମାତ୍ର ଜଳଦେବ ତହିଁ ରହିଅଛି ।
ଦିବସହିଁ ଯେତେ ମଣି ରାତ୍ର ହେଲ ଯେତେ
ପ୍ରଳୟ ହୋଇଲ ପୃଥ୍ୱୀ ବ୍ରହ୍ମା ନିଦ୍ରା ଯାନ୍ତେ ।
ଧ୍ରୁବ ବୋଇଲେ ତ୍ରୈଲୋକ୍ୟ ଯେବେ ଥିଲ ନାହିଁ
ପିତାମହ ତା ଉପରେ ରହିଥିଲେ କାହିଁ ।
ସୁଦେବ କହିଲେ ଶୁଣ ଆହେ ମହାଜ୍ଞତା
କାଳ ବିଷ୍ଣୁ ପାଶେ ଯାଇ ରହନ୍ତି ବିଧାତା ।
ସ୍ୱର୍ଗତଳେ ମର୍ତ୍ତ୍ୟ ମର୍ତ୍ତ୍ୟ ତଳରେ ପାତାଳ
ପାତାଳ ତଳେ ଭୂତଳ ତଳେ ରସାତଳ
ରସାତଳ ତଳେ ଅଛି ପୁଣି ଅତଳ
ଅତଳ ତଳେ ଅଛି ମଧ୍ୟମ ବିତଳ ।
ମଧ୍ୟମ ବିତଳ ତଳେ ନଗ୍ନକାର ବାସ
ତା ତଳେ ଅଛି ନିଷ୍ଟକାଳୟ କପିଳାସ ।
ନିଷ୍ଟଳ ଭୁବନ ତଳେ ଭୁବନ ସୌନିଧି
ନାରାୟଣଙ୍କ ଆସନ ସେବାରେ ପ୍ରସିଦ୍ଧି ।
ସଉନିଧି ତଳେ ଅଛି ଅନନ୍ତ ବୈକୁଣ୍ଠ
ଅନନ୍ତ ବିଷ୍ଣୁଙ୍କର ସେ ଅଟଇ ଯେ ମଠ ।
ଅନନ୍ତ ବୈକୁଣ୍ଠ ତଳେ ନୀଳ ବଇକୁଣ୍ଠ
ନୀଳାମ୍ବର ରୂପେ ତହିଁ ପ୍ରଭୁ ଯୋଗାଭିଷ୍ଟ ।
ତାହାର ତଳକୁ ଅଛି ବୈକୁଣ୍ଠ କାଳନ୍ଦୀ
କଳ୍କି ବିଷ୍ଣୁ ରୁଦ୍ର ତାଙ୍କ ଆସନ ପୟୋଧି ।

ଆହେ ଭୀଷ୍ମ ଏଥୁ ସେହି ଅବତାର ରାମ
ହଳା କୃଷ୍ଣ ଧଳା ରାମ ଆଉ ମତ୍ସ୍ୟ କୂର୍ମ ।
ପାପୀଜନଙ୍କର କାଳ ନୃସିଂହ ବାମନ
ରେଣୁକାଗର୍ଭରୁ ପର୍ଶୁ କୌଶଲ୍ୟାଙ୍କ ରାମ ।
ବାସୁଦେବ ଦେବକୀର କୋଳେ କାଳ ରୂପେ
ବୁଦ୍ଧ କଲ୍କୀ ହୋଇଲେ ଯେ ଏସନକ ରୂପେ
ବ୍ରହ୍ମ ବଇକୁଣ୍ଠ ଅଛି କାଳନ୍ଦୀର ତଳେ
ବ୍ରହ୍ମ ନାରାୟଣ ବଜେ ତହିଁ ସର୍ବକାଳେ ।
ବ୍ରହ୍ମ ନାରାୟଣଠାରୁ ପଦ୍ମନାଡ଼ ଗୋଟି
ନାଭିରୁ ବାହାରିଅଛି ବ୍ରହ୍ମ ମଣ୍ଡଳଟି ।
ସେହି ପଦ୍ମଟି ଅମ୍ଲାନ ଅଟେ ସର୍ବକାଳେ
ଅଙ୍ଗୁଷ୍ଠ ଭାବରେ ସଦା ରହିଥାଏ ଜଳେ ।
ସେହି ପଦ୍ମେ ନିବାରିତ ରହିଥାଏ ଧାତା
ଅହୋରାତ୍ର ନ ଛାଡ଼ଇ ଶ୍ରୀକୃଷ୍ଣ ସଙ୍ଗତା ।
ନିତ୍ୟକର୍ମ ଆହାରାଦି ନିଦ୍ରା ହୁଏ ତହିଁ
ତେଣୁ ପଦ୍ମଯୋନି ବୋଲି ନାମ ଅଛି ବହି ।
ସେହି ପଦ୍ମେ ନିଦ୍ରାଗତ ହୋଇଣ ବିଧାତା
ପାଖୁଡ଼ା ଗୋଟିକ ମଧ୍ୟେ ହୋଇଣ ଅଚେତା ।
ଦିନ ହେବା ପରିଯନ୍ତେ ସୁଖେ ନିଦ୍ରାଗଲେ
ନିଦ୍ରାରୁ ଉଠିଣ ପୁଣି ଚେତନା ଲଭିଲେ ।
କାହିଁ କିଛି ନ ଦେଖିଣ ଭାବିଲେ ବିରଞ୍ଚି
ପଦ୍ମମଞ୍ଜି ମେଲିଦେଇ ପୁନର୍ବାର ସଞ୍ଚି ।
ଦେବ ଦାନବମାନଙ୍କ ଲୋକ ଆଦିହେତୁ
ସର୍ଜନା କଲେ ଛପନ କୋଟି ଜୀବଜନ୍ତୁ ।
ସ୍ୱେଦଜ ଅଣ୍ଡଜ ଜରାୟୁଜ ଉପୁଜାଇ
ପୁନର୍ବାର ପଦ୍ମଯୋନି ସୃଜନ କରଇ ।
ଅମଳାନ ସୋମବଂଶ ମୂଳ ଏହାଙ୍କର
ଭୋଜ ଅନ୍ଧକ ବଂଶ ଯେ କୌରବ କେଶରୀ ।
ବୃଷ୍ଣି ବଂଶ ଯଦୁବଂଶ ହରିହର ବଂଶ
କଶ୍ୟପ ଅଙ୍ଗିରା ଭୃଗୁ ଏ ଆଦି ବିଶେଷ ।
ଭାର୍ଗବ ପ୍ରଚଣ୍ଡ ଆଉ କାଶୀ କଉଶିକ
କହି ମହୀର ଅଠର ବଂଶେ ଯେତେ ଲୋକ
ଅସୁର ବଂଶରେ ଜାତ ହୋଇଲା ରାବଣ
ସୂର୍ଯ୍ୟବଂଶେ ଜାତ ହେଲେ ଶ୍ରୀରାମ ଲକ୍ଷ୍ମଣ ।
ତ୍ରେତୟା ଯୁଗରେ କଲା ସୀତାଙ୍କୁ ହରଣ
ସୀତା ଛଳେ ତାକୁ ବଧ କଲେ ରଘୁରାଣ ।

ରାବଣର ସମ୍ପଦାୟୁ ବଂଶ ଶେଷ କରି
ପୁଣି ବୈକୁଣ୍ଠ ଭୁବନେ ଗଲେ ଚନ୍ଦ୍ରଧାରୀ ।
ହେ ଗାଙ୍ଗେୟ ତ୍ରେତା ଅନ୍ତେ ହୋଇଲା ଦ୍ୱାପର
ରଙ୍ଗାବତାରେ ଗୋପରେ କରିଲେ ବିହାର
କୌରବ ପାଣ୍ଡବ ଭୂମେ ହୋଇବାରୁ ବେନି
ରାମ ଆଉ ଦୁର୍ଯ୍ୟୋଧନ କୃଷ୍ଣ ଫାଲ୍‌ଗୁନ ।
ସଂଗ୍ରାମ ନିମନ୍ତେ ଭୂମେ ହେଲେ ଅନ୍ୟୋଅନ
ଭୂମି ଭାରାଭର କବା ସମ୍ଭବ ଅବନୀ ।
ଏମନ୍ତ ରୂପରେ ପୃଥ୍ୱୀ ହୁଅଇ ସୃଜନ
ଅନୁକୂଳ ପୁଛିଲ ଯା ତାହା ଏବେ ଶୁଣ ।
ବୁଧବାର ହସ୍ତ ଶୁକ୍ଳ ତ୍ରୟୋଦଶୀ ତିଥି
ଦ୍ୱିଜା ନାମେ ନକ୍ଷତ୍ର ସେ ଦିନର ପାହାନ୍ତ ।
ତୈତିଳ ନାମେ କରଣ ଶିବନାମେ ଯୋଗ
ଦିଗ୍ଧ ସନ୍ଧାନ୍ତ ପଚାଶ ଦିନ ଯାଇ ଭୋଗ ।
କାତ୍ୟାୟିନୀ ବୁଲୁଥାନ୍ତି ମହାଲକ୍ଷ୍ମୀ ମୂର୍ତ୍ତି
ମଗର ବାହନେ ଯୋଗିନୀ ଦକ୍ଷିଣରେ ସ୍ଥିତି ।
ବାର ନକ୍ଷତ୍ର ଆଦିର ତିଥି ଯେ କରଣ
ସୁଦେବ ପଣ୍ଡିତ ଏତେ କହିଲେ ଲକ୍ଷଣ ।
ଯୋଗିନୀଚନ୍ଦ୍ର ସୁଦେବ ଜ୍ୟୋତିଷ ପାଢ଼ିଲେ
ସେଥିରୁ ସମସ୍ତ କଥା ବୁଝାଇ କହିଲେ ।
ସମସ୍ତ ଇତରସ୍ତ ପୂର୍ବଦିଗେ ପଡ଼ିଲଣି
ହଂସାରୋହୀ ଚଳୁଛନ୍ତି ଦେବୀ ବ୍ରହ୍ମାୟଣୀ ।
ଦ୍ୱିତୀୟା ଦଶମୀରେ ଯେ ଉତ୍ତରରେ ଭାଗେ
ମାହେଶ୍ୱରୀ ଚଳନ୍ତି ଯେ ଶୁଭକାଳ ଯୋଗେ
ଏକାଦଶୀ ତୃତୀୟାରେ ଅଗ୍ନିକୋଣେ ରହେ
କୌମାରୀ ମୂରତି ତହୁଁ ଶୁକର ଆରୋହେ ।
ଚତୁର୍ଥୀ ଯେ ଦ୍ୱାଦଶୀରେ ବାରାହୀ ଦକ୍ଷିଣେ
ମହାମାୟୀ ଚଳନ୍ତି ଯେ ମୟୂର ବାହନେ ।
ତ୍ରୟୋଦଶୀ ପଞ୍ଚମୀରେ ଦକ୍ଷିଣେ ରହନ୍ତି
ବାରାହୀ ନାମକୁ ସେହି ଧାରଣ କରନ୍ତି ।
ଚତୁର୍ଦ୍ଦଶୀ ଷଷ୍ଠୀରେ ଯେ ପଶ୍ଚିମ ଦିଗରେ
ମାତଙ୍ଗ ବାହନେ ବସି ଇନ୍ଦ୍ରାଣୀ ନାମରେ
ସପ୍ତମୀ ପୂର୍ଣ୍ଣିମୀ ଦିନେ ବାୟୁଦିଗେ ସ୍ଥିତି
ଚାମୁଣ୍ଡା ନାମକୁ ପୁଣି ଧାରଣ କରନ୍ତି ।
ମଗର ବାହନେ ପୁଣି କରନ୍ତି ଗମନ
ନାନାରୂପ ପ୍ରକାଶନ୍ତି କର୍ମକୁ ଦେଖିଣ ।

ଏହି ପ୍ରକାରେ ହୁଅଇ ଷୋଳଘଡ଼ି ବେଳା
ଚଉଦ ଦଣ୍ଡେ ଭ୍ରମଇ ସେ ସର୍ବମଙ୍ଗଳା ।
ପ୍ରହରକ ବେଳମଧ୍ୟେ ମହୀରେ ଭ୍ରମଇ
ଅଷ୍ଟ ପ୍ରହରେ ଅଢ଼ାଇ ପାଦମାନ ଯାଇ ।
ଦୈବେ ଯୋଗିନୀର ମୁଖେ ପଡ଼େ ଯେଉଁ ଜନ
ଲକ୍ଷ୍ମୀ ପରିତ୍ୟାଗ କରେ ହୁଏ ଧନହୀନ ।
ପୁରୋହିତ ତହିଁ ଯୋଗିନୀଚକ୍ରକୁ ପାତିଲେ
ବାରଚକ୍ରର ବ୍ୟବସ୍ଥା ବୁଝାଇ କହିଲେ ।
ଶନି ସୋମବାରେ ଯୋଗିନୀ ପୂର୍ବେ ଉଦେ ହୋଇ
କୁଜ ଶନିବାରେ ଉତ୍ତର ଦିଗେ ଚଳଇ ।
ରବି ଶୁକ୍ରବାରେ ତାର ପଶ୍ଚିମରେ ଗତି
ବୁଧ ବୃହସ୍ପତି ବାରେ ଦକ୍ଷିଣେ ରହନ୍ତି ।
ଯେଉଁଦିନ ଯେଉଁ ବାର ଅନୁକୂଳ ହୋଇ
ପ୍ରଥମ ଗ୍ରହଦଣ୍ଡାଧିପତି ସେହି ରବି ।
ରବି ବୁଧ ଗୁରୁ ଶୁକ୍ର ଶଶୀ କୁଜ ଶନି
ଦୁଇ ଦୁଇ ଘଡ଼ି ଯଥାକ୍ରମେ ପୁଣି ଘେନି ।
ପୁରୋହିତ ବୋଇଲେ ମନେ ରଖ ତୁ ରାଜନ
ଗୁରୁ ବେଳ ବେଳ ଘଡ଼ି କର ତୁ ଗମନ ।
ପଣ୍ଡିତଙ୍କ ଠାରୁ ଶୁଣି ରାଜା ଯୋଦ୍ଧାମାନେ
ସଭା ମଣ୍ଡଳାଇ ଗଲେ ସେ ଯାହା ଭୁବନେ ।
ଜୟ ଜୟ ଜଗତର ଜନିତା ବଇଞ୍ଚି
ଗାୟତ୍ରୀ ମନ୍ତ୍ରକୁ ଦେବ ତୁହି ଅଛୁ ସଞ୍ଚି ।
ଚନ୍ଦ୍ର ଦିବାକର ଆଦି ସବୁରି ତୁ ମୂଳ
ତୁ କରତା ନାଥ ଯିନା ଚାଉନ୍ତା ସକଳ ।
ପୃଥ୍ୱୀ ଆପ ତେଜ ବାୟୁ ଆଦର ଆକାଶ
ଏ ପଞ୍ଚଭୂତରେ ପ୍ରଭୁ ତୁହି ମହାରସ ।
ଦେବଙ୍କର ମୂଳମନ୍ତ୍ର ତୁହି ଯେ କେବଳ
ଧାତୁବିଦ୍ୟା ଚଉବିଂଶ ଛନ୍ଦରେ ତୁ ମୂଳ ।
ଅଭୟ ପୁରୁଷ ତୁହି ସୁଖେ କାଳ ବଞ୍ଚୁ
ଅବଦ୍ଧରେ ସବୁକାର୍ଯ୍ୟ ତୁହି ଦେବ ସଞ୍ଚୁ ।
ଭବସାଗର ଶରଣ ରକ୍ଷଣଟି ତୁହି
ତୋ ବିନୁ ସୋଦର ନାଥ ଅନ୍ୟ କେହି ନାହିଁ
ତୁହି ସୃଜଅଛୁ କାଷ୍ଠ ପାଷାଣ ମୃତ୍ତିକା
ଲୌହ ତାମ୍ର ପିତ୍ତଳାଦି ସୁବର୍ଣ୍ଣର ରେଖା ।
ଯେତେ ପଦାର୍ଥ ଗଠନ କରଇ ବିନାଣି
ତୁ ଦେବ ଏହା ସଞ୍ଚିଛୁ ସର୍ବେ ଛନ୍ତି ଜାଣି ।

ନରହର ଇନ୍ଦ୍ର ଚନ୍ଦ୍ର ତପନ ତାପନ
ଦିଗପାଳମାନଙ୍କୁ ତୁ କରୁ ଜ୍ଞାନଦାନ ।
ନାନା ମୂରତି ହୋଇବେ ଯେବେ ଦିଗପାଳେ
ସମସ୍ତେ ପୂଜା ପାଆନ୍ତି ତୋର ମନ୍ତ୍ରବଳେ ।
ତୋ ମନ୍ତ୍ରବଳରେ ସର୍ବେ ଲଭନ୍ତି ମୁକତି
ନ କହି ତୋ ମନ୍ତ୍ର ତୋତେ ପୂଜି ନ ପାରନ୍ତି
ହେ ସ୍ୱାମୀ ତୋହର ମୂର୍ତ୍ତି ପାଷାଣରେ କଲେ
କଏ ଜୀବନ୍ୟାସ ଦେବ କେଉଁ ମନ୍ତ୍ରବଳେ ।
ଏହା ନ ଜାଣି ସଂସାରେ ବଣା ହେଉଥାନ୍ତି ।
ଅପୂଜ୍ୟ ବୋଲଣ ତୋତେ ମୂର୍ଖମୁଖେ କହନ୍ତି ।
ତୁମ୍ଭେ ଜଗତର ପିତା ସାବିତ୍ରୀରମଣ
ଚତୁର୍ମୁଖେ ଚତୁର୍ବେଦ କର ଉଚ୍ଚାରଣ ।
ଅଥର୍ବ ବେଦକୁ ପୂର୍ବ ବଦନରେ ଭାଷୁ
ପଶ୍ଚିମ ବଦନେ ଋକବେଦ ପରକାଶୁ ।
ଦକ୍ଷିଣ ବଦନେ ତୁହି ପଢ଼ୁ ଯଜୁର୍ବେଦ
ଉତ୍ତର ମୁଖରେ ଘୋଷୁ ସାମବ୍ରହ୍ମବେଦ ।
ଏହି ଚତୁର୍ବେଦ ନିତ୍ୟ କରୁ ତୁ ଉଚ୍ଚାର
ଏଣୁ ନାମ ବହିଅଛୁ ତୁହି ବେଦବର ।
ଏହି ଚତୁର୍ବେଦରୁ ତୁ ନାମମନ୍ତ୍ର କଲୁ
ଜପ ମନ୍ତ୍ର ହେତୁ ପଞ୍ଚମୁଦ୍ରାକୁ ସୃଷ୍ଟିଲୁ ।
ଜୟ ଜୟ ଯୋଗେଶ୍ୱର ପରମ ଦୟାଳୁ
ଛପନ କୋଟି ଜୀବଙ୍କୁ କର ପ୍ରତିପାଳୁ ।
ଜୟ ଜୟ ପରମେଷ୍ଠି ଜଗତ ପିତର
ଜୟ ତୁ ଜୟ ପରମବ୍ରହ୍ମ ନିରାକାର ।
ଜୟ ତୁ ଜୟ ତୁ ଦେବ ଶୁଭଫଳ ବାଞ୍ଛା
ଭକ୍ତେ ଯାହା କରୁ ପ୍ରଭୁ ତୋର ସର୍ବଇଚ୍ଛା ।
ସ୍ତମ୍ଭନ ମୋହନ ବଶ୍ୟ ଉଚାଟନ ବିଦ୍ୟା
ଧରଣ ଧାରଣ ସର୍ବମନ୍ତ୍ର ତୋର ଦିକ୍ଷା ।
ବେନସହସ୍ର ଜିହ୍ୱା ଅଟେ ଅନନ୍ତ ନାଗର
ଅନ୍ତକର ନ ପାଇଲେ ମହିମା ତୋହର ।
ଚରାଚର ବର୍ତ୍ତିଯାଏ ଯେ ଜାଗ୍ରତ ଥିଲେ
ପୃଥ୍ୱୀ ପ୍ରଳୟ ହୁଅଇ ଯେହୁ ନିଦ୍ରାଗଲେ ।
ମାନ ଉଦ୍ଧାରଣ ତୁହି ଜଗତର ପିତା
ମାନବେ ଜନ୍ମି ମୁହିଁ କି କହିବି ତୋ କଥା ।
ତୋହର ଚରଣେ ନାଥ ମୋର ଶିର ଲଗ୍ନ
ଏ ପାପ ପ୍ରକୃତି ମୋର କାହିଁରେ ନ ଭଗ୍ନ ।

ନ କଲି ତୋ ଯେତେ ମନ୍ତ୍ର ନ ଗଲଇଁ ତୀର୍ଥ
ନ ପଢିଲି ଯାଗସଙ୍କେ ନ କଲଇଁ ବ୍ରତ ।
ନ ପଢ଼ିଲି ଅକ୍ଷର ମୁଁ ନ ଜାଣିଲି କଛୁ
ଅନଭ୍ୟାସରେ ପ୍ରସନ୍ନ ମୋତେ ହୁଅଁ ଲାକ୍ଷି ।
ସେହି ଦେଖି ବଢେକରି ମୋର ହୃଦଗତେ
ଏହି ପରମ ଗତିର ବାଟ ଦେଲେ ମୋତେ ।
ତୁମ୍ଭର ଚରଣେ ମୋର ରହୁ ମନ ଧ୍ୟାନ
ଶୂଦ୍ରମୁନି ଶାରଳା ଯେ ଭାବେ ଗଜବଦନ ।



## କୌରବ ପାଣ୍ଡବଙ୍କର ଯୁଦ୍ଧସଜ୍ଜା

ଏଥୁଅନ୍ତେ ବୈବସ୍ୱତ ମନୁ ନରପତି
ଅଗସ୍ତି ମୁନିଙ୍କ ପାଦେ କରିଣ ପ୍ରଣତି ।
ପୁଚ୍ଛାକଲେ କହ ମୁନି କୌରବ ଈଶ୍ୱର
ଜ୍ୟୋତିର୍ବିଦଠାରୁ ଶୁଣି କଲା କ ବସ୍ତର ।
ସେହି କଥା ଶୁଣିବାକୁ ବଳଛି ସରାଗ
ଦୟାକରି ମୋର ପାଶେ କହ ମହାଭାଗ ।
ଅଗସ୍ତି କହିଲେ ଶୁଣ ମନୁ ନରଈଶ
କୌରବେ ପଣ୍ଡିତଠାରୁ ପାଆନ୍ତେ ସନ୍ଦେଶ ।
ଦଧିବାମନ ସ୍ମରି ଦଧି ଅନୁକୂଳେ
ଉଠିଲେ କୌରବେ ମନେ ହରଷ ମଙ୍ଗଳେ ।
ଚଳିଗଲେ ସବୁଘର ସେ ଯାହା ଭୁବନେ
ନିତ୍ୟକର୍ମ ସାରି ଭୁଞ୍ଜି ଆସିଲେ ତକ୍ଷଣେ ।
ରଥକୁ ମଣ୍ଡନ କଲେ ହୋଇଣ ଉନ୍ମତ୍ତ
ସଜାଇଲେ ଅଶ୍ୱ ଗଜ ରଥ ଅପ୍ରମିତ ।
ଧନୁ ଉତ୍ତୋଳନ କରି ମାଜନ୍ତି ସେ ଗୁଣ
ତୀକ୍ଷ୍ଣମୁନା ଶର ଆଣି ପୂର୍ଣ୍ଣ କଲେ ତୂଣ ।
ବଜାଅନ୍ତି ଭେରୀତୂରୀ ବାଦ୍ୟାଦି କାହାଳି
ସେ ବାଦ୍ୟ ନାଦରେ ପୃଥ୍ୱୀ ପଡ଼ିଲା ଉଛୁଳି ।
ଛତ୍ର ଆଲଟ ଚାମର ବହୁ ଧରାଇଲେ
ଜୟ ପତାକା ନାନାଦି ରଙ୍ଗେ ଉଡ଼ାଇଲେ ।
ସମସ୍ତ ଯୋଦ୍ଧାଙ୍କ ଘରେ ହୋଇଲା ଉତ୍ସବ
ନେତ ପତାଙ୍ଗ ତୋରଣ ବନ୍ଧିତ ସମ୍ଭବ ।
ସ୍ୱର୍ଣ୍ଣ କଳଶ ଉପରେ ନେତର ଓଢ଼ଣି
ସମସ୍ତେ ଉତ୍ସବ କଲେ ଆନନ୍ଦରେ ପୁଣି ।
ରଥଧ୍ୱଜେ ଉଡ଼େ ଦଧିମଙ୍ଗଳର ବାନା
ଅପରାଜିତା ନୃସିଂହମନ୍ତ୍ର ଅଧ୍ୟାପନା ।
ଶ୍ରୀରାମ ସହସ୍ର ନାମ ଦେବତା ଅର୍ଚ୍ଚନ
ଏରୂପେ ମାତିଲେ ହର୍ଷେ କଉରବ ସୈନ୍ୟ ।
ହେ ରଜା ପାଣ୍ଡବଙ୍କର ଗୁପ୍ତଚର ଥିଲେ
ଅନୁକୂଳ କଥା ଶୁଣି ଶୀଘ୍ର ଚଳିଗଲେ ।
ବାରୁଣାବନ୍ତେ ଯାଇଣ ପାଣ୍ଡବ ଅଗ୍ରତେ
ଅନୁକୂଳ କଥା ଫେଡ଼ି କହିଲେ ଭରତେ ।
ସ୍ୱାମୀ କୌରବ ସଭାରେ କହିଲେ ଏମନ୍ତ
ପ୍ରଥମରେ ସେନାପତି ହେଲେ ଗଙ୍ଗାସୁତ ।
ଦ୍ରୋଣ କୃପ ଭୂରିଶ୍ରବା କର୍ଣ୍ଣ ଜୟଦ୍ରଥ
କୃପଙ୍କୁ ମିଶାଇ ଏହି ରଥୀ ହେଲେ ସାତ ।
ସୋମଦତ୍ତ ବାହ୍ଲିକ ଯେ ମାଗଧ କେଶରୀ
ବହୁ ସେନାପତି ଅଟେ ହୋଇଲେ ତାଙ୍କର ।
ଏମାନଙ୍କ ସହିତରେ ଦେଇ ବହୁ ସୈନ୍ୟ
ସବୁ ଯୋଦ୍ଧାଙ୍କୁ ମୁକୁଟ ଦେଲା ଦୁର୍ଯ୍ୟୋଧନ ।
ଅଶ୍ୱତ୍ଥାମାକୁ ମୁକୁଟ ନ ଦେଲା ନୃପତି
ଏହା ଛଡ଼ା ଆଉ ଦେବ ସବେ ପାଇଛନ୍ତି ।
ଯୁଧିଷ୍ଠି ବୋଇଲେ ବଡ଼ କ୍ଷତ୍ରୀ ଅଟେ ସେହି
ଅଶ୍ୱତ୍ଥାମାକୁ ମୁକୁଟ ନ ଦେଲା କପାଇଁ ।
ସହଦେବଙ୍କୁ ଯୁଧିଷ୍ଠି ଏହା ପଚାରିଲେ
ଅଶ୍ୱତ୍ଥାମେ ସେନାପତି କପାଇଁ ନ କଲେ ।
ମନ୍ତ୍ରୀ ବୋଲେ ଅଶ୍ୱତ୍ଥାମା ମହାକର୍ମ କଲା
କ୍ଷତ୍ରୀ ହୋଇ ଚିରଜୀବୀ ବର ସେ ମାଗିଲା ।
ମାନଗୋବିନ୍ଦ ନୃପତି ଅଟେ ମହାବଳ
ଶୂର ବୀର ପଣ୍ଡିତ ଏ ଅଟଇ ସବାଙ୍କ ।
ମୃତ୍ୟୁକୁ କୁଣ୍ଠିତ ଯେଣୁ ହେଲା ମହାଯୋଧି
ଅଭେଦ ବଜ୍ରର ସ୍ୱର ନାହିଁ ସେହୁ ସାଧି ।
ଯେବେ ମୁକୁଟ ଦ୍ରୋଣୀର ମାଥେ ବାନ୍ଧିଥାନ୍ତା
ମହା ସଙ୍କଟ ଆମ୍ଭଙ୍କୁ ଜାଣ ପଡ଼ିଥାନ୍ତା ।
ମରଣକୁ ନସତ ସେ ମହାଯୋଦ୍ଧା ହେଲା
ତେଣୁ କୁରୁପତି ତାକୁ ମୁକୁଟ ନ ଦେଲା ।
ସହଦେବର ବଚନ ଶୁଣି ଜନାର୍ଦ୍ଦନ
ଜୟଶଙ୍ଖ ବଜାଇଲେ ପ୍ରଭୁ ଘନ ଘନ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ଧର୍ମରାୟ
ପଥ କଣ୍ଟକ ତୁମ୍ଭର ହୋଇଲା ନଷ୍ଟପ୍ରାୟ ।
ଚିରଜୀବୀ ଅଶ୍ୱତ୍ଥାମା ଅଟେ ମହାଯୋଧି
ତା ଶରୀରେ ବଜ୍ର ଅସ୍ତ୍ର କେବେହେଁ ନ ଭେଦି ।

ଆମ୍ଭର ପକ୍ଷରେ ତେବେ ସୁଯୋଗ ଘଟିଛି
ଦୁର୍ଯ୍ୟୋଧନ ଦ୍ରୋଣିକୁ ଯା ବରିଣ ନ ଅଛି ।
ସେନାପତି ପଦେ ଯେବେ ତାହାକୁ ବରନ୍ତା
ଯୁଦ୍ଧେ ଜିଣିବାକୁ ତାକୁ କଠୋର ହୁଅନ୍ତା ।
ଯୁଧିଷ୍ଠିରଙ୍କୁ ଏହା କହି ଜଗତ ବିହାରୀ
ଆଜ୍ଞା ଦେଲେ ଯୁଦ୍ଧସଜ୍ଜା କର ଶୀଘ୍ରକରି ।
ମାର୍ଗଶିର ମାସ ଶୁକ୍ଳପକ୍ଷ ତ୍ରୟୋଦଶୀ
ପାଣ୍ଡବେ ବାରୁଣା ଗୁଡ଼ି ଜୟନ୍ତା ପ୍ରବେଶି ।
ବସ୍ତୁମାସ ଶୁକ୍ଳପକ୍ଷ ବୁଧବାର ଦିନ
ଅଶ୍ୱିନୀ ନକ୍ଷତ୍ରଗତେ ଭରଣୀ ତଳନ ।
ଶୁକ୍ଳପକ୍ଷ ବୁଧବାରେ ଭରଣୀ ପଡ଼ିଲେ
ଶ୍ରେଷ୍ଠଯୋଗ କାର୍ଯ୍ୟସିଦ୍ଧି ହୁଅଇ ସେ ଭଲେ
ତୈତିଳ ନାମେ କରଣ ସିଦ୍ଧି ନାମେ ଯୋଗ
ବସ୍ତୁ ସଙ୍କରାନ୍ତିର ପନ୍ଦର ଦିନ ଭୋଗ ।
ଏଥିବାର ନକ୍ଷତ୍ରାଦି ସମସ୍ତ ବିଚାର
ବିଜୟ କଲେ ପାଣ୍ଡବେ ଜୟନ୍ତା ନଗର ।
ଯମୁନା ନଦୀ ବହଇ ଉତ୍ତରବାହିନୀ
ବିଜେ ଧର୍ମସୁତ ଶୁଭ ଅନୁକୂଳ ଘେନି ।
ବିରାଟ ଦ୍ରୁପଦେଶ୍ୱର ଏ ବେନି ରାଜନ
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନନ ଦ୍ରୁପଦ ନନ୍ଦନ ।
ବିରାଟନନ୍ଦନ ଶଙ୍ଖ ଶ୍ୱେତ ସେ ଉତ୍ତର
ପର୍ଶୁରାମ ତୁଲ୍ୟ ହୁଏ ବୀର ଧନୁର୍ଦ୍ଧର ।
ଅର୍ଜ୍ଜୁନ କୁମାର ଯେହୁ ଅଟେ ଅଭିମନ୍ୟୁ
ବାକ୍ରତ ନନ୍ଦନ ଏହି ଷଡ଼ଗୋଟି ସୂନୁ ।
ଏମାନଙ୍କୁ ସଙ୍ଗେ ଘେନି ପଣ୍ଡୁଙ୍କ ନନ୍ଦନ
ଯୁଦ୍ଧର ନିମନ୍ତେ ଶୀଘ୍ର କଲେକ ଗମନ ।
କୁଣ୍ଡଳ ମୁକୁଟ ହରି ଘେନିଣ ଶ୍ରୀହସ୍ତେ
ଆପଣେ ବାନ୍ଧିଲେ ନେଇ ଅର୍ଜ୍ଜୁନର ମାଥେ ।
ସ୍ୱର୍ଗେ ପାର୍ଥ ନିବାତଙ୍କୁ ବଧିଲେ ଯେ କାଳେ
ଇନ୍ଦ୍ର ଜୟମାଳା ପାର୍ଥ ଗଳେ ଲମ୍ବାଇଲେ ।
ସେ ଜୟମାଳାକୁ ପୁଣି ପାର୍ଥ ଗଳେ ଦେଇ
ନାନା ବେଶରେ ମଣ୍ଡନ କଲେ ଯଦୁସାଇଁ ।
ପିନାକ ଧନୁ ଅକ୍ଷୟ ତୂଣ ଏହି ବେନି
ସନ୍ତୋଷରେ ଦେଇଥିଲେ ଶଙ୍କର ଭବାନୀ ।
ପୁଣି ପାଶୁପତ ଶର ଦେଇଥିଲେ କାଶୀ
ତ୍ରିଯବଣ ଶରରେ ଥିଲେ ଅନ୍ଧକ ବିନାଶି ।
ମନଭେଦୀ ଶର ଦେଇଥିଲେ ସ୍ୱାହାପତି
ଏ ସବୁ ଶର ଘେନିଲେ ପାର୍ଥ ମହାମତି ।
ବ୍ରହ୍ମ ବଜ୍ର ଶୂଳ ଆଉ ଅମୋଘ ଶକତି
ବାରୁଣା ଶକତି ସୂର୍ଯ୍ୟାବର୍ତ୍ତ ଯେ ଶକତି ।
ବୈଷ୍ଣବୀ ଶର ଗିରିଜା ତାଙ୍କ ହସ୍ତେ ଦେଲେ
ସେ ଶରେ ଅର୍ଜ୍ଜୁନ ବହୁ ଦୈତ୍ୟ ବିନାଶିଲେ ।
ସୂର୍ଯ୍ୟାବର୍ତ୍ତ ଶର ଆଉ ଚକ୍ର ସୁଦର୍ଶନ
ଶ୍ରୀଭୁଜେ ରଥେ ଥୋଇଲେ ନେଇ ନାରାୟଣ
ଏହିପରି ବୀରବେଶ ହୋଇଲେ ଫାଲ୍‌ଗୁନୀ
ହରି ନିଜ ଅଳଙ୍କାରେ ସଜ ହେଲେ ପୁଣି ।
କୋଟିଏ ବ୍ରହ୍ମାଣ୍ଡେ ଯେଉଁ କୃଷ୍ଣ ଶିରୋମଣି
ନନ୍ଦଘୋଷକୁ ମଣ୍ଡିଲେ ନାନାରତ୍ନ ଘେନି ।
କଣ୍ଠେ ଝଲକନ୍ତେ ମାଣିକ୍ୟକୁ ଖଞ୍ଜି
ତା ମଧ୍ୟେ ମୁକ୍ତା ଖଞ୍ଜିଲେ ଥୋଇ ପୁଞ୍ଜି ପୁଞ୍ଜି
ଯେଉଁ ରତ୍ନ ଥିଲେ ରଥ ନ ହୁଅଇ ଭସ
ସେ ରତ୍ନମାନ ଖଞ୍ଜନ୍ତେ ବଢ଼ିଗଲା ତୋଷ ।
ଲୋହିତ ପୁଷ୍ପ ସଦୃଶ ଦିଶେ ପାଟସୁତା
ତହିଁ ଯେ ଗୁନ୍ଥିଲେ ମାଳ ମାଳ ଯେ ମୁକୁତା ।
ମୁକ୍ତା ପୁଞ୍ଜି ପୁଞ୍ଜି ଗୋହଳାର ମଧ୍ୟେ ହୀର
ତହିଁମଧ୍ୟେ ଲମ୍ବାଇଲେ ମାଣିକ୍ୟର ଝର ।
ନିର୍ମଳ ଆକାଶେ ଯେସନେ ନକ୍ଷତ୍ର ପ୍ରକାଶେ
ପ୍ରଭାତ କାଳରେ ଯେସନେ ବାଳଅର୍କ ଦିଶେ ।
କହନ୍ତେ ନ ସରେ ନନ୍ଦଘୋଷର ମହିମା
ଭାର ନିବାରଣ ପାଇଁ ନିର୍ମିଲା ବ୍ରହ୍ମା ।
ପ୍ରଳୟ କାଳରେ ମଧ୍ୟ ସେହି ନ ଫୁଟଇ
ଅସ୍ତ୍ର ଆଘାତରେ ସୁଦ୍ଧା କେବେ ନ ଲୁଟଇ ।
ଅନଳରେ ସେହି ରଥ ନ ହୁଏ ଦହ୍ୟ
ସମର କାଳେ ନ ଲାଗେ ଶକତିର ତେଜ ।
ମହାଭାରତସମର ସରେ ଯେତେବେଳେ
ପ୍ରଜାପତି ତାହା ନେଇ ସ୍ଥାପଇ ପାତାଳେ ।
ମନୁ ଏକ ଅନ୍ତେ ପୁଣି ହୁଅଇ ଭାରତ
ତହିଁ ଆସି ଏହି ରଥ ହୁଏ ଉପଗତ ।
ବାହୁବାର ବ୍ରହ୍ମାଣ୍ଡର ପ୍ରଳୟ ହୋଇଛି
ଭାର ନିବାରଣ ରଥ ସେହିରୂପେ ଅଛି ।
ଦେବଦତ୍ତ ଶଙ୍ଖ ଆଉ ନୀଳଚକ୍ର ବାଣ
ଅମୋଘ ଶକତି ମନଭେଦୀ ଶର ପୁଣ ।

ଏହି ଶସ୍ତ୍ରମାନ କେବେ ନଷ୍ଟ ନ ହୁଅଇ
ଏହି ଶରମାନ ଏହି ରଥେ ଯାଏ ବହି ।
ଅଗସ୍ତି କହିଲେ ତୁମ୍ଭେ ଶୁଣ ହେ ରାଜନ
ଏଥିଅନନ୍ତରେ ଯାହା ହୋଇଲା ଘଟନ ।
ହନୁମାନକୁ ଗୋବିନ୍ଦ ଆଜ୍ଞା ଦେଲେ ତହିଁ
ଭାରତ ଯୁଦ୍ଧ ଦେଖିବୁ ଧ୍ୱଜେ ବସ ଯାଇ ।
ତୁହି ଯାଇ ବଜେକର ନନ୍ଦିଘୋଷ ଧ୍ୱଜେ
ଯୁଦ୍ଧ ଦେଖୁଥିବୁ ତୁହି ରହିଣ ଅବାଧେ ।
ନାରାୟଣଙ୍କ ବଚନେ ହରଷରେ ପାବନ
ଜନ୍ମ ହୋଇଛନ୍ତି ଏହି ନରଦେହ ଘେନ ।
କୁଟୁମ୍ବରେ ପଶି ଏହି ବାହ୍ମନ ହୋଇଲେ
ରାମାବତାରର କଥା ମନୁ ପାସୋରିଲେ ।
ଅଗସ୍ତି ବୋଇଲେ ଶୁଣ ବୈବସ୍ୱତ ମନୁ
ପୂର୍ବକଥାମାନ ମନେ ବିଚାରଇ ହନୁ ।
ତ୍ରେତାଯୁଗେ ଯୁଦ୍ଧ ହେଲା ରାମ ରାବଣର
ସେହିକଥାମାନ ଅଛି ମନରେ ମୋହର ।
ମହାସମର ହୋଇଲା ରାମ ଅବତାରେ
ସେତୁବନ୍ଧ ବନ୍ଧା ହେଲା ଅଗାଧ ସାଗରେ ।
ବତିଶ ଯୂଣ ଓସାର ଉତ୍ସର୍ଗ ଯେ ବାର
ଏମନ୍ତ ବନ୍ଧ ବାନ୍ଧିଲେ ତହିଁ ରଘୁବୀର ।
ଶତେ ଚଉଦଶ ଯୋଜନ ଅଟେ ଲଙ୍କାଗଡ଼
ଶିଳାରେ ବନ୍ଧ ବାନ୍ଧିଲେ ଭଲ୍ଲୁକ ମାଙ୍କଡ଼ ।
ଭାଲୁ ମାଙ୍କଡ଼ ସେ ବନ୍ଧ ଚଢ଼ିଲେ ସଭିହେଁ
ସ୍ଥିରଭାବେ ରହିଥିଲା ସେ ବନ୍ଧ ତେବେହେଁ
ମୁଁ ପୁଣି ସେ ବନ୍ଧପରେ ଯହୁଁ ଗଲି ଉଠି
ତେଣେ ବନ୍ଧ ପଡୁଥିଲା ମୋ ଭାରେ ଲେଉଟି ।
ପୂର୍ବଆଡ଼ୁ ଟଳୁଥିଲା ପଶ୍ଚିମ ଆଡକୁ
ଶ୍ରୀରାମଚନ୍ଦ୍ର ଚାହିଁଲେ ମୋହର ମୁଖକୁ ।
ବୋଇଲେ ତୋ ବଳଭାର ନ ସହିବ ବନ୍ଧ
ସମସ୍ତେ ପଡ଼ିବା ଜାଣ ଏହି ଜଳମଧ୍ୟ ।
ଏମନ୍ତ କହିଲେ ଯହୁଁ ମୋତେ ସୀତାପତି
ତାହାଙ୍କ ବଚନେ ମୁହିଁ ହେଲି ଶାନ୍ତମୂର୍ତ୍ତି ।
ସେହି କଥାକୁ ସୁମରି ଭଲେ ହନୁମନ୍ତ
ନନ୍ଦିଘୋଷ କି ସହିବ ଏକ କାଠରଥ ।
ଧ୍ୱଜେ ବସିବାକୁ ଆଜ୍ଞା ଦେଲେ ମହାବାହୁ
ମହାଭାରତ ସମର ସରିଲା ଆଜହୁଁ ।

ହନୁମନ୍ତ ମନୋଭାବ ଜାଣି ହୃଷୀକେଶ
ଭାଳିଲେ ଗରବ କଲା ପବନର ଶିଷ୍ୟ ।
ସହଦେବ ବୋଲେ ହନୁ ଅଟେ ମହାକୋପୀ
କଷ୍ଟ ଦେବାପାଇଁ ଏହୁ ହେଲା ବିଶ୍ୱରୂପୀ ।
ତୁମ୍ଭେ ପ୍ରଭୁ ଅଟ ଏହି ସୃଷ୍ଟିର କରତା
ଆମ୍ଭଙ୍କୁ ସକଳ କଷ୍ଟୁଁ ଉଦ୍ଧାର କରନ୍ତା ।
କଠୋର ଆପଦ ପ୍ରଭୁ ପଡ଼େ ଯେତେବେଳେ
ଆମ୍ଭଙ୍କୁ ଉଦ୍ଧାର କରୁ ତୁହି ଅବହେଳେ ।
ମନ୍ତ୍ରୀଙ୍କର ବଚନରେ ହେଲା ମହାଚିନ୍ତା
ଧ୍ୟାନରେ ଚିନ୍ତିଲେ ହରି ସକଳ ଦେବତା ।
ନାରାୟଣ ସ୍ମରନ୍ତେ ସର୍ବେ ହୋଇ ତୋଷ
ବିନସ୍ତ ଭାବେ ପ୍ରବେଶ ହେଲେ କୃଷ୍ଣ ପାଶ ।
କେଶବ ବୋଇଲେ ଏହି ଭାରତ ସମରେ
ତୁମ୍ଭମାନଙ୍କର ଚିନ୍ତା ନାହିଁ କି ଏଥିରେ ।
ଯେତେବେଳ ପରଯନ୍ତେ ସଖ ମୁହିଁ ଥିଲି
ସବୁ ସହି ମୁହିଁ କାହାକୁହିଁ ନ ଲୋଡ଼ିଲି ।
ଏବେ ଅଗୋଚର ମୋତେ ହେଲା ଏହି ଯୁଦ୍ଧ
କୌତୁକ ଦେଖିବା ସର୍ବେ ଥାଇ ରଣମଧ୍ୟ ।
ଦିକ୍‌ପାଳେ ବୋଇଲେ ସ୍ୱାମି ଯେ ତୋହର ଆଜ୍ଞା
କେ ତୋହର ବୋଲ ପ୍ରଭୁ କରିବ ଅବଜ୍ଞା ।
କେଶବ ବୋଇଲେ ତୁମ୍ଭେ ଶୁଣ ସ୍ୱାହାପତି
ରଥ ଅଗ୍ନି କୋଣେ ଥିବ ତୁମ୍ଭେ ଦିବାରାତି ।
ଚନ୍ଦ୍ରକୁ ବୋଇଲେ ଥିବ ଅଗ୍ନି କୋଣ କାଣ୍ଡେ
ଯୁଦ୍ଧ ସରିବା ପର୍ଯ୍ୟନ୍ତେ ନ ଛାଡ଼ିବ ଦଣ୍ଡେ ।
ପୁଣି ଆଜ୍ଞା ଦେଲେ କୃଷ୍ଣ ପବନ ଦେବଙ୍କୁ
ତୁମ୍ଭେ ବଜେ କର ଯାଇ ବାୟବ୍ୟ ଖମ୍ବକୁ ।
କୁବେରକୁ ବୋଇଲେକ ସପ୍ତନିଧି ଘେନ
ଈଶାନ୍ୟ କୋଣରେ ଥିବୁ ଦିବସ ରଜନୀ ।
ଉତ୍ତରାୟଣକୁ ଆଜ୍ଞା ଦେଲେ ନାରାୟଣ
ଉତ୍ତର କାଣ୍ଡ କୋଣରେ ତୁ ରହ ଯାଇଣ ।
ନୈର୍‌ଋତ ନୃପତି ସହ ଦିଗପାଳ ଆଦି
ନୈର୍‌ଋତ କୋଣରେ ପ୍ରଭୁ ଏହାଙ୍କୁ ସମ୍ପାଦି ।
ରତ୍ନାକର ଅଧିପତି ଅଟଇ ବରୁଣ
ତାକୁ ବୋଇଲେ ତୁ ବସ ନଇର୍‌ଋତ କୋଣ
ରଥର ଯେ ଚାରିଖମ୍ବ ଚାରି କୋଣକାଣ୍ଡ
ଆବୋରିଲେ ଅଷ୍ଟଦିଗପାଳ ରଥ ଦଣ୍ଡ ।

ଆବର୍ତ୍ତକ ସମ୍ବର୍ତ୍ତକ ଦ୍ରୋଣ ଯେ ପୁଷ୍କର
ଷ୍ଟରମେଘ ରାଇ ଆଜ୍ଞା ଦେଲେ ଦାମୋଦର ।
ତୁମ୍ଭେ ଷ୍ଟରମେଘେ ରଥପିଢ଼େ ରହିଥିବ
ସର୍ବେ ମିଳି ହନୁମନ୍ତ ଭାରକୁ ସହିବ ।
ନାରାୟଣଙ୍କ ବଚନେ ଗଲେ ଦିଗପାଳେ
ଯେ ଯାହା ଆସନ ମାଡ଼ି ବସିଲେ ନିଷ୍ଠଳେ ।
ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ଏ ଚାରି
ଏମାନେ ରହିଲେ ରଥ ଚକକୁ ଆବୋରି ।
ସତ୍ୟ ତ୍ରେତୟା ଦ୍ୱାପର ଯୁଗ ଆଉ କଳି
ଏ ଚାରି ରହିଲେ ହୋଇ ଚକ ଅଣକଳି ।
ସକଳ ଦେବତା ଯହୁଁ ରଥ ଆବୋରିଲେ
ତାହା ଦେଖିଣ ଶ୍ରୀକୃଷ୍ଣ ଆନନ୍ଦିତ ହେଲେ ।
ଦିଗପାଳମାନେ ରଥ ଆବୋରିଲେ ଯହୁଁ
ବିଚାରିଲେ ହନୁ ଭାର କି କରିବ ଆଉ ।
ଗୋବିନ୍ଦ ବୋଇଲେ ତହୁଁ ଶୁଣ ହନୁମନ୍ତ
ରଥଧ୍ୱଜେ ବସ ଯାଇ ତୁ ବାବୁ ତ୍ୱରିତ ।
ପବନ ନନ୍ଦନ ଅଟେ କଥା ଜଗତ୍କେଠି
ବିଶ୍ୱରୂପ ପ୍ରକାଶିଣ ନନ୍ଦିଘୋଷେ ଉଠି ।
ବ୍ରହ୍ମାଣ୍ଡ କମ୍ପିତ ହୁଏ ଯାର ବିଶ୍ୱରୂପେ
ନନ୍ଦିଘୋଷ ରଥ କମ୍ପେ ମାରୁତିର କୋପେ ।
କନ୍ଧରେ ମାଳା କରିଛି ଶତେକ ପର୍ବତ
ମହା ବିଶ୍ୱରୂପ ଧରି ଉଠେ ହନୁମନ୍ତ ।
ଭରା ପାଇ ରଥ ପଶି ଯାଉଁ ପାତାଳକୁ
ଦେଖି ପ୍ରଭୁ ଆଜ୍ଞା ଦେଲେ ସେ ଭୀମସେନକୁ ।
ଏ ନନ୍ଦିଘୋଷ ରଥକୁ ସମ୍ଭାଳ ହେ ବୀର
ହନୁ ଭରାରେ ପଶୁଛି ଯାଇ ପାତାଳର ।
ଆଜ୍ଞା ପ୍ରମାଣେ ରଥକୁ ଧରି ବୃକୋଦର
ଟେକିଲା କୃଷ୍ଣ ଆଜ୍ଞାରେ ଫୁଲ ପରକାର ।
ବିଶ୍ୱମୂର୍ତ୍ତି ନରସିଂହ ରୂପ ସେ ହୋଇଲା
ବେନଭୁଜେ ସେ ରଥକୁ ଟେକିଣ ଧଇଲା ।
ଦ୍ୱି ଦଣ୍ଡ ପର୍ଯ୍ୟନ୍ତ ରଥ ଧଇଲା ସେ ତୋଳି
ଶାନ୍ତମୂର୍ତ୍ତି ଧରି ହନୁ ମନେ ମନେ ଭାଳି ।
ବ୍ରହ୍ମାଣ୍ଡ କମ୍ପି ଉଠଇ ମୋର ବିଶ୍ୱରୂପେ
ନନ୍ଦିଘୋଷ ନ କମ୍ପିଲା କପାଁ ମୋର କୋପେ
ପୁଣି ହନୁ ବିଚାରଇ ପାଣ୍ଡବ ଯେ ସାଧୁ
ବଶ କଲେ କେତେ ଜନ୍ମ ଖଟି ଜଗବନ୍ଧୁ ।

ଏତେକ ସୁଦଶା ଅଛି ଯାକୁ ହୃଦୟରେ
ତାହାକୁ କେବଣ ଭୟ ଇହ ସଂସାରରେ ।
ଜାଣିଲି ମାନଗୋବିନ୍ଦ ଅଟେ ବଡ ମୂର୍ଖ
ପାଞ୍ଚମନ୍ତ୍ରୀ ସହିତରେ ହେଲା ସେ ନିରେଖ ।
ନାରାୟଣଙ୍କ ସୁଦଶା ଏତେକ ଯାହାଙ୍କୁ
କୌରବେ କପାଇଁ ମନ୍ଦ ଚିନ୍ତନ୍ତି ତାହାଙ୍କୁ ।
ହେ ରାଜା କେଶବ ଯଦି ନ ଥାନ୍ତେ ଏ ରଥେ
ହନୁ ବିଶ୍ୱରୂପ ରଥ ସହନ୍ତା କେମନ୍ତେ ।
ଇନ୍ଦ୍ର ଚନ୍ଦ୍ର ବରୁଣ ଯେ ପବନ କୁବେର
ଅଗ୍ନି ଯମ ଆଦି ସର୍ବେ ଅଛନ୍ତି ରଥର ।
ହନୁମନ୍ତ ବିଶ୍ୱରୂପ କେତେକ ମାତର
ଯେବଣ ରଥେ ସାରଥି ପ୍ରଭୁ ଚକ୍ରଧର ।
ତେତିଶକୋଟି ଦେବତା ଯେବଣ ସଙ୍ଗରେ
ବିଜେ କରିଛନ୍ତି ପ୍ରଭୁ ନନ୍ଦିଘୋଷ ପରେ ।
ତେଣୁକରି ମହାଭାର ସହିଲା ଏ ରଥ
କି କରିବ ଏ ରଥର ଭାର କୁରୁନାଥ ।
ହନୁ ଭାଳେ ଏ ରଥର ଜାଣିବା ତଦନ୍ତ
କେଉଁ ଅଶ୍ୱ ଯୁକ୍ତଅଛି ନନ୍ଦିଘୋଷ ରଥ ।
ଏ ସମୟେ ଦିବ୍ୟବେଶେ ବୀର ଅରଜୁନ
ଅକ୍ଷୟ ତୂଣୀର ପୃଷ୍ଠେ କରିଲେ ବନ୍ଧନ ।
ଗୋଟିଏ ବିନ୍ଧିଲେ ଶସ୍ତ୍ର କୋଟିଏ ପୂରଇ
ରାତ ଦିବସ ବିନ୍ଧିଲେ ତହୁଁ ନ ସରଇ ।
ଯଦ୍ୟପି ସହସ୍ର ବର୍ଷ ସଂଗ୍ରାମ ହୋଇବ
ସେହି ଅକ୍ଷୟ ତୂଣୀରୁ ଶର ନ ସରିବ ।
ଯେଉଁ ମୁକୁଟ କିରୀଟ ଇନ୍ଦ୍ର ଦେଇଥିଲେ
ଅର୍ଜ୍ଜୁନ ମଥାରେ ତାହା ଶ୍ରୀକୃଷ୍ଣ ବାନ୍ଧିଲେ ।
ଦିବ୍ୟ ଅଳଙ୍କାରେ ବେଶ ହୁଅନ୍ତେ ଫାଲ୍‌ଗୁନ
ରୂପରେ ମୋହିତ ହେଲେ ଚରାଚର ପ୍ରାଣୀ
ବୀରବେଶେ ସଜହେଲା ବିରାଟର ସୁତ
ବିଜୟ ମୁକୁଟ ତାକୁ ଦେଲେ ଯଦୁନାଥ ।
ଅମର ନାଥ ପରାୟେ ବିଶନ୍ତି ଶିଖଣ୍ଡୀ
କୁଶମଣ୍ଡଳ ରଥରେ ଉଠେ ରହିମଣ୍ଡି ।
ଧୃଷ୍ଟଦ୍ୟୁମନ ବିଶଇ ରୁଦ୍ରଦେବ ଜାଣି
ପଚିଶ ସହସ୍ର ଧନୁ ଧରିଛି ସେ ପାଣି ।
ଶଙ୍ଖ ନାମରେ କୁମର ବିରାଟ ତନୟ
ଆଡ଼ମ୍ବର ଦେଖାଯାଏ ଯେହ୍ନେ କାର୍ତ୍ତିକେୟ ।

ବିଧି ଅନୁକୂଳ କଲେ ଯେଣୁ ଜଗଜନେ
ଜୟ ଜୟ ଉଚ୍ଚାରିଲେ ଗ୍ରହସୁରମାନେ ।
ସୁଲକ୍ଷଣୀ ସ୍ତ୍ରିୟାମାନେ ଘେନି ଅର୍ଘ୍ୟଥାଳ
ଦଧିବାମନ ସୁମର ଦ୍ୟନ୍ତି ହୁଳହୁଳ ।
ମାହେନ୍ଦ୍ର ଅମୃତବେଳେ ଶୁଭଲଗ୍ନ ଯୋଗେ
ବାହାରିଲେ ଯୋଦ୍ଧାମାନେ ଯୁଧିଷ୍ଠିର ଆଗେ ।
ଆନନ୍ଦିତ ହେଲେ ସର୍ବେ କୃଷ୍ଣାର୍ଜୁନ ଦେଖି
ଗଦ ଗଦ ଅଶ୍ରୁଜଳ ବହେ ବେନି ଆଖି
ଜୟ ହେ ମାଧବ ତୁମ୍ଭେ ଆଦ୍ୟ ଯେ ଅନାଦ୍ୟ
ଜୟ ହେ ମାଧବ କର ସର୍ବକାର୍ଯ୍ୟ ସିଦ୍ଧି ।
ଜୟ ହେ ମାଧବ ଜୟ ପ୍ରଭୁ ବାରିନିଧି
ଜୟ ହେ ମାଧବ ଜୟ ତୁମ୍ଭେ ଦୟାନିଧି ।
ଜୟ ହେ ମାଧବ ଜୟ ସର୍ବ ଅନୁକୂଳ
ଜୟ ହେ ମାଧବ ଜୟ ସର୍ବସ୍ୱ ମଙ୍ଗଳ ।
ଜୟ ହେ ମାଧବ ପ୍ରଭୁ ଦୁଷ୍ଟଦର୍ପ ଗଞ୍ଜା
ଜୟ ହେ ମାଧବ ପ୍ରଭୁ ସର୍ବାପଦ ଭଞ୍ଜା ।
ଜୟ ହେ ମାଧବ ସର୍ବଜନ ଚିନ୍ତାମଣି
ଜୟ ହେ ମାଧବ ବାଞ୍ଛା ପୂର୍ଣ୍ଣ କରୁ ଜାଣି ।
ଜୟ ହେ ମାଧବ ତୁମ୍ଭେ ସର୍ବଘଟ ବ୍ୟାପୀ
ଜୟ ହେ ମାଧବ ତୁମ୍ଭେ ଅଟ ବିଶ୍ୱରୂପୀ ।
ଜୟ ହେ ମାଧବ ଜୟ କମଳା ବିଳାସ
ଜୟ ହେ ମାଧବ ତୁମ୍ଭ ନାମଟି ପୀୟୂଷ ।
ଜୟ ହେ ମାଧବ ଜୟ ସର୍ବ ଶୁଭଦାତା
ଜୟ ହେ ମାଧବ ସର୍ବ ଦୁଷ୍କୃତ ହରନ୍ତା ।
ଜୟ ହେ ମାଧବ ଶୁଭ ତୁମ୍ଭ ନାମଗୋଟି
ଜୟ ହେ ମାଧବ ତୁମ୍ଭେ ଦୁଷ୍ଟ-ଦଳନଟି ।
ଜୟ ହେ ମାଧବ ତୁମ୍ଭେ ଅଟ ବକ୍ରସେହ୍ଲା
ଜୟ ହେ ମାଧବ ଦୁଃଖନାଶନ ତୋ ବାନା ।
ଜୟ ହେ ମାଧବ ବନ୍ଦେ ସଦା ତୁମ୍ଭ ପାଦେ
ଜୟ ହେ ମାଧବ ବିଜେ କର ମମ ହୃଦେ ।
ଜୟ ହେ ମାଧବ ସର୍ବ ଅରିଷ୍ଟ ବିନାଶ
ଜୟ ହେ ମାଧବ ଜୟ ଦେବ ହୃଷୀକେଶ ।
ଜୟ ହେ ମାଧବ କଳିକାଳ ଦର୍ପଧ୍ୱଂସା
ଜୟ ହେ ମାଧବ ପୂର୍ଣ୍ଣକର ଭକ୍ତ ଆଶା ।
ଜୟ ହେ ମାଧବ କର ସୃଷ୍ଟିକୁ ସର୍ଜନ
ଜୟ ହେ ମାଧବ କର ସୃଷ୍ଟି ସଂହାରଣ ।
ଜୟ ହେ ମାଧବ ତୁମ୍ଭ ନାମ ସର୍ବସିଦ୍ଧି
ଜୟ ହେ ମାଧବ ତୁମ୍ଭେ କରୁଣାଜଳଧି ।
ଜୟ ହେ ମାଧବ କରେ ମୁଁ ତୁମ୍ଭଙ୍କୁ ଲୟ
ଜୟ ହେ ମାଧବ କର ଆମ୍ଭ ରଣ ଜୟ ।
ଯୁଧିଷ୍ଠିର ମାଧବଙ୍କ ନାମେ କଲେ ଜୟେ
ମନୁଭ୍ରାନ୍ତ ଫିଟାଇ ସେ ହୋଇଲେ ନିର୍ଭୟେ ।
ଜୟ ହେ ମାଧବ ଭକ୍ତଜନ ଉଦ୍ଧାରଣ
ଶାରଳା ଦାସ ତୋ ପାଦେ ପଶିଲା ଶରଣ ।

## କୁରୁ ପାଣ୍ଡବ ସୈନ୍ୟସହ ସମର କ୍ଷେତ୍ରେ ପ୍ରବେଶ

ପୁନରପି ମନୁରାଜା ଯୋଡ଼ି ବେନିକର
ଅଗସ୍ତି ମୁନିଙ୍କ ପାଦେ କରି ନମସ୍କାର ।
ପୁଚ୍ଛାକଲେ ଏ ଉତ୍ତାରୁ ଧର୍ମଙ୍କର ସୁତ
କେଉଁ କଥା କଲେ ତାହା କହ ମୋ ଅଗ୍ରତ ।
ମୁନି କହିଲେ ଏ ପରେ ଯୁଧିଷ୍ଠି ରାଜନ
ଯାହା କଲେ କହୁଅଛୁ ମନଦେଇ ଶୁଣ ।
ବହୁ ବିନୟେ ଶ୍ରୀକୃଷ୍ଣେ କହିଲେକ ଧର୍ମ
ଦେବ ଧର୍ମଜ୍ଞପୁରୁଷ ମଧ୍ୟେ ତୁ ଉତ୍ତମ ।
କ୍ଷତ୍ରିୟ ଧର୍ମ ଦୁର୍ବାର ଅଟଇ ଯେ କଷ୍ଟ
ତୋତେ ପାରିଗଲା ମୋର ଦୁଃସହ ସଙ୍କଟ ।
ଅକଳଙ୍କ ପୁରୁଷ ତୁ ଅଜୟ ଅଭୟ
କୌତୁକେ ରଙ୍ଗାବତାରେ ହୋଇଛୁ ଉଦୟ ।
ଯାବତ କାଳକୁ ମୂଳ ତୁହି ଚକ୍ରଧର
ଶିଷ୍ଟଙ୍କୁ ପାଳି ଦୁଷ୍ଟଙ୍କୁ କରୁ ତୁ ସଂହାର ।
ଅସମର୍ଥ ମୁହିଁ ଭୀଷ୍ମ ଦ୍ରୋଣଙ୍କ ଯୁଦ୍ଧକୁ
କଳ୍ପତରୁ ବୋଲି ଆଶ୍ରା କଲଇଁ ତୁମ୍ଭଙ୍କୁ ।
ଘୁଞ୍ଚିଥିଲି କନ୍ଦଳକୁ ଡରି ଏତେ କାଳ
ତୁମ୍ଭେ ସାହା ହେବ ଏ ମୋ ଅସମୟ ବେଳ ।
ହେ କର କର୍ମରେ ମୋର ବିପତ୍ତି ନ ଥିଲେ
ଗୁରୁ ସହୋଦର ମୋତେ କପାଁ ଉପେକ୍ଷିଲେ ।
ସବୁ ବିପଦକୁ ମୋର କରୁ ନାହିଁ ଚିନ୍ତା
ତୋ ବାହାକୁ ଆଶ୍ରାକରି ହେବି ରଣଜିତା ।
ଆଶ୍ରା କରିଅଛୁ ମୁହିଁ ତୋତେ ସର୍ବକାଳ
ଅଗ୍ରେ ଦେଖେ ଶୁଭବାଞ୍ଛା ଶୁଭ ଅନୁକୂଳ ।

ଧର୍ମ ମୁଖରୁ ଏସନ ନମ୍ରବାକ୍ୟ ଶୁଣି
ମଧୁରିପୁ ବୋଇଲେକ ହର୍ଷେ ମଞ୍ଜୁବାଣୀ ।
ଭୀଷ୍ମ ଦ୍ରୋଣ ଯଦ୍ଧ ବୋଲି ମହାବଳବନ୍ତ
ସଙ୍ଗ୍ରାମେ ପାର୍ଥକୁ କେହ୍ନ ନୋହିବେ ସମର୍ଥ ।
ଅର୍ଜୁନ ହସ୍ତରେ ନାଶ ହେବେ ସର୍ବଯୋଦ୍ଧୀ
ତାଙ୍କୁ ଯେ ବଳକ ମୁହିଁ ଚହେଁ ଦେବ ଛେଦ ।
ଏମନ୍ତ କାଳେ ଉତ୍ତରଦଗେ ହସ୍ତୀ ଛିଙ୍କି
ଶୁଭେ ନାଗଡାକ ଦଧିମଙ୍ଗଳ ତହିଁକ ।
ବାମରେ ଯୋଗିନ୍ନ ଆଗ୍ନେୟକୋଣେ କଲେ ସ୍ଥିତ
ଈଶାନେ ଉଦୟ ହେଲେ ମହାଲକ୍ଷ୍ମୀ ମୂର୍ତ୍ତି ।
ଶ୍ରୀପ୍ରା ନାମରେ ବିଖ୍ୟାତ ଏକ ଗୋପାଳୁଣୀ
ସମ୍ମୁରେ ଡାକଲା ଆସି ଦଧିଭାଣ୍ଡ ଘେନି ।
ଯମୁନା ନଦୀ ମଧ୍ୟରୁ ଡେଇଁ ମାଛ ଏକ
ସମ୍ମୁରେ ପଡ଼ିଲା ଯାଇ ଦେଖିଲେ ପ୍ରତ୍ୟକ୍ଷ ।
ଶଙ୍ଖଚିଲ ଡାକଇଏ ପଶ୍ଚିମ ମୂରତି
ଭଦଭଦଳିଆ ପକ୍ଷୀ ରମ୍ଭାବୃକ୍ଷେ ସ୍ଥିତ ।
ସର୍ବ ଅନୁକୂଳ ହନୁ ଆଗେ ହୁଏ ଦୃଷ୍ଟି
ଅଦଭୁତେ ଆକାଶରୁ ହେଲା ପୁଷ୍ପବୃଷ୍ଟି ।
ଦାରୁ ପଛରେ ଦେଖିଲେ ଅନୁକୂଳ କାଠି
ତାର ପରମାଣ ଅଟେ ପଞ୍ଚଦଶାଙ୍ଗୁଳି ।
ପ୍ରୋହିତେ ବୋଲେ ଅମୃତ ଲଗନର ବେଳ
ପ୍ରଥମ ଘୃତଦଣ୍ଡ ଯେ ବୁଧଙ୍କର କାଳ ।
କ୍ଷୀର ସମୁଦ୍ରକୁ ଭେଦି ଉଦେ ଦିନକର
ମଙ୍ଗଳ ଧ୍ୱନି ଶୁଭଇ ଆକାଶ ଭିତର ।
ଏକାଳେ ବ୍ରହ୍ମାଣରୂପେ ଅନଳ ଦେବତା
ଅଭୁତେ ଆସି ପଡ଼ିଲେ ସେ ଅପରାଜିତା ।
ଅର୍ଜୁନ ପ୍ରଣିପାତ ସେ ବ୍ରାହ୍ମଣଙ୍କୁ ଦେଖି
ଆମ୍ଭ ବାଞ୍ଛା ସିଦ୍ଧ ହେଉ ଧର୍ମ ତହିଁ ସାକ୍ଷୀ ।
ବ୍ରାହ୍ମଣ ବୋଇଲେ ମୁହିଁ ଲଭିଲି ଭୂପତି
ଏ ପଞ୍ଚରାଜ୍ୟରେ ହୁଅ ତୁମ୍ଭେ ଚକ୍ରବର୍ତ୍ତୀ ।
ଯେତେ ଅସ୍ତ୍ର ଦେଇଛି ମୁଁ ଖାଣ୍ଡବ ଦହନେ
କାର୍ଯ୍ୟକାରୀ ହେବେ ସବୁ ତୁମ୍ଭର ସ୍ମରଣେ ।
ନିର୍ମଳ ମନେ ଯେ ଆଜ୍ଞା କଲେ ବୈଶ୍ୱାନର
କେ ଆନ କରିବ ଜନପୁରର ମଧ୍ୟର ।
ସୁବର୍ଣ୍ଣ ଥାପରେ ଗୁଆଘୃତକୁ ପକାଇ
ଅଙ୍ଗୁଳି ମୋଟ ପ୍ରମାଣେ ବଳିତାଏ ଦେଇ ।

ଅଗ୍ନି ଲଗାନ୍ତେ ଉଠିଲା ତହୁଁ ଏକଶିଖା
ନିଷ୍ଟଳେ ଦ୍ୱାଦଶାଙ୍ଗୁଳ ଶିଖା ଗଲା ଦେଖା ।
ସ୍ଥିର ହୋଇଗଲେ ସହୁଁ ଯାତ୍ରାବିଧି କରି
ବିଜୟ ଫାଲ୍‌ଗୁନ ଦଧିବାମନ ସୁମରି ।
ବାମରେ ଯୁଧିଷ୍ଠିଦେବ ଦକ୍ଷେ ଯଦୁନାଥ
ଆଗେ ଧୃଷ୍ଟଦ୍ୟୁମ୍ନ ପଛେ ବିରାଟ ତା ସୁତ ।
ଅମୃତବେଳେ ମାହେନ୍ଦ୍ର ଯୋଗକୁ ସେ ଘେନି
ନନ୍ଦିଘୋଷ ରଥରେ ବିଜୟ ଫାଲଗୁନି ।
ଉଡ଼ାଅନ୍ତି ଦାସୀ ନେତ ମଙ୍ଗଳ ପତାକେ
ବିମଳ ଆଲମ୍ବ ଉଡ଼େ ଗଗନର ମାର୍ଗେ ।
ଯେଉଁ ପୁରୁଷଙ୍କୁ ଲୟ କରେ ପଦ୍ମଯୋନି
ସେ ସ୍ୱାମୀ ଅର୍ଜୁନ ରଥେ କଲେ ଶଙ୍ଖଧ୍ୱନି ।
ଏମନ୍ତ କାଳେ ଆସିଲେ ଦ୍ରୁପଦ ଦୁଲାଳୀ
ଅର୍ଜୁନ ପାଶେ ମିଳିଲେ ଘେନି ଅର୍ଘ୍ୟଥାଳି ।
ତ୍ରିଲୋକମୋହିନୀ ସେହି ଦ୍ରୁପଦର ବାଳା
ବେଶ ଭୂଷଣେ ଅଇଲେ କେଶ ଯେ ମୁକୁଳା ।
ପାଞ୍ଚାଳୀକୁ ପ୍ରତିବାକ୍ୟ ଦିଅନ୍ତି ନାରାୟଣ
ସ୍ତ୍ରୀଲିଙ୍ଗ ହୋଇ କରିଛ ଧନ୍ୟ ଦୃଢ଼ପଣ ।
ଏତେକ ଶୁଭ ଯୋଗରେ ଯାତ୍ରା ଅନୁକୂଳେ
ମହାଭାରତ ଯୁଦ୍ଧକୁ ଯାଆନ୍ତି ସକଳେ ।
ସର୍ବ ସୁବିଧାନ ସୁଖେ ଶୁଭକର ବାଞ୍ଛା
ଏ ବେଳେ କେଶ ମୁକୁଳା ଏହା ନୁହେ ଆଜ୍ଞା
ପୁନଶ୍ଚ ବୋଇଲେ କେଶ ବାନ୍ଧ ଆଗୋ ମାଏ
ତୋର ସ୍ୱାମୀ ସମରକୁ କରନ୍ତି ବିଜୟେ ।
ପଞ୍ଚାଳମଣ୍ଡନୀ ଆଗୋ ପାଣ୍ଡବ ମହିଷି
ଏକାଳେ କେଶ ବନ୍ଧନ କର ସ୍ମିତହାସି ।
ଏପରି ବୋଧି କହନ୍ତେ ଦେବ ହୃଷୀକେଶ
ମନରେ ବିକଳ ହେବା କ୍ରୋଧରେ ଅବଶ ।
କଦଳପତ୍ର ପରାଏ କମ୍ପେ ତାର ତନୁ
ମୁକ୍ତ ପ୍ରାୟେ ଅଶ୍ରୁଜଳ ବହିଲା ନୟନୁ ।
ଯା ଦେଖି କହିଲେ କୃଷ୍ଣ କମ୍ପେ ପାଞ୍ଚାଳୀ
ଆନନ୍ଦେ କପାଁ ବିଷାଦେ ଅଶ୍ରୁଜଳ ଗଳି ।
ପୁନଃପୁନଃ ନାରାୟଣ ପୁଚ୍ଛନ୍ତେ ଶ୍ରଦ୍ଧାରେ
ପ୍ରତ୍ୟୁତ୍ତର ନ ପାରନ୍ତି ଦେଇ ସେ କ୍ରୋଧରେ ।
କ୍ରୋଧ ସମ୍ବରଣ କରି ବୋଲେ ଯାଜ୍ଞସେନୀ
ଏକଆତ୍ମା ଅଟ ତୁମ୍ଭେ କୃଷ୍ଣ ଫାଲଗୁନି ।

ମୁଁ କିସ କହିବି ତୁମ୍ଭେ ଅଟ ହେ ସର୍ବଜ୍ଞ
ଧାର୍ମିକ ବିବେକ ଶିରୋମଣି ମହାବିଜ୍ଞ ।
ତୁମ୍ଭେ କି ନ ଜାଣ ଦେବ ପଶାଖେଳ ବେଳେ
ଧନ ରାଜ୍ୟ ହରି ବସାଇଲେ ସଭାତଳେ ।
ମୋର କେଶ ଧରି ଟେକି ଘେନିଗଲା ଦୁଃଶା
ସେହିଦିନୁ ଜୀବନରେ ନାହିଁ ମୋର ଆଶା ।
କେଶ ବାନ୍ଧିବାକୁ ପ୍ରଭୁ କିପାଁ କହ ମୋତେ
ଏ ପ୍ରାଣେ କି ଆଶା ଦୁଃଶା ଥିବା ପରିଯନ୍ତେ
ଭୀମସେନ ପ୍ରତିଜ୍ଞା ଯେ କଲେ ସଭାତଳେ
ଦୁଃଶା ଭୁଜ ଉପାଡ଼ିବେ ବୋଲି ଅବହେଳେ
ତାଙ୍କର ପ୍ରତିଜ୍ଞାକୁ ମୁଁ କରିଅଛି ଆଶ
ଆଜଯାଏ ମୁକୁଳା ମୁଁ ରଖିଅଛି କେଶ ।
ଦୁଃଶା ଭୁଜରକ୍ତେ ମୋର କେଶ ପଖାଳିବି
ତେବେ ଏ ମୁକୁଳାକେଶ ବନ୍ଧନ କରିବି ।
ଅର୍ଜ୍ଜୁନ ହରେଇମଲ୍ଲି ଅଟେ ଜଗଜେଠି
ସ୍ୱର୍ଲୋକରେ ବିଦିତ ତାର ନାମଗୋଟି ।
ସର୍ବକାର୍ଯ୍ୟ ସିଦ୍ଧ କରି ଯାଅ ଧନଞ୍ଜୟ
ଯୁଦ୍ଧେ ନ ପଡ଼ୁ ତୁମ୍ଭଙ୍କୁ କିଛି ଅପଚୟ ।
ମନୋବାଞ୍ଛା ପୂର୍ଣ୍ଣ କରି ଶମ୍ଭୁ କର ପଦା
ଆପଦଖଣ୍ଡିନୀ ଦୁର୍ଗା ରଖନ୍ତୁ ସର୍ବଦା ।
ଅନେକ ଶୁଭବାଞ୍ଛା ଯେ କଲେ ଯାଜ୍ଞସେନୀ
ଅର୍ଘ୍ୟଦେଇ ବନ୍ଦାଇଲେ କୃଷ୍ଣ ଫାଲ୍‌ଗୁନ ।
ପ୍ରଥମରେ ବନ୍ଦାଇଲେ ଦେବ ଜଗନ୍ନାଥ
ଦ୍ୱିତୀୟରେ ଅର୍ଘ୍ୟ ଦେଲେ ଅର୍ଜ୍ଜୁନର ମାଥ ।
ପାଣ୍ଡବଙ୍କୁ ରକ୍ଷା କର ଆହେ ଜଗନ୍ନାଥେ
ଜୟଘୋଷ ଶବ୍ଦ ଶୁଭେ ବିପ୍ର କୁଶହସ୍ତେ ।
ଦଧିବାମନ ସୁମରି ସମରେ ପଶିବ
ଯେମନ୍ତେ କେଶ ମୁକୁଳା କଷ୍ଟ ମୋର ଯିବ ।
ଦ୍ୱିତୀୟେ ଅଇଲେ ତହୁଁ ଦେବକୀ ନନ୍ଦନ
ଅର୍ଘ୍ୟ ଘେନି ବନ୍ଦାଇଲେ ଶ୍ରୀକୃଷ୍ଣ ଫାଲ୍‌ଗୁନ
ଜୟ ହୁଳହୁଳି ଦେଲେ ସର୍ବ ସୁଲକ୍ଷଣୀ
ସମସ୍ତେ ଶୁଭ ବାଞ୍ଛିନ୍ତି ସୁମଙ୍ଗଳ ବାଣୀ ।
ବାଗପାଳେ ଘେନି ହରି ବିଜେ ନନ୍ଦଘୋଷେ
ଅନନ୍ତକୋଟି ବ୍ରହ୍ମାଣ୍ଡ ଯା ଗର୍ଭରେ ବସେ ।
କୃଷ୍ଣ ବିଶ୍ୱରୂପ ହନୁ ଦେଖି ଧ୍ୱଜେ ଥାଇ
ମନେ ମନେ ଏହିରୂପେ ବିଚାର କରଇ ।

ଧନ୍ୟ ରେ ପାଣ୍ଡବେ ଧନ୍ୟ ତୁମ୍ଭର ଜୀବନ
ମନାଇଲ କେତେକାଳ ଖଟି ନାରାୟଣ ।
ଯେଉଁ ପ୍ରଭୁଙ୍କର ଗର୍ଭେ ଅଶେଷ ବ୍ରହ୍ମାଣ୍ଡ
ସାରଥି ହୋଇ ଚାଳିବେ ସେହି ରଥଦଣ୍ଡ ।
ମେରୁଠୁଁ ବଳଣ ଏହି ନନ୍ଦିଘୋଷ ଗୋଟି
ଯେ ଅଶ୍ୱ ଚାଳିବେ ତାଙ୍କ ଜୀବନ ଧନ୍ୟଟି ।
କେଉଁ ଅଶ୍ୱ ଚାଳିବ ଏ ନନ୍ଦିଘୋଷ ଆଜ
ଜାଣିବା ଭିଆଇଛନ୍ତି କିସ ଦେବରାଜ ।
ମହାବିଶ୍ୱରୂପ ଧରି ତହୁଁ ସେ ପାବନ
ଗାଡ଼େ ବସିଲା ବିକ୍ରମ ଗାତକୁ ସେ ଘେନ ।
ହନୁମନ୍ତର ବିଚାର ଜାଣି ଦେବହରି
ସ୍ମରନ୍ତେ ଜଳବୈକୁଣ୍ଠେ ଜାଣି ଅଶ୍ୱଚାରି ।
ଶଙ୍ଖ ଶ୍ୱେତ ଗୋକ୍ଷୀର ଯେ ଆଉ ଜାମପାଳ
ସୁବେଶି ଅଶ୍ୱ ମିଳିଲେ ଆସି ତତକାଳ ।
ପ୍ରଳୟ ଉଦ୍ଧାରିଛନ୍ତି ସେହି ଅଶ୍ୱଚାରି
ଦିବାରାତ୍ର ନ ଜାଣନ୍ତି କାଳକାମ ହରି ।
ଅନଳରେ ନ ପୋଡ଼ନ୍ତି ଜଳେ ନ ବୁଡ଼ନ୍ତି
ମହାପ୍ରଳୟରେ ହଂସରୂପେ ବିହରନ୍ତି ।
କେତିକାଳ ଯେବେ ଏକଯୁଗ ପ୍ରସରଇ
ତେବେ ସେହି ଅଶ୍ୱ ତାକୁ ନିମିଷେ ମଣଇ ।
ଯେତେବେଳେ ପୃଥିବୀରେ ପ୍ରଳୟ ହୁଅଇ
ତେବେ ସେ ଅଶ୍ୱମାନଙ୍କୁ ବିବସେକ ହୋଇ
ବ୍ରହ୍ମଶକ୍ତି ବଜ୍ରଶକ୍ତି ଅମୋଘ ଶକତି
ପାଶୁପତ ଆଦି ତାଙ୍କ ଦେହେ ନ ଫୁଟନ୍ତି ।
ସେ ଅଶ୍ୱଙ୍କର ମହିମା ଦେବେ ନ ଜାଣନ୍ତି
ବିଧାତାଙ୍କୁ ଭେଟି ହେଲେ ତାଙ୍କୁ ହୁଏ ଗତି ।
ଚନ୍ଦ୍ର ସୂର୍ଯ୍ୟଙ୍କୁ ସେ ଅଶ୍ୱ କଥା ଅବିଦିତ
ସେ ଚାରିଅଶ୍ୱ ଯୋଚିଲେ ରଥେ ଯଦୁନାଥ ।
ଅଗସ୍ତିଙ୍କୁ ପୁଚ୍ଛା କଲେ ମନୁ ନରନାଥ
ଅଶ୍ୱଙ୍କ ମହିମା ଶୁଣି ହୁଏ ଆଚମ୍ବିତ ।
ଆଦ୍ୟରୁ ସେ ଅଶ୍ୱ ଜାତ ହୋଇଲେ ବା କାହୁଁ
ଏହା ବିସ୍ତାରିଣ ମୋତେ କହିବାକ ହେଉ ।
ଅଗସ୍ତି କହିଲେ ଶୁଣ ମନୁ ଦଣ୍ଡଧର
ଶୁଣ ଏକମନେ ତୋର ମନକରି ସ୍ଥିର ।
ଶିବସଦନ ବୋଲିଣ ଏକ ସତ୍ୟଯୁଗେ
ସୁଧର୍ମ ନାମେ ବ୍ରାହ୍ମଣ ବସନ୍ତି ଯେ ସ୍ୱର୍ଗେ ।

ନବଗର ନାମେ ଏକ ବସଇ ନରସ୍ଥ
ଦ୍ୱାଦଶ ସୂ ତ୍ରପ ଚକ୍ରବଦ୍ୟାରେଣ ସଂସ୍ଥ ।
ଅର୍କ ନାମରେ ଅଟଇ ଏକଇ ଅସୁର
ନିବାସନ୍ତ ଥାଇ ଚନ୍ଦ୍ରଭାଗା ତୀର୍ଥ ତୀର ।
ମାଘ ଶୁକ୍ଳ ଦ୍ୱାଦଶୀ ଅଟେ ଗୁରୁବାର
ପୁନର୍ବସୁ ନକ୍ଷତ୍ର ଯେ ଭୋଗ ସେ ଦିନର ।
ବାଳବ ନାମେ କରଣ ପ୍ରୀତିନାମେ ଯୋଗ
ମିଥୁନ ଚନ୍ଦ୍ରର ମେଷ କର୍କଟର ଭୋଗ ।
ସେ ଦିନ ମକର ମାସ ରବି ସଂକ୍ରମଣ
ଅର୍କତୀର୍ଥକୁ ବିଜୟ ସୂର୍ଯ୍ୟନାରାୟଣ ।
ସୂର୍ଯ୍ୟମଣ୍ଡଳ ରଥରେ ଅଷ୍ଟଅଶ୍ୱ ଯୋଚି
ଅର୍କବଟର ତଳରେ ମିଳିଲେ ନରସ୍ଥ ।
ଅରୁଣ ସାରଥିକୁ ଯେ ରଥରେ ଜଗାଇ
ଚନ୍ଦ୍ରଭାଗା ତୀର୍ଥେ ସ୍ନାନ କରନ୍ତି ସେ ଯାଇ ।
ଅର୍କ ଦଇତ୍ୟ ଯେ ଥିଲା ସମୁଦ୍ରରେ ପଶି
ମହାତୀର୍ଥରୁ ବାହାର ହୋଇଣ ସେ ଆସି ।
ଅର୍କବଟ ମୂଳେ ଦୈତ୍ୟ କରିଲା ବିଶ୍ରାମ
ଦେଖିଲା ସୂର୍ଯ୍ୟଙ୍କ ରଥ ଅତି ଅନୁପମ ।
ଦେଖି ଆନନ୍ଦିତ ହେଲା କମୁଦୈତ୍ୟ ବଳା
ବୋଲେ ମୋ ତୀର୍ଥ ଜଳକୁ କେ କରଇଗୋଳା
ଅନ୍ତଅନ୍ତ ଉତ୍ସର୍ଗ ସେ ଅସୁର ଦେହଟି
ପ୍ରଳୟ ଗଗନେ ଯେହ୍ନେ ମେଘ ଯାଏ ଘୋଟି ।
ତୀର୍ଥଜଳେ ସୂର୍ଯ୍ୟଦେବ ସ୍ନାନ କରୁଥିଲେ
ଅସୁର ଭୟେ ଗୁପତେ ଅନ୍ତର୍ଦ୍ଧାନ ହେଲେ ।
ଅରୁଣ ସାରଥି ରଥ ମଧ୍ୟେ ଗଲା ଲୁଚି
ଖୋଜିଣ ଅର୍କ ଦଇତ ନ ପାଇଲା କିଛି ।
ସେ ରଥ ରାକ୍ଷସ କରେ ଧଇଲାକ ଟୋଳ
ମେରୁ ସମାନ ସେ ରଥ ତାହା ଦେଲା ଗିଳ ।
ଗିଳିଣ ସେହି ଦୁର୍ଦ୍ଦାନ୍ତ ପଶେ ବାରିନିଧି
କଷ୍ଟରେ ହରିଲା ଦୁଷ୍ଟ ସୂର୍ଯ୍ୟଙ୍କ ସମୃଦ୍ଧି ।
ଜଳର ଭିତରୁ ଦେବ ବାହାର ହୋଇଲେ
ଆପଣାର ରଥକୁ ସେ ତୀରେ ନ ଦେଖିଲେ ।
ଅରୁଣ ସୂତେ ନ ଦେଖି ଭାଳିଲେ ଏପର
ଉଦୟ ଅସ୍ତ ଦିନ ମୁଁ ହୋଇବି କପର ।
ଏହା ଭାଳି ବ୍ରହ୍ମାଙ୍କୁ ସେ ସୁମରଣା କଲେ
ସୂର୍ଯ୍ୟ ସୁମରନ୍ତେ ଧାତା ସେକ୍ଷଣି ଅଇଲେ ।

ତାଙ୍କୁ ଦେଖି ପ୍ରଜାପତି କହିଲେ ଏମନ୍ତ
ସ୍ନାନକରି ଆସିଥିଲି ଚନ୍ଦ୍ରଭାଗା ତୀର୍ଥ ।
ସାରଥି ରଥ ଛାଡ଼ିଣ ସେହି ତୀରେ ଥିଲା
ଦାନବ ଅଶ୍ୱ ସହିତେ ରଥ ଗିଳିଦେଲା ।
କ୍ଷଣକେ ଲକ୍ଷ ଯୋଜନ ଗମନ୍ତି ଯେ ହୟ
ତାଙ୍କ ଅଭାବେ କେମନ୍ତେ ହୋଇବି ଉଦୟ ।
ଶୁଣି ପିତାମହ ଚିନ୍ତା କଲେ ଲୟକର
ଏ ଯୁଗେ ଅର୍କ ଦୈତ୍ୟକୁ ନ ପାରିବା ମାରି ।
ଶୂଦ୍ରକ ନାମରେ ବ୍ରହ୍ମା କଲେ ମହାଯୋଗ
ଅଠାଶୀ ସହସ୍ର ବର୍ଷ ଦେଲେ ହବିର୍ଭାଗ ।
ପୂର୍ବ ପଶ୍ଚିମ ଆବର ଉତ୍ତର ଦକ୍ଷିଣ
ଅଗ୍ନି ଈଶାନ ନୈର୍ଋତ ବାୟବ୍ୟ ଯେ କୋଣ
ଅଷ୍ଟଭାଗ କରି ଧାତା ଦେଲେକ ଆହୁତି
ତହୁଁ ଅଷ୍ଟଅଗ୍ନି ଜାତ ହୋଇଲେ ଝଟତି ।
ଅଷ୍ଟଭାଗରେ ଆହୁତି ଦେଲେ ପଦ୍ମଯୋନି
ଅଗ୍ନିଦେବତା ହୋଇଲେ ଅତି ପରାକ୍ରମୀ ।
କୋଟିଏ ସାବିତ୍ରୀ ମନ୍ତ୍ରେ ଦେଲେ କୋଟିଭାଗ
ତହିଁରୁ ଜନ୍ମ ହୋଇଲେ ଆଠଟି ତୁରଙ୍ଗ ।
ଶଙ୍ଖ ଶ୍ୱେତ ଗୋକ୍ଷୀର ଯେ ଆଉ କାମପାଳ
କାଳୀ ହଂସତାଳ ମହାକାଳ ତଦ୍ୟାଗେଳ ।
ଏ ଆଠ ଅଶ୍ୱଙ୍କୁ ଜନ୍ମ କଲେ ଶୂଦ୍ର ବ୍ରହ୍ମା
ଅଷ୍ଟରଥ ତିଆଇଲେ ସେହି ମହାତମା ।
ଚନ୍ଦ୍ର ସୂର୍ଯ୍ୟମଣ୍ଡଳ ପୁଷ୍ପକ ପଦ୍ମଧ୍ୱଜ
ଇନ୍ଦ୍ର କୁବେର ଯେ ନନ୍ଦଘୋଷ ତାଳଧ୍ୱଜ ।
ଏରୂପେ ଆଠଟି ରଥ ଯାଗୁଁ ଉପୁଜିଲେ
ତହୁଁ ଏକରଥ ସ୍ୱର ଅଶ୍ୱ ସୂର୍ଯ୍ୟେ ଦେଲେ
ସୂର୍ଯ୍ୟମଣ୍ଡଳ ରଥରେ ସେ ଅଶ୍ୱକୁ ଯୋଚି
ତହିଁ ବସି ପ୍ରଦକ୍ଷିଣ କରିଲେ ନରସ୍ଥ ।
ଆବର ଯେ ସପ୍ତରଥ ଅଶ୍ୱ ଦେନ କରେ
କୁବେରଙ୍କ ଭଣ୍ଡାରରେ ତାହାକୁ ଥୋଇଲେ
ହରିବାସ କୋଲିକରି ସତ୍ୟଯୁଗ ଗୋଟି
ସୂର୍ଯ୍ୟ ଅର୍କଦୈତ୍ୟ ସେହି ତୀର୍ଥେ ଭେଟାଭେଟି
ଅନେକ ସମର ହେଲା ଅର୍କଦୈତ୍ୟ ତୁଲେ
ସମରେ କୌଣସିରୂପେ ଜିଣି ନ ପାରିଲେ ।
ଅନେକ ଉପାୟେ ସହୁଁ ନୋହିଲା ନିଧନ
ସେହି ତୀର୍ଥେ ସୂର୍ଯ୍ୟ ତାକୁ କସିଲେ ମାଡ଼ଣ ।

ପୃଥିବୀର ଅଗ୍ନି କୋଣେ ଦୈତ୍ୟକୁ ଯେ ମାରି
କୋଣାରକ ତୀର୍ଥ କଲେ ନାମ ଅନୁସରି ।
ହେ ରାଜା ଏରୂପେ ଯହୁଁ ଦୈତ୍ୟ ନାଶଗଲା
ଦେବତାଙ୍କ ମନରୁ ସେ ଭୟ ଦୂର ହେଲା ।
ଅର୍କଦୈତ୍ୟ ଗିଳିଥିଲା ସୂର୍ଯ୍ୟଙ୍କର ରଥ
ଦୈତ୍ୟ ମରନ୍ତେ ପାଇଲେ ତାହା ସୁପ୍ରକାଶ
ଅରୁଣ ସହିତେ ଥିଲା ଦଇବ ଉଦର
ତାହାକୁ ମଧ୍ୟ ପାଇଲେ ଦେବ ଦିବାକର ।
ସହସ୍ରଯୁଣ ଅଟଇ ଦଇତ ଉଦର
ତହିଁ ଅଶ୍ୱରଥେ କରୁଥିଲେକ ବିହାର ।
ନିଜ ରଥ ଅଶ୍ୱ ସୂତ ପାଇଣ ତପନ
ସେ ରଥେ ବସିଣ କଲେ ଗମନାଗମନ ।
ଶୂଦ୍ରକ ବ୍ରହ୍ମା ଯେ ରଥ ଉପୁଜାଇଥିଲା
ସେ ରଥ ଅଶ୍ୱ ନେଇଣ ବୈକୁଣ୍ଠେ ଥୋଇଲା
ଖାଣ୍ଡବ ଦହନକାଳେ ଦେବ ସ୍ୱାହାଈଶ
ବୈକୁଣ୍ଠୁ ସେ ରଥ ଆଣିଦେଲେ ପାର୍ଥ ପାଶ
ସେ ରଥେ ଯେ ଅଶ୍ୱ ଥିଲେ ଅକ୍ଷୟ ଅବ୍ୟୟ
ତା ପାର୍ଥ ରଥେ ଯୋଚିଲେ ପ୍ରଭୁ ଦେବରାୟ ।
ସେହି ରଥ ମେରୁତୁଲ୍ୟ ଅଟେ ଅତି ଗରୁ
ତାହାକୁ ତୂଳା ପରାୟେ ମନ୍ତ୍ରେ ସେବାରୁ ।
ଶଙ୍ଖ ଶ୍ୱେତ ଗୋକ୍ଷୀର ଯେ ଆଉ କାମପାଳ
ଏ ଚାରିଅଶ୍ୱ ଯୋଚିଲେ ଶୁଭଲଗ୍ନ ବେଳ ।
ଅନେକ ମଙ୍ଗଳ ବାଦ୍ୟ ଶୁଭେ ଘୋରଧ୍ୱନି
ଚଳିଲା ସେ ନନ୍ଦିଘୋଷ ଅନୁକୂଳ ଘେନି ।
ସେ ଅଶ୍ୱଙ୍କର ମହିମା ଶୁଣ ହେ ଚୈତନ୍ୟ
ଗଗନେ ଉଡ଼ଇ ଯେହ୍ନେ ପୁଷ୍ପକ ବିମାନ ।
ଜଳ ମଧ୍ୟେ ବିହରନ୍ତି ଯେହ୍ନେ ହଂସପନ୍ତି
ତେସନ ସଦୃଶ ଅଶ୍ୱ ଗମନ କରନ୍ତି ।
କୁରୁସୈନ୍ୟ ସମରକୁ ସେ ଶୋଭା ପାଇଲା
ଶ୍ରୀକୃଷ୍ଣ ସାରଥି ଜଗଜ୍ଜନଙ୍କୁ ମୋହିଲା ।
ପବନହୁଁ ବେଗେ ଅଶ୍ୱ ଶୂନ୍ୟମାର୍ଗେ ଗମି
ଧାଡିକାରେ ପ୍ରବେଶିଲେ ଯହିଁ ରଣଭୂମି ।
ବହୁ ଆଡ଼ମ୍ବରେ ଛନ୍ତି କୌରବ ସଇନ
ସିଂହଘୋଷ ଜଣି ଶୁଭେ ତାଙ୍କ ମୁଖଧ୍ୱନି ।
ଉତ୍ତର ଦିଗେ ଚୌଷଷ୍ଠି ସହସ୍ର ନୃପତି
ରହିଛନ୍ତି ଅଶ୍ୱ ଗଜ ଅନେକ ପଦାତି ।
ପଶ୍ଚିମ ଦିଗରେ ପଞ୍ଚବିଂଶସହସ୍ର ରାଜା
ବିଜାବନ୍ତ ସମାଗେ ହେ ରହି ବୀରବାଜା ।
ଦକ୍ଷିଣ ଦିଗରୁ ସାତସହସ୍ର ଦଣ୍ଡଧାରୀ
ସୈନ୍ୟ ଘେନି ଆସନ୍ତି ସେ ଯୁଦ୍ଧେ ଅଗ୍ରସରି ।
ପଚିଶ ସହସ୍ର ରାଜା ପୂର୍ବରୁ ଆଇଲେ
ସମର କ୍ଷେତ୍ରରେ ସର୍ବେ ପ୍ରବେଶ ହୋଇଲେ ।
ବାଜେ ଢମକ ମହୁରୀ ବୀରତୂରି ଭେରୀ
ଆକାଶ ଉଚ୍ଛୁଳେ ଦୋହଲଇ ମେରୁ ଗିରି ।
କୌରବ ପକ୍ଷେ ସତୁରିସହସ୍ର ଗଲେ ରାଜା
ଜାଣି ଦୁର୍ଯ୍ୟୋଧନ କଲା ସେମାନଙ୍କୁ ପୂଜା ।
ଚଉରଗୋଟି ଊଣା ତିଂଶସହସ୍ର ନୃପତି
ଏତେକ ରାଜା ଆଇଲେ ପାଣ୍ଡବଙ୍କ କତି ।
ପୂର୍ବେ ପାଣ୍ଡବେ ପଶ୍ଚିମେ ମାନଚକ୍ରବର୍ତ୍ତୀ
ଏରୂପେ କୁରୁ ପାଣ୍ଡବେ କଲେ ତହିଁ ସ୍ଥିତି ।
ଏହି ସମୟେ କଳିଙ୍ଗସେନ ନରପତି
ନବସହସ୍ର ହସ୍ତୀ ନବକ୍ଷଉଣୀ ପଦାତି ।
ଇନ୍ଦ୍ରଦେବଙ୍କ ସମାନ ଦିଶେ ବଡ଼ଶୋଭା
ସଇନ୍ୟ ଘେନିଣ ସେହି ମଧ୍ୟେ ହେଲା ଉଭା ।
ଭୁଜେ ବୀରନେତ ବାନ୍ଧି ଚଢ଼ି ଶ୍ୱେତକରୀ
ଶତେଭାର ଗଦାହାୟୁ ଘେନି କରେ ଧରି ।
ଦୁଇଦଳ ମଧ୍ୟେ ରହି ବୋଲେ ନରପତି
ନଲକ୍ଷ କୁଞ୍ଜର ମୋର ନକ୍ଷୌଣୀ ପଦାତି ।
ହେ କୁରୁ ପାଣ୍ଡବେ ତୁମ୍ଭେ ବେନି ଚକ୍ରବର୍ତ୍ତୀ
ବିବାଦ କରିବା ପାଇଁ ବଳାଇଛ ମତି ।
ବର୍ତ୍ତମାନ କହ ମୋତେ ଦୁଇ ନରଈଶ
ଯାର ବଳ ଊଣାଥିବ ଯିବି ତାର ପାଶ ।
କଉରବେ ସମସ୍ୟା ନ ଦେଲେ ତାଙ୍କୁ କେହି
ଉଭୟ ବଳ ମଧ୍ୟରେ କଳିଙ୍ଗ ଅଛଇ ।
ପାଣ୍ଡବ ସୁନ୍ଦର ଭୀମ ଶୁଣି କଲା କୋପ
ବୋଇଲା କେତେ ଆରମ୍ଭେ ଦେଖାଉଛୁ ଦର୍ପ
ଝିରିରିକାର ଶବ୍ଦ ଯହୁଁ କରିଲା ପାବନ
କୌରବ ପକ୍ଷେ କଳିଙ୍ଗ ସୈନ୍ୟ ଗଲା ଘେନି
ତାକୁ ଦେଖି ପ୍ରତିବାକ୍ୟ ଦେଲେ ନାରାୟଣ
ହେ ଭୀମ କେବେ ନ ଗଲା ତୋର ଦୁଷ୍ଟପଣ
କ୍ଷଣମାତ୍ର ଯେବେ ଥାନ୍ତୁ ଭୁଜି ଭୁଜ ହୋଇ
କଳିଙ୍ଗସେନ ଆମ୍ଭର ପକ୍ଷ ଥାନ୍ତା ହୋଇ ।

ନକ୍ଷୌଣୀ ବଳ ପାଆନ୍ତି ନଲକ୍ଷ କୁଞ୍ଜର
ଆବର ବିଶେଷେ ସେହି ଅଟେ ମହାବୀର ।
କୁବେର ସମାନ ସେହୁ ଅଟେ ମହାରାଜା
ଯୁଧିଷ୍ଠିର ଦେବଙ୍କୁ ସେ କରିଥାନ୍ତି ପୂଜା ।
ଏ ସମସ୍ତେ ବୋଇଲେକ ଦେବ ଯୁଧିଷ୍ଠିର
ଆଦ୍ୟନ୍ତୁଁ ମନ୍ଦ ପ୍ରକୃତି ଅଟଇ ଭୀମର ।
ସାନ ବେଳରୁ ଆଖଡ଼ା ଶାଳରେ ପଶଇ
ବେନି ଗଦା ବୁଲାଇଣ ଭୂମି ଆକର୍ଷଇ ।
ବୋଲେ କାହିଁ ପିଟିବଇଁ ମୋର ଏହି ଗଦା
ପର୍ବତେ ପିଟିଲେ ଭଙ୍ଗି ହେବ ସେହି ପଦା ।
ପୃଥିବୀରେ ପ୍ରହାର ମୁଁ କରିବଇଁ ଯେବେ
ବସୁନ୍ଧରା ରସାତଳେ ପଶିଯିବ ତେବେ ।
ଦେବ ଦାନବ ମାନବ ନ ସହନ୍ତି କେହି
ଧୃତରାଷ୍ଟ୍ର ପୁଅପାଇଁ ଏହା ଅଛି ବହି ।
ଏହା କହି ଗଦାକୁ ସେ ବେଗେ ସଂହରଇ
ଏ କଥା ଧୃତରାଷ୍ଟ୍ରର ଆଗରେ କହଇ ।
ଏହା ଦୁଷ୍ଟପଣେ ମୋତେ ନ କଲେ ସୁହାଗ
ରାଜ୍ୟରୁ ବାହାର କରିଦେଲେ ବନମାର୍ଗ ।
ଏହାକୁ ମାରିବାପାଇଁ ବହୁତ ପାଞ୍ଚିଲେ
ମାରିବାପାଇଁ ଏହାକୁ ବିଷଲଡ଼ୁ ଦେଲେ ।
ଭୀମ ସକାଶରୁ ଜଉଘର ପୋଡ଼ିଦେଲେ
ଅନୁଗ୍ରହ କରି ଦାଦି ଆମ୍ଭଙ୍କୁ ତାରିଲେ ।
ଏହାକୁ ଯେବେ କୁମ୍ଭୀର ଜଳେ ଖାଇଥାନ୍ତା
ଏତେ ପ୍ରମାଦ ଆମ୍ଭଙ୍କୁ କିପାଇଁ ପଡ଼ନ୍ତା ।
ଯୁଧିଷ୍ଠି ମୁଖୁ ନିଷ୍ଠୁର ବାକ୍ୟ ଭୀମ ଶୁଣି
କ୍ରୋଧଭରେ ଉଠିଲାକ ଗଦାବର ଘେନି ।
ବୋଇଲା ଏତେ ସନ୍ତାପ କର କିପାଁ ରାୟେ
କଳିଙ୍ଗସେନ ଘୁରକୁ ଏତେ ମନେ ଭୟେ ।
ସେ କଳିଙ୍ଗ ରହିଥିବ ଯେଉଁ ପାରୁଶରେ
ସେ ପାଖ ହୋଇଲା ଏବେ ମୋହର ଭାଗରେ ।
ଗୋବିନ୍ଦ ବୋଇଲେ ତାର ନଲକ୍ଷ କୁଞ୍ଜର
ନବକ୍ଷଉଣୀ ତ ସୈନ୍ୟ ଶତେକ କୁମର ।
ଏତେ ସୈନ୍ୟ ତାର ଏକା କି କରିବୁ ତୁହି
ତୋତେ ମାରିବ ସମସ୍ତ ସଇନ ବେଢ଼ାଇ ।
ଭୀମସେନ ବୋଲେ ନାଥ ହୋଇଥିବୁ ସଖା
କଳିଙ୍ଗ ସୈନ୍ୟ ଆଦିଙ୍କୁ ଦଳିଦେବି ଏକା ।

ଟରେ ନ ବର୍ତ୍ତିବ କିବା ଖଡ୍‌ଗେ ନ ଛେଦିବ
ମାଲ୍ଲଯୁଦ୍ଧେ ନ ମାରିବ ଗଦା ନ ପିଟିବ ।
ଏ ବାଆନ ହାର ଗଦା ବୁଲାଇଣ ହସ୍ତେ
ଉଡ଼ାଇବ ତାର ଗଜ ସୈନ୍ୟ ଶୂନ୍ୟପଥେ ।
ବଡ଼ବାଅନଳ ମଧ୍ୟେ ପଡ଼ିବେ ସେ ଉଡ଼ି
ସମସ୍ତେ ମରିବେ ସେହି ଅଗ୍ନି ମଧ୍ୟେ ପଡ଼ି ।
ଏ କଥା ଯଦ୍ୟପି ମୁହିଁ ନ ପାରିବି କରି
ତୋ ପାଦ ପଦ୍ମରେ ଦେବ ହେବି ଦ୍ରୋହକାରୀ
ବୃକୋଦର ମୁଖୁଁ ଏହି ଦୃଢ଼ବାକ୍ୟ ଶୁଣି
ସାଧୁ ସାଧୁ କହି କୃଷ୍ଣ କଲେ ଶଙ୍ଖଧ୍ୱନି ।
ଅତି ଆନନ୍ଦିତ ହେଲେ ଦେବ ମଧୁରିପୁ
କେଶରୀ ପ୍ରାପ୍ତ ହରଇ ଭୀମସେନ ବପୁ ।
ବହୁତ ପ୍ରତିଜ୍ଞା ତାର ଶୁଭେ ତଉପାଶେ
ନାଶକର ଦେବ କର୍ମେ ରହିଣ ଆକାଶେ ।
ଉଭୟ ବଳ ପ୍ରବେଶ ସମର ଭୂମିରେ
ମାନଗୋବିନ୍ଦ ପୁଚ୍ଛଇ ଭୀଷ୍ମଙ୍କ ପାଖରେ ।
ହେ ପିତା ଏ କୁରୁସୈନ୍ୟ ପାଣ୍ଡବ ସୈନ୍ୟଙ୍କୁ
ମଧ୍ୟରେ କେ ଅଛୁ ଏତେ ବଳ ଜିଣିବାକୁ ।
ବଦନ୍ତି ଗାଙ୍ଗେୟ ଶୁଣ ବାବୁ କୁରୁରାଣ
ବେନିଥାଟ ଏକାଦିନେ ଜିଣିପାରେ ଦ୍ରୋଣ ।
ଏ ବେନି ସୈନ୍ୟଙ୍କୁ ପାଞ୍ଚଦିନେ ବୀର କର୍ଣ୍ଣ
ଯୁଦ୍ଧରେ କରିପାରଇ ଏହାଙ୍କୁ ନିଧନ ।
ଏ ବେନି ଥାଟ ଯଦ୍ୟପି ଥିବେ ହୋଇ ମେଳ
ସପତ ଦିନରେ ଜିଣିପାରେ ରାଜା ଶଲ୍ୟ ।
ବେନି ବଳ ସନ୍ଧିତରେ ଥିବେ ସର୍ବ ନୃପ
ଏକଦିନେ ଜିଣିବାକୁ ମୋର ଅଛି ଦର୍ପ ।
ଏ ବେନି ଥାଟକୁ ଏକା ଅଶ୍ୱତ୍ଥାମା ରଥୀ
ଏକା ନିଃଶ୍ୱାସକେ ବଧକରି ସେ ପାରନ୍ତି ।
ଉଭୟ ସୈନ୍ୟ ଏକତ୍ର ହୋଇଲେ ଅର୍ଜ୍ଜୁନ
ଅର୍ଦ୍ଧ ନିଃଶ୍ୱାସକେ କରି ପାରଇ ନିଧନ ।
ଶୁଣିଣ ଆଶ୍ଚର୍ଯ୍ୟ ହେଲା ସେ ମାନଗୋବିନ୍ଦ
ହୃଦୟରେ ମହାରାଜା ଲଭିଲା ବିଷାଦ ।
କିମ୍ଭୂତ କାରଣେ ତାତ ବୋଲ ଏଡ଼େ କଥା
ଦ୍ରୋଣଠାରୁ ଶିଖି ପାର୍ଥ ଏଡ଼େକ କ୍ଷମତା ।
ଭୀଷ୍ମ ବୋଇଲେ ଅର୍ଜ୍ଜୁନ ଧନୁକୁ ଧରନ୍ତେ
ଙମା ଗାଣ୍ଡ କମ୍ପନ ହୁଏ ନାରଚ ଯୋଡନ୍ତେ ।

ପାର୍ଥ ଧନୁ ଧରୁଁ ଦ୍ରୋଣ ଦ୍ରୌଣି ଯେ ଥରଇ
କୃତବର୍ମା ଶଲ୍ୟଙ୍କର ସର୍ବାଙ୍ଗ କମ୍ପଇ ।
ପାର୍ଥ ଧନୁ ଧରୁ ଜାନୁ କମ୍ପଇ କର୍ଣ୍ଣର
ସମରରେ ନିସ୍ତମ୍ଭ ସେ ପାର୍ଥ ଧନୁର୍ଦ୍ଧର ।
ଯୋଦ୍ଧାମଧ୍ୟେ ଶ୍ରେଷ୍ଠ ସେହି ଅଟେ ସବ୍ୟସାଚୀ
ତାହା ତୁଲ୍ୟ ତିନିଲୋକେ କେବା ସମ ଅଛି ।
ଭୀଷ୍ମବାକ୍ୟ ଶୁଣି ଦୁର୍ଯ୍ୟୋଧନ ହେଲା ଭୀତ
ବଡ଼ ଦୁରପଦ କଥା କହିଲ ହେ ତାତ ।
ଦୁର୍ଯ୍ୟୋଧନର ଆତଙ୍କ ଗାଙ୍ଗେୟ ଜାଣିଲେ
ପ୍ରତିଜ୍ଞା କରିଣ ପୁଣି ତାହାକୁ କହିଲେ ।
ଶୁଣ କଉରବପତି ଆମ୍ଭ ଦୃଢ଼ ବାକ୍ୟ
ମୋତେ ଦ୍ରୋଣଙ୍କୁ ଯୁଦ୍ଧରେ ହେବ ତା ଅଶକ୍ୟ
ନିଶ୍ଚୟ ଆଜ୍ଞା ସଦ୍ୟପି ଦେବୁ କୁରୁପତି
ପାଣ୍ଡବମାନଙ୍କୁ ରାଜା ଆମ୍ଭର କି ଭୀତି ।
ସବୁଙ୍କୁ ନାଶିବି କରି ଦଶଦିନ ରଣ
କେମନ୍ତେ ରଖିବେ ତାଙ୍କୁ ପୁରୁଷ ଉତ୍ତମ ।
ଏମନ୍ତେ କହି ପ୍ରତିଜ୍ଞା କରି ଗଙ୍ଗାସୁତ
ବୋଧ କରିଦେଲେ ମାନଗୋବିନ୍ଦର ଚିତ୍ତ ।
ଜୟ ଜୟ ନାରାୟଣ ଜଗତର ପିତା
ଜୟ ଜୟ ନାରାୟଣ ଗତିମୁକ୍ତି ଦାତା ।
ଜୟ ଜୟ ନାରାୟଣ ଜଗତର ବନ୍ଧୁ
ଜୟ ଜୟ ନାରାୟଣ ଜୟ କୃପାସିନ୍ଧୁ ।
ଜୟ ଜୟ ନାରାୟଣ ଶଙ୍ଖ ଚକ୍ରଧାରୀ
ଜୟ ଜୟ ନାରାୟଣ ଭକ୍ତ ହିତକାରୀ ।
ଗରୁଡ଼ବାହନ ନାଥ ଶରଣ ରକ୍ଷଣ
ଦୁଃଖିଜନମାନଙ୍କର ଦୁଃଖ ନିବାରଣ ।
ଶାରଳା ଦାସ ମୁଁ ତୋର ଭୃତ୍ୟଙ୍କର ଦାସ
କୃପା କରି ପୂର୍ଣ୍ଣକର ମୋର ଅଭିଳାଷ ।



## ଶ୍ରୀକୃଷ୍ଣଙ୍କ ଦ୍ୱାରା କରାତସେନର ଶିରଚ୍ଛେଦ

ପୁନରପି ପୃଚ୍ଛାକଲେ ବଳଙ୍କାଧିପତି
ଅଗସ୍ତି ମୁନିଙ୍କ ପାଦେ କରିଣ ପ୍ରଣତି ।
ହେ ମୁନିଙ୍କ ତପିବର କର ଅନୁଗ୍ରହ
ଅତଃପର ହେଲା ଯାହା ଦୟାକରି କହ ।
ଭୀଷ୍ମ ବାକ୍ୟେ ଦୁର୍ଯ୍ୟୋଧନ ଆନନ୍ଦିତ ହେଲା
ସମର କ୍ଷେତ୍ରରେ ପୁଣି କେଉଁ କୃତ୍ୟ କଲା ।
ଯୁଦ୍ଧ ଲାଗିଲା କି ପୁଣ ହେଲା କେଉଁ କଥା
ତାହା ପ୍ରକାଶ କରିଣ ତେଜ ମନୁ ବ୍ୟଥା ।
ଅଗସ୍ତି କହିଲେ ଶୁଣ ମନୁ ନରପତି
ଭୀଷ୍ମ ବାକ୍ୟେ ବୋଧହେଲା ମାନଚକ୍ରବର୍ତ୍ତୀ ।
ଉଭୟ ଦଳ ସଇନ ଏକାଠାବେ ଛନ୍ତି
ଏ ସମୟେ ପ୍ରବେଶିଲା କରାତ ନୃପତି ।
ସଙ୍ଗରେ ଅଛନ୍ତି ତାର ସଇନ ଅପାର
ମଧ୍ୟେ ମିଳି ଦୁର୍ଯ୍ୟୋଧନେ କହିଲା ଶବର ।
ମୋତେ ସେନାପତି କର ଆହୋ ଦୁର୍ଯ୍ୟୋଧନ
ଏକା ଶରେ ଜିଣିବି ମୁଁ ଶ୍ରୀକୃଷ୍ଣ ଅର୍ଜ୍ଜୁନ ।
ଦୁର୍ଯ୍ୟୋଧନ ବୋଲେ ତୁହି ରାଜେଶ୍ୱର ନୋହୁ
କରାତ ହୋଇଣ କିପାଁ ଏଡ଼େ କଥା କହୁ ।
ତାମଣା କାଠର ଧନୁ ଅଛି ତୋର ହସ୍ତେ
ଫିରିକ ହିଶର ଧରି ପ୍ରତିଜ୍ଞା ତୋ ଏତେ ।
କରାତ ବୋଲେ ଯୁଝିଲେ ମୁହିଁ ଏକକ୍ଷଣେ
ତ୍ରୈଲୋକ୍ୟକୁ ଜିଣିପାରେ ମୁହିଁ ଏକା ଜଣେ ।
ତିନିଗୋଟି ନାରାଚ ମୋ ତିନି ଜଗତକୁ
ଧ୍ୱଂସକରି ନାଶିପାରେ ଦେବ ଦାନବଙ୍କୁ ।
ଦୁର୍ଯ୍ୟୋଧନ ବୋଲେ କରୁ ପ୍ରତିଜ୍ଞା ଅପାର
ତୋପର କ୍ଷତ୍ରିୟ ଯୋଗ୍ୟ ନୋହିବ ମୋହର
ଜିଣି ନ ପାରିବ ଯେବେ ପାଣ୍ଡବଙ୍କୁ ମୁହିଁ
ତେବେ ତୋ ଶିରେ ମୁକୁଟ ଜାଣ ବାନ୍ଧିବଇଁ
ଅନିବାର ହସ୍ତ ଅବରଣୀୟ ମଧ୍ୟସ୍ଥ
ଅର୍ଥହୀନ କ୍ଷତ୍ରିୟ ଯେ ଆଉ ଶଠ ମିତ୍ର ।
ଅସତୀ ଭାରଯା ପୁଣି ବିବାଦୀ ଯେ ଭାଇ,
ଏହି ଲୋକମାନଙ୍କୁ ଯେ ବିଶ୍ୱାସ ନ ଯାଇ ।
ଯୁଜରେ ମଧୁପିଙ୍ଗଳ ଅଟୁ ମୂଢ଼ ଜାତି
ନୀଚଲୋକ ସଙ୍ଗେ ଆମ୍ଭେ ନ କରୁ ଯେ ପ୍ରୀତି ।
ଚଳିଲା କରାତ ତହୁଁ କଟୁବାକ୍ୟ ଶୁଣି
ଫେର ପୁନଶ୍ଚ ବୋଇଲା ଶୁଣ କୁରୁମଣି ।
ମୋତେ ଯେବେ ସେନାପତି କରିଥାନ୍ତୁ ତୁହି
କ୍ଷଣକରେ ପାଣ୍ଡବଙ୍କୁ ବଧିଥାନ୍ତି ମୁହିଁ ।
କର୍ମ ତୋର ମନ୍ଦ ମୋତେ କଲୁ ଅନାଦର
ଏହା କହିଣ ଚଳିଲା କରାତ ଈଶ୍ୱର ।

ଅଗସ୍ତ୍ୟଙ୍କି ବୈବସ୍ୱତ ମନୁ କଲେ ପୃଚ୍ଛା
କବଚ ପାଣ୍ଡବେ କପାଁ କଲ ବୈରି ବାଞ୍ଛା
ଅଗସ୍ତି କହିଲେ ଶୁଣ ତ୍ରେତାଯୁଗ କଥା
ଶ୍ରୀରାମଚନ୍ଦ୍ର ବଧିଲେ ବାଳି ବଳବନ୍ତା ।
ସେ ବାଳି ଉତ୍ପତ୍ତି ହେଲା ଦ୍ୱାପର ଯୁଗରେ
କବଚସେନ ନାମରେ ଖ୍ୟାତ ମର୍ତ୍ତ୍ୟପୁରେ ।
ସେ ଜନ୍ମ ବିବାଦ ହେତୁ ବୈରି ପଣକଲା
କୃଷ୍ଣାଦି ବଧିବା କୁରୁପକ୍ଷ ହୋଇଥିଲା ।
ଜରା ନାମରେ ଅଙ୍ଗଦ ଅଛି ଏହା ସୁତ
ତାହାର ହସ୍ତରେ ବଧ ହେବେ ଯଦୁନାଥ ।
ବରଣ ନ କଲା ତହୁଁ ମାନଚକ୍ରବର୍ତ୍ତୀ
ପିତାପୁତ୍ର ପ୍ରବେଶିଲେ ପାଣ୍ଡବଙ୍କ କତି ।
ଅତି ବଳବାନ ଅଟେ କବଚ ଈଶ୍ୱର
ଯୁଧିଷ୍ଠିର ପାଶେ ମିଳି କଲା ନମସ୍କାର ।
ସନ୍ନିଧିରେ ଉଭା ହୋନ୍ତେ ସେହୁ ବେନି କ୍ଷତ୍ରୀ
ଯୁଧିଷ୍ଠି କୁଶଳ ବାର୍ତ୍ତା ତାକୁ ପଚାରନ୍ତି ।
କେବଣ ଦେଶର ରାଜା ଆସିଛ କି ଅର୍ଥେ
ଦୁଇଜଣ ଆସିଅଛ କପାଁ ଯୁଦ୍ଧକ୍ଷେତ୍ରେ ।
କବଚ ଈଶ୍ୱର ବୋଲେ ଶୁଣ ଦେବ ଧର୍ମ
ବସୁଶବର ଗୋତ୍ରେ ମୁଁ ହୋଇଅଛି ଜନ୍ମ ।
ବହିରୁ ଅରଣ୍ୟେ ଆମ୍ଭେ ସଂଗ୍ରାମରେ ଇଚ୍ଛା
ଯେତ୍ହୁ ହରିବ ଆମ୍ଭଙ୍କୁ ପୂରାଇବୁ ବାଞ୍ଛା ।
ଦୁଷ୍ଟ ନିସୂଦନ ଆମ୍ଭେ ଅଟୁ ଦର୍ପ ଗଞ୍ଜା
କଉଶିକ ଅରଣ୍ୟର ଆମ୍ଭେ ଅଟୁ ରାଜା ।
ତୁମ୍ଭର କୌରବଙ୍କର ଯୁଦ୍ଧ କଥା ଶୁଣି
ଯୁଦ୍ଧ ଇଚ୍ଛି ଆଗମନ କଲୁ ନୃପମଣି ।
ଯେବେ ଧନ ସମ୍ପଦରେ ଅଛି ତୋର ଇଚ୍ଛା
ମୋ ଶିରେ ମୁକୁଟ ବାନ୍ଧି ପୂର ମନୋବାଞ୍ଛା
କବଚସେନ ମୁଖରୁ ଏହି ବାକ୍ୟ ଶୁଣି
ଉପହାସେ ବୋଇଲେକ ଭୀମ ବୀରମଣି ।
କବଚ ଅଛିବ ତୁମ୍ଭେ ଅଟ ମ୍ଲେଚ୍ଛଜାତି
ଏ ରଣକ୍ଷେତ୍ରରେ ତୁମ୍ଭେ କାହିଁ ଅଟ କ୍ଷତ୍ରୀ ।
ସ୍ୱର୍ଗେ ଇନ୍ଦ୍ର ଶଙ୍କାକରେ ଯେ ଧନୁ ଧଇଲେ
କି ଯୁଦ୍ଧ କରିବ ଭୀଷ୍ମ ଦ୍ରୋଣଙ୍କର ତୁଲେ ।
ଅଛନ୍ତି ଯୋଦ୍ଧାଏ ଏଥେ ଅଷ୍ଟାଦଶ ବଂଶୀ
କିସ ପ୍ରୟୋଜନ ତୁମ୍ଭେ ଅବରଣେ ଆସି ।

ବୋଲଇ କବଚେଶ୍ୱର ଶୁଣ ହେ ମାରୁତି
ନିଜ ପ୍ରତିଜ୍ଞା କରିବା ନୁହଇ ଯୁକତି ।
ଏମନ୍ତ ଭୀମଙ୍କୁ କହି କବଚ ରାଜନ
ଯୁଧିଷ୍ଠିରଙ୍କୁ ଅନାଇଁ କହଇ ଏସନ ।
ମୋର ଅଛି ତିନିଗୋଟି ଫିରଙ୍ଗ ନାରାଚ
ଗୋଟିକେ ଆକାଶେ ଜିଣି ପାରେ ଦେବରାଜ
ଦ୍ୱିତୀୟ ନାରାଚେ ନାଗଲୋକ ପାରେ ଜିଣି
ତୃତୀୟ ଶରରେ ମର୍ତ୍ତ୍ୟ କାହାକୁ ନ ଗଣି ।
ଏ ବଧିରେ ତିନିଶର ତିନି ଭୁବନକୁ
ଅଛି ତୁମ୍ଭ ସେନାପତି କର ହୋ ଆମ୍ଭଙ୍କୁ ।
ଯୁଧିଷ୍ଠିର ବୋଇଲେକ ତୋ ପ୍ରତିଜ୍ଞା ସତ୍ୟ
ତୋତେ ସେନାପତି କରି ନୁହଇ ଉଚିତ ।
ଆପଣା ବାହୁବଳେ ଯେ ଶତ୍ରୁକୁ ସାଧଇ
ସକଳ ସ୍ଥାନରେ ସେହି ପରଶଂସା ପାଇ ।
ଏକଇ ସୋଦର ଆମ୍ଭେ ହେଲୁ ଭିନ୍ନ ଭିନ୍ନ
ଅନ୍ୟ ଯୋଦ୍ଧାର କାରଣେ କିସ ପ୍ରୟୋଜନ
ବାହୁଡ଼ିଲେ ନାସ୍ତି ବାକ୍ୟ ଶୁଣି ଦୁଇଜଣ
ଯାଆନ୍ତେ ଦେଖିଲେ ବାଟେ ହରି ଅରଜୁନ ।
ଗୋବିନ୍ଦ ବୋଇଲେ ତୁମ୍ଭ ଘର ଅଟେ କାହିଁ
ମର୍ତ୍ତ୍ୟ ମଣ୍ଡଳେ ତୁମ୍ଭଙ୍କୁ କାହିଁ ଦେଖିନାହିଁ ।
ଶ୍ରୀକୃଷ୍ଣଙ୍କୁ ଚିହ୍ନି ସେହି କବଚର ରାଜା
ପ୍ରଣିପାତ କରି ତାଙ୍କ ପାଦେ କଲେ ପୂଜା ।
ବୋଲେ ଆସିଥିଲି କୁରୁବଂଶ ନାଶ ଅର୍ଥେ
ପାଣ୍ଡବେ ବାନ୍ଧିଲେ ନାହିଁ ମୁକୁଟ ମୋ ମାଥେ
ତ୍ରୈଲୋକ୍ୟ ଜିଣିବାକୁ ମୁଁ ଅଟେ ସାମରଥ
ପଣ୍ଡୁପୁତ୍ରେ ନ ଜାଣନ୍ତି ମୋହର ସାମର୍ଥ୍ୟ ।
ଭାରତଯୁଦ୍ଧେ ଦେଖାନ୍ତି କ୍ଷମତା ମୋହର
ଏକା ନାରାଚେ ଜିଣନ୍ତି ମୁହିଁ ମର୍ତ୍ତ୍ୟପୁର ।
ସପତ ବ୍ରହ୍ମାଣ୍ଡ ଏକା ଜିଣି ମୁଁ ପାରଇ
ଜରା କବଚ ଆମ୍ଭେ ହୋ ପିତା ପୁତ୍ର ଦୁଇ ।
ଏ ଲକ୍ଷେ ରାଜାଙ୍କୁ ମୁହିଁ ଏକା ଜିଣିପାରେ
ପାଣ୍ଡବେ ମୁକୁଟ ମୋର ନ ବାନ୍ଧିଲେ ଶିରେ
କବଚ ମୁଖରୁ ବାକ୍ୟ ଏସନକ ଶୁଣି
ହୃଦୟରେ ଚିନ୍ତାକଲେ ପ୍ରଭୁ ଚକ୍ରପାଣି ।
ଅର୍ଜ୍ଜୁନର ତୁଲେ ହରି ଏକାନ୍ତରେ ଭାଳ
ସେନାପତି ନ କରିବେ କବଚ ଯେ ଚଳ ।

ନ ପୁଣ ମାନଗୋବନ୍ଦ କରେ ସେନାପତି
ଏ ମହୀମଣ୍ଡଳେ ନାହିଁ ଏହା ସମ ଯକ୍ଷୀ ।
ଅର୍ଜୁନ ବୋଇଲେ ହରି ତୁମ୍ଭ ସର୍ବଜ୍ଞତା
ଏ ସଂସାର ସାଗରେ ତୁ ଏକମାତ୍ର କର୍ତ୍ତା ।
ତୋହର ଆଶ୍ରୟେ ଆମ୍ଭେ ବଞ୍ଚୁ ସର୍ବକାଳ
ଏଥକୁ ଶୀଘ୍ର ଉପାୟ କର ଆଦିମୂଳ ।
ଯା ଶୁଣି କିରାତେ ହରି ପାଶକୁ ହକାରି
ବୋଇଲେ କିଛି ମାଗିବ ତୋତେ ଦଣ୍ଡଧାରୀ
ସତ୍ୟକରି କହ ଯେବେ ତୁମ୍ଭ ତାହା ଦେବୁ
ଆମ୍ଭେ ତୋର ମନୋବାଞ୍ଛା ପୂର୍ଣ୍ଣ ଯେ କରିବୁ
କିରାତେଶ୍ୱର ବୋଇଲା ସତ୍ୟ ସତ୍ୟ ମୋର
ଯାହା ମାଗିବ ନିଶ୍ଚୟ ଦେବି ଚକ୍ରଧର ।
ତଳ ହସ୍ତରେ ମାଗିଲେ ତାକୁ ଜଗନ୍ନାଥେ
ତୋ ଶିରକମଳ କାଟିଦେବୁ ମୋର ହସ୍ତେ ।
କିରାତ ବୋଇଲା ଦେବ ସତ୍ୟ ମୋର ବାଣୀ
ଆପଣା ଶ୍ରୀହସ୍ତେ ପ୍ରଭୁ ମୋତେ ପକା ହାଣି ।
ବସିଲା କିରାତେଶ୍ୱର କରି ପଦ୍ମାସନ
ହୃଦଗତେ ଚିନ୍ତାକରି ଦେବ ନାରାୟଣ ।
ଶ୍ରୀ ଭୁଜରେ ସୁଦର୍ଶନ ଧରି ଦେବହରି
କିରାତସେନ ରଜାର ବେକରେ ପ୍ରହାରି ।
ବେକଖଣ୍ଡ ହୋଇ ତାର ପଡ଼ିଲାକ ଶିର
ନାରାୟଣ ମୁଖ ଚାହିଁ କରଇ ଉତ୍ତର ।
ସ୍ୱାମି ତ୍ରେତାୟୁଗେ ତୁମ୍ଭେ ରାମ ଅବତାରେ
ବିଷ୍ଣୁ ଅଂଶେ ଜନମିଲ ଦଶରଥ ଘରେ ।
ବନବାସେ ସୀତା ହରିନେଲା ଲଙ୍କନାଥ
ସୀତା ଆଣି ରାବଣକୁ କଲ ପ୍ରଭୁ ହତ ।
ମୁହିଁ କିଷ୍କିନ୍ଧ୍ୟା ରାଜ୍ୟର ଅଟଇ ଯେ ରାଜ
ଏ ଜରା ଅଙ୍ଗଦ ଥିଲା ମୋହର ଆତ୍ମଜ ।
ସେ ଜନ୍ମରେ ମହାବଳୀ ବାଳି ମୁଁ ଅଟଇ
ମୋତେ ବଧିଲ ସୁଗ୍ରୀବ ସଙ୍ଗେ ମିତ୍ର ହୋଇ
ସେହି ଜନ୍ମେ ନ ଦେଖିଲି ଚକ୍ର ତବ ହସ୍ତେ
ଛନା ଯୁଦ୍ଧରେ ନାଶିଲେ ବାବଲସ୍ଥ ଘାତେ ।
ପୁଣି ଏ ଜନ୍ମେ ଭେଟିଲି ତୋତେ ଦେବରାଜ
ପ୍ରସନ୍ନେ ଛେଦିଲୁ ଦେବ ଚକ୍ରାଘାତେ ଆଜ ।
ଆଉ କଥା ଏକ ପ୍ରଭୁ ମାଗୁଅଛୁ ତୋତେ
ସ୍ଥିରେ ଜୀବ ଥିବ ଯୁଦ୍ଧ ଶେଷ ପରିଯନ୍ତେ ।
ଗୋବିନ୍ଦ ବୋଇଲେ ମୋର ନନ୍ଦଘୋଷେ ରହ
ମୂର୍ତ୍ତିମନ୍ତ ହୋଇଣ ତୁ ରଥରେ ଆରୋହ ।
ଯୁଗେ ଯୁଗେ ରହିଥିବୁ ଏ ମୋହର ରଥେ
ତୋହର ମୂର୍ତ୍ତି ଦେଖନ୍ତୁ ଜଗତେ ସମସ୍ତେ ।
ଏ ରଥ ମଧ୍ୟେ ଚାହିଁବ ଯେ ତୋହର ମୁଖ
ଆପଦ କ୍ଲେଶ ଖଣ୍ଡିବ ଯିବ ସର୍ବ ଦୁଃଖ ।
କୃଷ୍ଣ ଆଜ୍ଞାରେ କିରାତ ବ୍ୟାଧମୂଣ୍ଡ ଗୋଟି
ଗହୃତେଜ ଧରି ରଥପରେ ଗଲା ଉଠି ।
ପିତାର ନିଧନ ଦେଖି ଜରା ଚଳିଗଲା
ହରି ଉଦ୍ୟାନରେ ଯାଇ ସେ ବ୍ୟାଧ ରହିଲା ।
ଜୟ ହେ ଚନ୍ଦ୍ରଶେଖର ଦେବ ପଞ୍ଚାନନ
ଜୟ ହେ ଈଶାନ ଜୟ ଉମା ପ୍ରାଣଧନ ।
ଜୟ ହେ ତ୍ରିଶୂଳଧାରୀ ବୃଷଭ ଆସନ
ଜୟ ଜୟ ତ୍ରିଅମ୍ବକ ବିଭୂତି ଲେପନ ।
ସୁଖ ବଇଭୋଗ ତେଜି ଶ୍ମଶାନେ ବିହରି
ରତ୍ନ ଦ୍ରବ୍ୟ ତେଜି ହାଡ଼ ଭୂଷଣ ଆଦରି ।
ମହାଯୋଗେ ମଗ୍ନି ସଦା ଯୋଗ ଅଭ୍ୟାସିଲ
ତେଣୁ ଯୋଗ ଯୋଗୀ ମହାଯୋଗୀ ବୋଲାଇଲ
ତୁମ୍ଭର ଚରଣେ ଦେବ କରେ ପ୍ରଣିପାତ
ଶାରଳାଦାସର ପୂର୍ଣ୍ଣକର ମନୋରଥ ।



## କୁରୁ ସୈନ୍ୟଙ୍କ ଶର ପ୍ରୟୋଗ କରିବାକୁ ଅର୍ଜୁନଙ୍କ ଅନିଚ୍ଛା ଓ ଶ୍ରୀକୃଷ୍ଣଙ୍କର ପ୍ରବର୍ତ୍ତନା

ପୁନରପି ପୁଚ୍ଛାକଲେ ମନୁ ଦଣ୍ଡଧର
ହେ ଅଗସ୍ତି ତବ ପାଦେ କରେ ନମସ୍କାର ।
ସମର କ୍ଷେତ୍ରେ ଉଭୟ ଦଳ ଉପସ୍ଥିତ
ହେ ମହର୍ଷି କହ ପୁଣି ହେଲା କେଉଁ କୃତ୍ୟ
ତାହା ଶୁଣିବାକୁ ମନ ଅତି ଉତ୍ସାହିତ
କୃପାକରି ତାହା ମୋତେ କହ ତପୋବନ୍ତ ।
ଅଗସ୍ତି ବୋଇଲେ ଶୁଣ ବଳଙ୍କାଧିପତି
ସମର କ୍ଷେତ୍ରରେ ସର୍ବେ ଉପସ୍ଥିତ ଛନ୍ତି ।
ପୂର୍ବ ଦିଗରେ ପାଣ୍ଡବେ କୌରବେ ପଶ୍ଚିମେ
ଗଙ୍ଗାସୁତ ସେନାପତି ହୋଇଲେ ପ୍ରଥମେ ।

ମଧ୍ୟାହ୍ନ ସୂର୍ଯ୍ୟଙ୍କ ସମ ଭୀଷ୍ମଙ୍କର ମୂର୍ତ୍ତି
ଭୟରେ ପାଣ୍ଡବଦଳ ନ ପଶନ୍ତି କତି ।
ଅର୍ଜ୍ଜୁନର ମୁଖ ଚାହିଁ ବୋଇଲେ ଶ୍ରୀବତ୍ସ
ନାରାଚ ସନ୍ଧାନକର ଏଥର ଅବଶ୍ୟ ।
ଦେଖାଅ ପ୍ରତିଜ୍ଞା ତୋର ବଳବୀର୍ଯ୍ୟ ଗୁଣ
ଜୟ ଲାଭକର ଶୀଘ୍ର ଲଭ ରାଜ୍ୟ ଧନ ।
ଅର୍ଜ୍ଜୁନ ବୋଇଲେ ତହୁଁ ବେନିକର ଯୋଡ଼ି
ଭୀଷ୍ମଦେବ ଗୁରୁ ଆଗ ବାନ୍ଧନ୍ତୁ ସେ ବଡ଼ି ।
ଜଗିଛନ୍ତି ଏଥେ ସର୍ବ ରଥୀ ସେନାପତି
ଆଗେ ଶସ୍ତ୍ର ଛାଡ଼ଇ କେ ଦେଖ ହେ ଶ୍ରୀପତି ।
ଆଗେ ଯେବେ ଭୀଷ୍ମଦେବ ଲଙ୍ଘିବେ ସ୍ୱଧର୍ମ
ପଛେ ନାରାଚ ଛାଡ଼ିବି ହେ ପୁରୁଷୋତ୍ତମ ।
କୃଷ୍ଣ ବୋଇଲେ ଭାଗ ନ ଦେଲା କୁରୁପତି
ଯୁଦ୍ଧେ ଜୟୀ ହେଲେ ସିନା ଲଭିବ ଏ ପୃଥ୍ୱୀ
ଯେବେ ନେଲେ ସେ ରାଜ୍ୟଧନ ଆପଣା ସ୍ୱଇଚ୍ଛା
ତୁମ୍ଭଙ୍କୁ ଭାଗ ନ ଦେଲେ ହେଲ ତୁମ୍ଭେ ତୁଚ୍ଛ
ଆହେ ଅରଜୁନ ତୁମ୍ଭେ ଶର ଛାଡ଼ ଆଗେ
ଜ୍ୱାଳାବଳି ଶର ଛାଡ଼ ଭୀଷ୍ମଙ୍କୁ ସରାଗେ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ଚକ୍ରଧର
ବଡ଼ ଦୁରାପଦ ଆସି ପଡ଼ିଲା ଏଥର ।
ଧନୁ ଧର ଛାଡ଼ିବଇଁ କାହାକୁ ମୁଁ ଶର
ପ୍ରାଣସଖା ସେହିମାନେ ମୋହର ସୋଦର ।
ପ୍ରଥମେ ଭୀଷ୍ମ ଅଛନ୍ତି ଅସ୍ତ୍ର ଶସ୍ତ୍ର ଧର
ପିତାମହ ଗୁରୁଦେବ ଅତ୍ୟନ୍ତ ମୋହର ।
ତାଙ୍କ ପାଶେ ଅଛନ୍ତି ଯେ ଭରଦ୍ୱାଜ ସୁତ
ବାଳକାଳୁଁ ସ୍ନେହ ମୋତେ କରନ୍ତି ବହୁତ
ଅଶ୍ୱତ୍ଥାମାଠାରୁ ଭଲ ପାନ୍ତି ମୋତେ ଗୁରୁ
ଦୂର ନ କରନ୍ତି କ୍ଷଣେ ସେ ମୋତେ ପାଶରୁ
ପଶୁରାମ ବିଦ୍ୟା ଶିକ୍ଷା ଦେଲେ ସେ ଆମ୍ଭଙ୍କୁ
ମୁଁ କପର ଅସ୍ତ୍ରାଘାତ କରିବି ତାହାଙ୍କୁ ।
ତାହାଙ୍କର ସମୀପରେ ଅଛନ୍ତି କୃପବର୍ମା
ବେଦମନ୍ତ୍ରେ ନିର୍ଜ୍ଜିତ ସେ ଅତ୍ୟନ୍ତ ମହାତ୍ମା ।
ବ୍ରହ୍ମତେଜ ମୂର୍ତ୍ତି ଦିଶେ ଯାହାଙ୍କର ଅଙ୍ଗେ
ତାଙ୍କୁ ନାରାଚ ଛାଡ଼ିବି କପରି ମୁଁ ଆଗେ ।
ବ୍ରାହ୍ମଣକୁଳର ସେହୁ ଅତ୍ୟନ୍ତ ମହାତ୍ମା
ତାଙ୍କ ପାଶେ ଅଛନ୍ତି ଦ୍ରୋଣପୁତ୍ର ଅଶ୍ୱତ୍ଥାମା ।
ଅଭିନ୍ନ ସୁହୃଦ ମୋର ପ୍ରାଣ ପଞ୍ଚଭୂତ
କେମନ୍ତେ ଶର ଛାଡ଼ିବି ତାଙ୍କୁ ହେ ଅଚ୍ୟୁତ ।
ତାହାଙ୍କ ସନ୍ନିଧେ ଅଛନ୍ତି ଦେଖ ରାଜା ଶଲ୍ୟ
ଆମ୍ଭର ମାତୁଳ ସେହୁ ଯୁଦ୍ଧେ ମହାମଲ୍ଲ ।
ମାଦ୍ରୀଙ୍କ ଭ୍ରାତ ଅଶ୍ୱିନୀକୁମାରଙ୍କ ଶଳା
ନକୁଳ ସହଦେବଙ୍କ ଅତ୍ୟନ୍ତ ମଉଳା ।
କେତେବେଳେ ଭିନ୍ନସେହୁ ନ କରନ୍ତି ମୋତେ
ମୁହିଁ ନାରାଚ ଛାଡ଼ିବି ତାହାଙ୍କୁ କେମନ୍ତେ ।
ଅର୍ଜ୍ଜୁନ ବିମୁଖ ଦେଖି ଦେବ ନାରାୟଣ
ବୋଇଲେ ମାନଗୋବିନ୍ଦ ମଇଁ ଏ କର୍ଣ୍ଣ ।
ଏହାଙ୍କୁ ନାରାଚ ଲକ୍ଷ୍ୟକରି ଛାଡ଼ ପାର୍ଥ
କର୍ଣ୍ଣ ତହୁଁ ଉପୁଜିଛି ପ୍ରଥମ ଅନର୍ଥ ।
ପାର୍ଥ ବୋଇଲେ ଶୁଣିମା ଆହେ ଚକ୍ରଧର
ମାତା କୁନ୍ତୀଙ୍କ ଗର୍ଭରୁ କର୍ଣ୍ଣ ଅବତାର ।
ଆମ୍ଭର ଜ୍ୟେଷ୍ଠ ସୋଦର ଧର୍ମସମ ପିତା
ଆଦିତ୍ୟ ନନ୍ଦନ ସେହୁ ଆମ୍ଭ ଜ୍ୟେଷ୍ଠଭ୍ରାତା ।
ଅର୍ଥ ନିମନ୍ତେ କରେ ଯେ ସହୋଦର ହତ୍ୟା
ରୌରବ ନରକେ ତାକୁ ଫିଙ୍ଗେ ଯମରାଜା
ଗୋବିନ୍ଦ ବୋଇଲେ ତହୁଁ ଶୁଣ ବୀରପାର୍ଥ
ଶକୁନି ତହୁଁ ଆଜହୁଁ ଜନ୍ମିଲା ଅନର୍ଥ ।
ଉଭୟ କୁଳ ଦ୍ୱନ୍ଦ୍ୱର ମୂଳ ସେ ଶକୁନି
ପ୍ରଥମେ ତାହାକୁ ଶର ଛାଡ଼ ଫାଲଗୁନି ।
ସମରେ ଆଗ ଶକୁନି ଜାଣ ନାଶଗଲେ
କୁରୁ ପାଣ୍ଡବେ ନିର୍ଦ୍ଦନ୍ଦେ ରହିବେକ ଭଲେ ।
ଅର୍ଜ୍ଜୁନ ବୋଇଲେ ହରି ତୁମ୍ଭ ସବୁ ଜାଣୁ
ଚିନ୍ତାମଣି ନାମ ତୋର ସବୁ ପରମାଣୁ ।
କୃଷ୍ଣ ବୋଇଲେ ଶକୁନି ଥିଲାରୁ ଯା ଚତ୍ତେ
କୌରବ ବଂଶ ନାଶିବ ସେ ଆମ୍ଭର ହସ୍ତେ ।
ବଂଶନାଶ ଦୁର୍ଯ୍ୟୋଧନ କରିଛି ତାହାର
କେବଳ ଶକୁନି ତହୁଁ ରହିଲ ଉବୁର ।
ଦୁର୍ଯ୍ୟୋଧନ ବଂଶନାଶ କରାଇବା ଅର୍ଥେ
କଳ ଭିଆଇଛି ତୁମ୍ଭମାନଙ୍କ ସହିତେ ।
ଆନରେ ବଧ ନୋହିବ ଗାନ୍ଧାରୀ କୁମର
ଭବିଷ୍ୟତ କଥା ମୁହିଁ ଜାଣିଅଛି ବୀର ।
ଏ କପଟି ଶକୁନିକୁ ନ ବଧିବୁ ଯେବେ
କୌରବଠାରୁ ସମ୍ପତ୍ତି ନ ଲଭିବୁ କେବେ ।

ତହିଁପରେ ନାରାୟଣ କହନ୍ତି ଏସନ
ଯାହା ମୁହିଁ କହୁଅଛି ଶୁଣ ହେ ଅର୍ଜ୍ଜୁନ ।
ଆକାଶ ମାର୍ଗରେ ମୁହିଁ ବାହୁଅଛି ରଥ
ହେଳା ନ କର ସତ୍ୱରେ ଯୁଦ୍ଧ କର ପାର୍ଥ ।
ସମ୍ମୁଖେ ରହିଅଛନ୍ତି ଦେଖ ଶତେଭ୍ରାତ
ତାଙ୍କୁ ବଧି ଭୋଗକର ସୁଖେ ରାଜ୍ୟଅର୍ଥ ।
ଅର୍ଜ୍ଜୁନ ବୋଇଲେ ଦେବ ପାଣ୍ଡୁ ଧୃତରାଷ୍ଟ୍ର
ଏକ ପିତାଠାରୁ ଜାତ ଜ୍ୟେଷ୍ଠ ଓ କନିଷ୍ଠ ।
ତାହାଙ୍କର ପୁତ୍ର ଆମ୍ଭେ କୌରବ ପାଣ୍ଡବ
କି ନିମନ୍ତେ ଅନ୍ୟୋଅନ୍ୟ ହେବା ହେ କେଶବ
ଯେବଣ ନଗର ମୁହିଁ ଧରିଅଛି ହସ୍ତେ
ବନ୍ଧିଲେ କେହୁ ବର୍ତ୍ତିବ ଏ ତିନି ଜଗତେ ।
ନାରାଚ ବନ୍ଧ ବୃହିବ ମୁହିଁ କାହା ମୁଖ
ଅବାନ୍ଧବ ହୋଇ ମୋର କଏ ଅଛି ଦେଖ ।
ସୋଦରଙ୍କୁ ନାଶକରି କିସ ଯଶ ମୋର
ରାଜ୍ୟଭରେ କାର୍ଯ୍ୟ ମୋର ନାହିଁ ଚକ୍ରଧର ।
ଏମାନଙ୍କୁ ବଧିବ ମୁଁ ରାଜ୍ୟପ୍ରାପ୍ତି ଅର୍ଥେ
କେବଣ ଯଶ ପୌରୁଷ ମିଳିବଟି ମୋତେ ।
ତୁ ସ୍ୱାମୀ ଜଗତନାଥ ଈଶ୍ୱର ସ୍ୱା ମନେ
ବଡ଼ସୁଖେ ବଞ୍ଚୁଥିଲୁ ଆମ୍ଭେମାନେ ବନେ ।
କରିଲୁ ଅନେକ କାର୍ଯ୍ୟ ପିତୃକାର୍ଯ୍ୟ ଅର୍ଥେ
ନିରନ୍ତର ଥାଉ ଦେବ ଋଷିଙ୍କ ସଙ୍ଗତେ ।
ବହୁ ଦୈତ୍ୟ ବଧି ଉଶ୍ୱାସିଲୁ ମହୀଭାର
ପ୍ରସନ୍ନେ ପରମେଷ୍ଠୀ କହିଲେ ଅଙ୍ଗିର ।
କନ୍ଦମୂଳ ଦ୍ରାକ୍ଷା ଫଳମାନ ସଦା ଭକ୍ଷି
ବୁଲୁଥିଲୁ ବନେ ସୁଖେ ନିଜ ସତ୍ୟ ରକ୍ଷି ।
ପୁଣି ବନବାସେ ଯିବୁ ନ କରିଣ ଦ୍ୱନ୍ଦ୍ୱ
ସୋଦର ସଙ୍ଗରେ କିପାଁ କରିବୁ ବିବାଦ ।
ନ ମିଳୁ ରାଜ୍ୟ ପଛକେ ନ କରେ ସଂଗ୍ରାମ
ଏ ପାପଦ୍ୱନ୍ଦ୍ୱେ ନ ପଶେ ଆହେ ନରୋତ୍ତମ ।
ଅର୍ଜ୍ଜୁନ ମୁଖରୁ ଏହି ବଚନକୁ ଶୁଣି
ହୃଦଗତେ ବିଚାରିଲେ ଦେବ ଚକ୍ରପାଣି ।
କାର୍ଯ୍ୟର ଆରମ୍ଭକାଳେ ସୋଦରଙ୍କୁ ଚାହିଁ
ମାୟାମୋହେ ବଶୀଭୂତ ହେଲା ଫାଲଗୁନ ।
ମୋହ ତେଜ ସଂଗ୍ରାମେ ଏ ପଶିବ କେମନ୍ତେ
ଅର୍ଜ୍ଜୁନ ଭାବ କହିଲେ ଯୁଧିଷ୍ଠି ଅଗ୍ରତେ ।

ହେ ଦେବ ତୁମ୍ଭ ହୃଦରେ ବିଚାର କେମନ୍ତ
ଅର୍ଜ୍ଜୁନର ମନୋଭାବ ଅଟଇ ଏମନ୍ତ ।
ଯୁଧିଷ୍ଠି ଦେବ ବୋଇଲେ ଶୁଣ ବାସୁଦେବ
ବଡ଼ ଦୁରାପଦ କଥା ପଡ଼ିଲା ହେ ଦେବ ।
ସମ୍ପଦ ଲଭିବା ପାଇଁ କଲୁ ଯିନା ଆଶ
ଦୁସ୍ତର କଥା ନୁହେଁକି ସୋଦର ବିନାଶ ।
ଭୀମସେନ ବୋଇଲାକ ଶୁଣିମା ଶ୍ରୀପତେ
ସୋଦର ମାନଗୋବିନ୍ଦ ସଦା ମନ୍ଦ ଚିନ୍ତେ ।
ବାଲ୍ୟକାଳେ ଡାକିନେଲେ ଖେଳ ଖେଳିବାକୁ
ଖେଳରେ ବହୁତ ଶ୍ରମ ଦେଲେ ସେ ଆମ୍ଭଙ୍କୁ
ଖେଳକ୍ରୀଡାରେ ହୋଇଲା ମୋତେ ବହୁ ବାଧା
ଶରୀର ଅବଶ ହେଲା ଲାଗିଲାକ କ୍ଷୁଧା ।
ମୋତେ ସମସ୍ତେ ସୋଦରେ ସଙ୍ଗେ ଘେନିଗଲେ
ଘର ଭିତରେ ନେଇଣ ମୋତେ ବସାଇଲେ
କପଟରେ ବିଷଲଡ଼ୁ ଦେଇ ପୁଣି ନେଇ
ବଡ଼ ସାନ ଲଡ଼ୁ ଦୁଇସ୍ଥାନେ ଛନ୍ତି ଥୋଇ
କ୍ଷୁଧା ବକଳେ ଧରି ମୁଁ ବଡ଼ ଲଡ଼ୁ ଗୋଟି
ଭକ୍ଷଣ କରନ୍ତେ ବିଷ ଦେହେ ଗଲା ଘୋଟି ।
ଜାଣି ଜାଣି ବିଷଲଡ଼ୁ କଲେ ଯେ ପ୍ରଦାନ
ଭୋଜନ ସ୍ଥାନରେ ଖାଇ ହେଲି ଅଚେତନ ।
ଅଚେତନ ଦେଖି ମୋତେମେଲିଦେଲେଜଳେ
ନାଗୁଣୀମାନେ ରଖିଲେ ପୂର୍ବ ପୁଣ୍ୟବଳେ ।
ପାଣ୍ଡୁବାୟୁର ତାହାକୁ ଧରି ମାରୁଥିଲ
ଆମ୍ଭ ହେତୁ କୌରବଙ୍କ ପରାଣ ରହିଲା ।
ସବୁବେଳେ ଥାଉଁ ଆମ୍ଭେ ତାଙ୍କ ଉପକାରେ
ସେ ସଦା ଥାଆନ୍ତି ଆମ୍ଭ ଅନିଷ୍ଟ ଚିନ୍ତାରେ ।
କପଟପଶା ଖେଳରେ ଦେଖିଲ ସମସ୍ତେ
ଭାର୍ଯ୍ୟାକୁ ଝିଙ୍ଗାସି ଅପମାନ ଦେଲେ ଯେତେ
କହି ନ ସରିବ ହରି କାମ୍ୟବନ କଥା
ଯେତେ ଯେତେ ଲଭିଅଛୁ ବନେ ଦୁଃଖାବସ୍ଥା
କହେ ଚକ୍ରଧର ପୁଣି ଗୋବିନ୍ଦର ମୁଣି
କରେ ତମ୍ବାପଦ ପାଉଁ ପ୍ରାର୍ଥିଜନ ଜାଣି ।
ନିଜ ସମ୍ପତ୍ତି ଛାଡ଼ିଣ ବନେ ନେଲୁ ବିନ
ଧର୍ମବୃତ୍ତି ଛାଡ଼ି ଆମ୍ଭେ ହେଲୁ କାର୍ଯ୍ୟହୀନ ।
କାପୁରୁଷ ହୋଇ ମତ୍ସ୍ୟଦେଶେ ହେଲୁ ଭୃତ୍ୟ
ତହିଁ ପୁଣି ନପୁଂସକ ହୋଇଲା ଏ ପାର୍ଥ ।

ମାନ ମହତ୍ତ୍ୱ ସମ୍ପଦ ବୁଡ଼ିଲା ଆମ୍ଭର
ଆମ୍ଭେ ଏତେ ହୀନକର୍ମା କି ହେ ଚକ୍ରଧର ।
କପଟ ଯୁଦ୍ଧକୁ ନସହ ହୁଏ ସବ୍ୟସାଚୀ
ସମ୍ପଦ ଆନକୁ ଦେଇ ବନ୍ଧୁ ଭିକ୍ଷା ଲୋଡ଼ୁଛୁ ।
କଣ୍ଠରେ ଆଜ୍ଞା ଯେବେ ଦେବ ଦେବହର
ଗଦାଘାତେ ଭୀଷ୍ମ ଦ୍ରୋଣ ପକାଇବି ମାରି ।
ଗୋବିନ୍ଦ ବୋଇଲେ ବୁଦ୍ଧି ଶୁଣ ବୃକୋଦର
ପ୍ରଥମରେ ଯୁଦ୍ଧ ହେଉ ଦୁଃଶାର ତୋହର ।
ନାରାୟଣଙ୍କ ବଚନେ କାଳଦଣ୍ଡପାଣି
ଅଧରେ ଦନ୍ତକୁ ଚାପି ଉଠେ ଶିର ଝୁଣି ।
ବୁଲାଇଣ ତମ୍ବାତନ୍ତ ପ୍ରାୟେ ବେନିଡୋଳା
ଗଗନ ମଣ୍ଡଳ ଯାଏ ରୂପ ବିକାଶିଲା ।
ବ୍ରହ୍ମାଣ୍ଡ କମ୍ପିତ ହେଲା ଦେଖି ଭୀମ ମୂର୍ତ୍ତି
କାଳକୃତାନ୍ତକ ଜଣି ଦିଶଇ ମାରୁତି ।
ବେନିକରେ ଗଦା ଧରି ହୁଅନ୍ତେ ଅଗ୍ରସର
ଦେଖି କୌରବ ସଇନ ହେଲେ ଥରହର ।
ଗଜ ଅଶ୍ୱାରୋହୀମାନେ ଦେଖି ଭୀମମୂର୍ତ୍ତି
ମହାଭୟେ ଏ ସକଳେ ପଛକୁ ପଳାନ୍ତି ।
ଯୁଧିଷ୍ଠି ବୋଇଲେ ଆରେ ରହ ରହ ଭୀମ
ସମୟ ବୁଝିଣ ଆବୁ କରିବା ସଂଗ୍ରାମ ।
ବନେ ବୁଲି ଆମ୍ଭେ ଯେତେ କଷ୍ଟ ପାଇଅଛୁ
ଧୃତରାଷ୍ଟ୍ରଙ୍କୁ ଦେଖି ତା ସବୁ ପାସୋରିଛୁ ।
ବାରୁଣାବନ୍ତରେ ଆସି ଯେବେ ପ୍ରବେଶିଲୁ
ନିଜ ରାଜ୍ୟ ମାଗିବାକୁ ତାଙ୍କ ପାଶେ ଗଲୁ ।
ମୋହର ବଚନ ଶୁଣି କଲେ ଉପହାସ
ଧର୍ମ ପୁରୋହିତ ଗଲେ ହୋଇଣ ନିରାଶ ।
ହସ୍ତିନାପୁରରେ ମଧ୍ୟସ୍ଥ ହୋଇଲେ ବିଦୁର
ସେ ମଧ୍ୟ ଲଜ୍ଜା ପାଇଲେ କୌରବ ସଭାର ।
ପୁଣି ମଧ୍ୟସ୍ଥପଣେ ଗଲେ ନାରାୟଣ
ସଭାରେ ଯାଇ ପାଇଲେ ସେହି ଅପମାନ ।
ତାଙ୍କ ଅପମାନେ ମୁହିଁ ଇଚ୍ଛାକଲି ଯୁଦ୍ଧ
ମାରିବା କୌରବ ରଖିବାକୁ କାର ସାଧ ।
ଲକ୍ଷେରାଜା ମିଳିଛନ୍ତି ହସ୍ତିନାମଣ୍ଡଳେ
ସବୁଙ୍କୁ ସାକ୍ଷୀକରି ମୁଁ ଆସେ କିନା ବେଳେ ।
ମାନଗୋବିନ୍ଦ ସୋଦର ଅଛଇ ଯୁକତେ
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଅଛନ୍ତି ସମସ୍ତେ ।

ପୁଣି ବୋଲନ୍ତି କୃଷ୍ଣଙ୍କୁ ଶୁଣ ଦେବରାଜ
ଏ ସମୟେ ଥରେ ପୁଣି ମାଗିବି ମୁଁ ରାଜ୍ୟ ।
ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣର ରାଜ୍ୟ
ସର୍ବେ ଛନ୍ତି ଧାର୍ତ୍ତରାଷ୍ଟ୍ର ମଧ୍ୟରେ ବିଜୟ ।
ହେ ଗୋବିନ୍ଦ ଏ ସମୟେ ତହିଁକି ମୁଁ ଯିବି
ପଞ୍ଚା ପାଞ୍ଚଖଣ୍ଡ ମୁହିଁ ତାହାଙ୍କୁ ମାଗିବି ।
ଅତିଥି ହୋଇ ମାଗିବି ତାଙ୍କୁ ପାଞ୍ଚଗ୍ରାମ
ନ ଦେବ ଯେବେ ନିଶ୍ଚୟ କରିବି ସଂଗ୍ରାମ ।
ଗୋବିନ୍ଦ ବୋଇଲେ ସ୍ୱାମି ଏମନ୍ତ ନୁହଇ
ନ ପୁଣ ମାନଗୋବିନ୍ଦ ପ୍ରମାଦ ଇଚ୍ଛଇ ।
ଯୁଧିଷ୍ଠି ଲଙ୍ଘନ କରି ସବୁଙ୍କ ବଚନ
ଦୁର୍ଯ୍ୟୋଧନ ନିକଟକୁ କରିଲେ ଗମନ ।
ଶ୍ୱେତହସ୍ତୀ ରଥ ଅଶ୍ୱ ସବୁ କରି ତେଜ୍ୟା
ରତ୍ନମାଳା ଘେନି ଚାଲିଗଲେ ଧର୍ମରାଜା ।
ପାଣ୍ଡବ କଳଙ୍କୁ ତେଜି ପଶ୍ଚିମ ମୂରତି
ଯୁଧିଷ୍ଠିଙ୍କୁ ବନ୍ଦି ସର୍ବେ ପ୍ରଶ୍ନୀଭୂତ ହୁଅନ୍ତି ।
ପାଦଗତିରେ ଧର୍ମାତ୍ମା ଆସିବାର ଦେଖି
ଭୀଷ୍ମ ଦ୍ରୋଣାଦି ଉହ୍ଲେ ରଥକୁ ଉପେକ୍ଷି ।
ଗୁଡ଼ିଲେ କ୍ଷତ୍ରିୟ ବୃତ୍ତି ଅସ୍ତ୍ର କଲେ ତେଜ୍ୟା
ଏହା ଦେଖିଣ ବିସ୍ମୟ ହେଲା କୁରୁରାଜା ।
ଭୀଷ୍ମଙ୍କ ସମ୍ମୁଖେ ରହି ଅଛଇ ଶକୁନି
କାହିଁପାଇଁ ଅସ୍ତ୍ର ତ୍ୟାଗ କଲ ବୀରମଣି ।
ଶକୁନି ମନ୍ତ୍ରୀ ଆଗରେ ବୋଲେ ଭୂରିଶ୍ରବା
କାହାର ଭୁଲେ ଆମ୍ଭେ ହୋ ସମର କରିବା ।
ଆମ୍ଭର ହୋଇଲା କାର୍ଯ୍ୟ ନୋହିଲା ତ କିଛି
ଆସୁଛନ୍ତି ଯୁଧିଷ୍ଠିର ସନ୍ଧିକଥା ଇଚ୍ଛି ।
ଏହା କହି ଭୂରିଶ୍ରବା ହେଲେ ନିରୁତ୍ତର
କୃଷ୍ଣ ମାୟା ବୁଝିବାକୁ ଶକ୍ତି ଅଛି କାର ।
ଚିନ୍ତାମଣି ଅଟ ତୁମ୍ଭେ ଆହେ ଚକାଡୋଳା
ବଡ଼ବାନଳ ଭିତରେ ତୋର ନାମ ଭେଳା ।
ଚଉଦ ବ୍ରହ୍ମାଣ୍ଡେ ପ୍ରଭୁ ତୁମ୍ଭେ ତ କରତା
ନିରାକାର ପ୍ରଭୁ ତୋତେ ସବୁଙ୍କର ଚିନ୍ତା ।
ଅନୁଗ୍ରହ କର ନାଥ ମହେନ୍ଦ୍ରର ବେଳେ
ଏ ବିବାଦ ସନ୍ଧି ହେଉ ସର୍ବ ଯେ ମଙ୍ଗଳେ ।
ନିରଞ୍ଜନ ପୁରୁଷର ଶବ୍ଦ ଶୂନ୍ୟେ ଶୁଭି
ସବୁ ଦୁଃଖ ନାଶଯାଉ ସୁଖ ଆମ୍ଭେ ଲଭି ।

ନିରାକାର ପୁରୁଷ ତୋ ଅଗୋଚର ମାୟା
ମାନଜୀମୂତ ପରାୟେ ଅଟେ ତୋର କାୟା ।
ନିର୍ମଳ ପୁରୁଷ ତୋତେ ସଦା କରେ ଲୟେ
ଶମନପତିଙ୍କୁ ମୁହିଁ ମନେ କରେ ଭୟେ ।
ଲୋଭ ମୋହ ସଂସାରକୁ ନାଶକର ଦଣ୍ଡ
କୃପାକର ସେହି ଦଣ୍ଡ ତୁମ୍ଭେ ମୋର ଖଣ୍ଡ ।
ହେ ତୁଳସୀ-ବଲ୍ଲଭ ତୋ ପଙ୍କଜ ପୟରେ
ଶାରଳାଦାସର ମନ ରହୁ ନିରନ୍ତରେ ।

—*—

## କୃଷ୍ଣାର୍ଜ୍ଜୁନ ସମ୍ବାଦ—ଭଗବଦ୍ ଗୀତା
## ୧ (ଅର୍ଜ୍ଜୁନ ବିଷାଦ ଯୋଗ)

ପୁନରପି ମନୁ ରାଜା ବେନିକର ଯୋଡ଼ି
କୁମ୍ଭଋଷି ସୁତଙ୍କର ପାଦତଳେ ପଡ଼ି ।
ପୁଚ୍ଛିଲେ ହେ ମୁନିବର କହ ଶ୍ରଦ୍ଧାଭରେ
ସମର ହେଲା କି ସନ୍ଧି ହେଲା ଏହା ପରେ
ଏହା ଶୁଣିବାକୁ ମନ ହେଉଛି ଉଛନ୍ନ
କୃପାକରି ସେ ବିଷୟ କହ ତପୋଧନ ।
ଅଗସ୍ତି କହିଲେ ହେଲା ଏଥୁଅନ୍ତେ ଯାହା
ବୁଝାଇ ମୁଁ କହୁଅଛି ଶୁଣ ନରନାହା ।
ଏଣେ କୌରବ ଥାଟକୁ ଗଲେ ଯୁଧିଷ୍ଠିର
ଅର୍ଜ୍ଜୁନେ ଯୋଗ ବୁଝାନ୍ତି ରଥେ ଚକ୍ରଧର ।
ଧୃତରାଷ୍ଟ୍ର ଆଗେ କହେ ସଞ୍ଜୟ ସେ କଥା
ଯାହା ନାମେ ବିଖ୍ୟାତ ଶ୍ରୀ ଭଗବତଗୀତା ।
ଏଥୁଅନ୍ତରେ ହସ୍ତିନା ରାଜ୍ୟ ନରସାଇଁ
ପୁଚ୍ଛିଲେ ସଞ୍ଜୟ ମନ୍ତ୍ରୀ ମୁଖକୁ ଅନାଇଁ ।
ପୁଣ୍ୟଭୂମି କୁରୁକ୍ଷେତ୍ର ମଧ୍ୟରେ ମୋ ସୁତେ
ମେଳ ହୋଇଛନ୍ତି ଯୁଝି ରାଜ୍ୟ ନେବା ଅର୍ଥେ
ପଣ୍ଡୁପୁତ୍ର ମଧ ଛନ୍ତି ସସୈନ୍ୟେ ସେଠାରେ
କି ହୁଅଇ ତହିଁ ଫେଡ଼ି କହ ମୋ ଆଗରେ ।
ଧୃତରାଷ୍ଟ୍ରଙ୍କ ଆଗରେ ସଞ୍ଜୟ କହନ୍ତି
ମନଦେଇ ଶୁଣ ତୁମ୍ଭେ ହସ୍ତିନାର ପତି ।
ପାଣ୍ଡବଙ୍କ ଯୁଦ୍ଧୋଦ୍ୟମ ଦେଖି ଦୁର୍ଯ୍ୟୋଧନ
ଦ୍ରୋଣଙ୍କ ପାଖକୁ ଯାଇ କହଇ ଏସନ ।
ଦେଖ ଗୁରୁ ସର୍ବଅଗ୍ରେ ପାର୍ଥ ଧନୁର୍ଦ୍ଧାରୀ
ଯୁଝିବାପାଇଁକ ସେହି ରହିଛି କପର ।
ଦ୍ରୁପଦ ସୁତଙ୍କ ଯୋଗେ ପାଳିତ ହୋଇଣ
ସଙ୍ଗରେ ଆଣିଅଛନ୍ତି ବହୁତ ସଇନ ।
ବିରାଟ କାଶୀଈଶ୍ୱର ଶୈବ୍ୟ ଯୁଯୁଧାନ
କୁନ୍ତିଭୋଜ ନରପତି ଆଉ ଚେକିତାନ ।
ଉତ୍ତମୌଜା ଧୃଷ୍ଟକେତୁ ରାଜା ଯୁଧାମନ୍ୟୁ
ପାଞ୍ଚାଳେଶ ମଗଧେଶ ଈଶ୍ୱ ଅଭିମନ୍ୟୁ ।
ଏ ସମସ୍ତ ମହାରଥୀ ମଧ୍ୟେ ଗଣନୀୟ
ଅସ୍ତ୍ର ଶସ୍ତ୍ରେ ହୋଇଛନ୍ତି ଦେଖ ଶୋଭନୀୟ ।
ଆମ୍ଭ ସୈନ୍ୟରେ ଯେତେକ ଛନ୍ତି ରଥୀଗଣ
ତାହା ମଧ୍ୟ କହିବଇଁ ତୁମ୍ଭେ ଗୁରୁ ଶୁଣ ।
ପିତାମହ ଭୀଷ୍ମ କର୍ଣ୍ଣ କୃପ ଜୟଦ୍ରଥ
ବିକର୍ଣ୍ଣ ଯେ ସୋମଦତ୍ତ ତୁମ୍ଭେ ମହାରଥ ।
ବାହାରନ୍ତି ମୋହପାଇଁ ମାରିବାକୁ ଖର
ହେ ଗୁରୁ ମୋହର ସୈନ୍ୟ ଅଛନ୍ତି ଅପାର ।
ଭୀଷ୍ମ ଦ୍ୱାରା ପୁଣି ହୋଇଅଛନ୍ତି ରକ୍ଷିତ
ତେବେ ସୁଦ୍ଧା ଜୟ ହେବ ପାଉନାହିଁ ଚିତ୍ତ ।
ପାଣ୍ଡବଙ୍କ ଅଳ୍ପ ସୈନ୍ୟ ଭୀମ ବୀର ବଳେ
ପାଳିତ ହୋଇଣ ଯୁଦ୍ଧେ ଜିଣିବେ ସେହେଲେ
ଏଥିପାଇଁ ରଣବ୍ୟୂହ ଦ୍ୱାରଦେଶେ ତୁମ୍ଭେ
ରହିଣ ଭୀଷ୍ମରଥୀଙ୍କୁ ରଖ ବୋଲୁ ଆମ୍ଭେ ।
ମାନଗୋବନ୍ଧ ଦ୍ରୋଣଙ୍କୁ କହୁ ଏ ବଚନ
ପିତାମହ ଶୁଣିକରି ହୋଇଲେ ପ୍ରସନ୍ନ ।
ଗର୍ଜ୍ଜନ କରିଣ ଥାଣେ ବଜାଇଲେ ଶଙ୍ଖ
ସେହି ଶବ୍ଦରେ ହରିଲେ ନିଜ ଯୋଦ୍ଧା ଦୁଃଖ
ଯୋଦ୍ଧାଏ ଗୋମୁଖୀ ଶଙ୍ଖ ଧରି ବଜାଇଲେ
କେହି କେହି ଭେରୀତୁରୀ ପଣବ ଫୁଙ୍କିଲେ ।
ସେ ସବୁ ଫୁଙ୍କନ୍ତେ ଏକ ମହାଶବ୍ଦ ହେଲା
କୌରବ ସୈନ୍ୟଙ୍କ ମନ ହରଷେ ଫୁଲିଲା ।
ଫାଟିଯାଏ କିବା ଗିରି ସହିତରେ କ୍ଷିତି
ଭୟେ ଆତଙ୍କ ହୋଇଲା ଦେବୀ ବସୁମତୀ ।
ଶ୍ୱେତହୟଯୁକ୍ତ ରଥେ ଶ୍ରୀହରି ଅର୍ଜ୍ଜୁନ
ବସି ଯୁଦ୍ଧ କରିବାକୁ ବଳାଇଲେ ମନ ।
ପାଞ୍ଚଜନ୍ୟ ଦେବଦତ୍ତ ଶଙ୍ଖ କରେ ଧରି
ଫୁଙ୍କିଲେ ଶ୍ରୀକୃଷ୍ଣ ପାର୍ଥ ଅତି ଆଶ୍ଚକରି ।।
ମୁଖରେ ଧରି ପୌଣ୍ଡ୍ରକ ଶଙ୍ଖ ବୃକୋଦର
ଫୁଙ୍କି ଅତି ଆନନ୍ଦିତ ହେଲା ହୃଦୟର ।

ଅନନ୍ତ ବିଜୟ ଶଙ୍ଖ ଫୁଙ୍କିଲେ ଦେବ ଯୁଧିଷ୍ଠିର
ସମର କ୍ଷେତ୍ରରେ ଜୟୀ ହେବା ମାନସର ।
ସୁଘୋଷ ମଣିପୁଷ୍ପକ ହସ୍ତରେ ଧରିଣ
ନକୁଳ ଯେ ସହଦେବ ଫୁଙ୍କିଲେ ତତ୍ପରେ ।
ଶିଖଣ୍ଡୀ ବିରାଟ ଧୃଷ୍ଟଦ୍ୟୁମ୍ନ କାଶୀରାଜ
ଶ୍ରୀକୃଷ୍ଣ ଭ୍ରାତା ସାତ୍ୟକି ରାଜା ଦ୍ରୌପଦେୟ ।
ଅଭିମନ୍ୟୁ ଆଦି ବୀରେ ନାନା ଶଙ୍ଖ ଧରି
ମୁଖରେ ସେ ବଜାଇଲେ ଅତି ଉଚ୍ଚକରି ।
ସେହି ଶଙ୍ଖର ଶବଦେ ଭୀଷ୍ମର ଯେ ପୁଅ
ମଲୁ ବୋଲିଣ ଭାଳିଲେ ହୋଇଣ ଅଥୟ ।
ଶର ବନ୍ଧିବାକୁ ଆଉ ମାତ୍ର ବାକି ଅଛି
ଏହି କାଳେ ଶ୍ରୀକୃଷ୍ଣଙ୍କୁ ହୋଇଲେ ଶ୍ରୀବତ୍ସି ।
ରଥ ରଖ ପ୍ରଭୁ ଦୁଇ ସେନାର ମଧ୍ୟରେ
ଧୈର୍ଯ୍ୟକୁ ଅବଲମ୍ବି ଆନନ୍ଦ ମନରେ ।
ଯୁଝିବା ପାଇଁକି ଆସିଛନ୍ତି ଯେଉଁମାନେ
ଦେଖିବଇଁ ତାହାଙ୍କୁ ମୁଁ ଉଭୟ ନୟନେ ।
କାହା ସଙ୍ଗେ ଯୁଦ୍ଧ କଲେ ହେବ ମୁହିଁ କାଣ
ଏ କଥା ଜାଣିବ ଆହେ ରୁକ୍ମିଣୀ ରମଣ ।
ଧୃତରାଷ୍ଟ୍ରଙ୍କର ଯେଉଁମାନେ ହିତକାରୀ
ଥରେ ମୁଁ ଦେଖିବାଯାଏ ରଥ ରଖ ହରି ।
ଅର୍ଜ୍ଜୁନ ବଚନ ଶୁଣି ଯଦୁକୁଳସାଇଁ
ଭୀଷ୍ମ ଦ୍ରୋଣ ଆଗେ ରଥ ରଖିଲେକ ନେଇ ।
ମହାଗୁରୁ ପିତାମହ ପୁଣି ଭାଇ ପୁତ୍ର
ନାତି ସମ୍ବନ୍ଧି ଶ୍ୱଶୁର ଶଳା ମାମୁଁ ମିତ୍ର ।
ଅର୍ଜ୍ଜୁନ ତାହାଙ୍କୁ ଦେଖି ଦୁଃଖିତ ହୋଇଲା
ସେହିକ୍ଷଣି ଦେହରୁ କି ରକତ ଶୁଖିଲା ।
ତହୁଁ ବୋଲେ ଆହେ ମଧୁସୂଦନ ମୁକୁନ୍ଦ
ଯୁଦ୍ଧରେ ଜନମୁ ନାହିଁ ମୋହର ଆନନ୍ଦ ।
ଦେଖ ମୋହର ଶରୀର କ୍ଷୀଣ ହେଉଅଛି
ମୁଖର ଅମୃତ ମଧ୍ୟ ଶୁଖି ଯାଉଅଛି ।
ଅକାରଣେ ହେଉଅଛି ହୃଦ ଥର ଥର
ରୋମ ଠାକୁର ଉଠୁଛି ଦେହରେ ମୋହର ।
ଦେହରୁ ପଡ଼ୁଛି ଖସି ସ୍ୱର୍ଣ୍ଣ କବଚଟି
ଦେଖ ଦେଖ ରଥେ ମୁହିଁ ପଡ଼ୁଅଛି ଲୋଟି ।
ମୋ ଗାଣ୍ଡୀବ ଧନୁ ଅଟେ ପ୍ରାଣରୁ ଅଧିକ
ଧରି ପାରୁନାହିଁ ମୋର ଦୁଇକର ଯାକ ।

ମୋହର ମସ୍ତକ କମ୍ପା ବୁଲାଇ ଦେଉଛି
କ୍ରମେ ମୋର ସ୍ୱର ଊଣା ହୋଇ ଯାଉଅଛି ।
ଯୁଦ୍ଧେ ସ୍ୱଜନମାନଙ୍କୁ କଲେ ମୁଁ ବିନାଶ
ଶ୍ରେୟ ନ ପାଇବି କେଭେ ଆହେ ହୃଷୀକେଶ
ହେ ପ୍ରଭୁ ବିଜୟ ଲକ୍ଷ୍ମୀ ନାହିଁ ମୋର ଲୋଡ଼ା
କିଏ କଲା କହ ମୋତେ ଯୁଦ୍ଧେ ମୁହଁଯୋଡ଼ା
ରାଜଭୋଗରେ କିସ ପ୍ରୟୋଜନ ମୋର
ବନ୍ଧୁଜନମାନେ ମୋର ଯିବେ ଯମପୁର ।
କୁଳରେ ଯଦ୍ୟପି କେହି ପାତକ ହୁଅଇ
କୁଳ ବିନାଶଇ କି ସେ ଆହେ ଯଦୁସାଇଁ ।
ଯେମାନଙ୍କ ପାଇଁ ଧନ ରାଜ୍ୟ ଅରଜିବା
ତାଙ୍କୁ ମାରି ଧନ ଏକା ହୋଇ କି ଭୁଞ୍ଜିବା ।
ମୋତେ ମାରି ପଛେ ରାଜ୍ୟ ଏମାନେ ଭୁଞ୍ଜନ୍ତୁ
ହେ କୃଷ୍ଣ ଏହାଙ୍କୁ ହେଇ ନ ପାରେ ମୁଁ ମୃତ୍ୟୁ
ଏହାଙ୍କୁ ମାରିଣ ତିନ ଲୋକର ସମ୍ପତ୍ତି
ମିଥ୍ୟା ବୋଲି ମଣେ ମୁହିଁ ଆହେ ଲକ୍ଷ୍ମୀପତି ।
ଆତତାୟୀ ଲୋକ ଯାହା ଲେଖିଅଛି ଶାସ୍ତ୍ରେ
ସେହି ପ୍ରକାରେ ହୋଇଲେ ଧୃତରାଷ୍ଟ୍ର ପୁତ୍ରେ
ସ୍ୱଜନମାନଙ୍କୁ ମାରି ଇହ ପର ଦୁଇ
ବୁଡ଼ାଇ ମୁଁ ନ ପାରିବି ଆହେ ଲକ୍ଷ୍ମୀସାଇଁ ।
ଧୃତରାଷ୍ଟ୍ର ପୁତ୍ରମାନେ ଜ୍ଞାନ ଛାଡ଼ିଛନ୍ତି
ଏଣୁ କୁଳକ୍ଷୟ କଥା ସେମାନେ ଲୋଡ଼ନ୍ତି ।
ଜ୍ଞାନ ଥାଇଁ ଥାଇଁ ଆମ୍ଭେ କି ରୂପେ ତାହାଙ୍କୁ
ମାରିବାଟି କୃଷ୍ଣ କହ ଏ କଥା ଆମ୍ଭଙ୍କୁ ।
ମରଣ ଯେତେବେ ଭଜନ୍ତି କୁଳଶ୍ରେଷ୍ଠ ଜନ
ରକ୍ଷକ ନ ଥାଇ ନାଶ ଯାଏ କୁଳଧର୍ମ ।
କୁଳଧର୍ମ ନାଶଗଲେ ହୁଅଇ ଅଧର୍ମ
କୁଳକୁ ଆକର୍ଷଇ ହେ ପୁରୁଷ ଉତ୍ତମ ।
ଅଧର୍ମ ହେତୁରୁ କୁଳସ୍ତ୍ରୀ ହୋନ୍ତି ଭ୍ରଷ୍ଟ
ତହିଁରୁ ବର୍ଣ୍ଣସଙ୍କର ହୁଅନ୍ତି ଭୂମିଷ୍ଠ ।
ବର୍ଣ୍ଣସଙ୍କର ସକାଶୁଁ ଜାଣ ପିତୃଲୋକେ
ଲୁପ୍ତପିଣ୍ଡ ହୋଇଣ ଯେ ପଡ଼ନ୍ତି ନରକେ ।
ଜାତିକୁଳର ଧରମ କରିଣ ଉଚ୍ଛନ୍ନ
ସେ ମଧ୍ୟ ପ୍ରାପ୍ତ ହୁଅନ୍ତି ନରକରେ ସ୍ଥାନ ।
ଆମ୍ଭେମାନେ ଏବେ ରାଜ୍ୟଲୋଭେ ମତ୍ତହୋଇ
ସ୍ୱଜନ ବାନ୍ଧବ ନାଶେ ଆସିଅଛୁଁ ଧାଇଁ ।

ଆମ୍ଭେ ଶସ୍ତ୍ର ତ୍ୟାଗକରି ହୋଇଥିବା ଛିଡ଼ା
ମାରନ୍ତୁ ସେ ଧୃତରାଷ୍ଟ୍ର ପୁତ୍ରେ ଛାଡ଼ି ବ୍ରୀଡ଼ା ।
ଏହିପରି ଅର୍ଜୁନ କୃଷ୍ଣ ଆଗେ କହି
ଧନୁଶରତେଜି ରଥେ ପଡ଼ିଲେକ ଶୋଇ ।

---

## (୨) ସାଂଖ୍ୟଯୋଗ

ଏଥୁଅନ୍ତେ ଧୃତରାଷ୍ଟ୍ର ସଞ୍ଜୟ ବୋଇଲେ
ଏପରି କହି ଅର୍ଜୁନ କୃତାବସ୍ଥ ହେଲେ ।
ଯାଦବବଂଶେ ଉଦ୍ଧବ ରୁକ୍ମଣୀରସାଇଁ
କହିଲେ ଅର୍ଜୁନଙ୍କର ମୁଖକୁ ଅନାଇଁ ।
କଉରବେ ପ୍ରାଣନେବା ପାଇଁ ଆସିଛନ୍ତି
ତୁମ୍ଭେ ତାଙ୍କଠାରେ କପାଁ କରୁଅଛ ପ୍ରୀତି ।
ଅର୍ଜୁନ କହିଲେ କୃଷ୍ଣ ଗୁରୁ ଭୀଷ୍ମ ଦ୍ରୋଣ
କହ କି ପ୍ରକାରେ ତାଙ୍କୁ ବିନ୍ଧିବି ମୁଁ ବାଣ ।
ଏହାଙ୍କୁ ମାରିବା ପାଇଁ ଇଚ୍ଛା କରୁନାହିଁ
ଆଗେ ମାରିବା ନିମନ୍ତେ ଅଛନ୍ତି ସେ ରହି ।
ଗୁଣବାନେ ଦୟାବନ୍ତ ମୋର ବନ୍ଧୁଗଣ
ଉଣା ହୋଇଗଲା ଆହେ ପ୍ରଭୁ ନାରାୟଣ ।
କ୍ଷତ୍ରିୟ ଶିକ୍ଷାରେ ହୁଏ ଧର୍ମ କି ଅଧର୍ମ
ହେବ କି ନ ହେବ ଦେବ କହ ଏଥି ମର୍ମ ।
ଏଣୁ ମୋ ମନେ ସନ୍ଦେହ ଜନମୁଁ ଅଛଇ
ଅଥିରକୁ ଥିର ପଡ଼ୁଅଛି ଜାଣ ମୁହିଁ ।
ତୁମ୍ଭେ ମୋହର ଅଟ ହେ ଶରଣର ପାଳ
ସତ୍ୟ କହି ମୋର ଗାଳ କର ହେ ପବନ ।
କି ପ୍ରକାରେ ମୋ ଇନ୍ଦ୍ରିୟ ଶୋକ ହତ ହେବ
ଏଥିର ଉପାୟ ମୋତେ କହ ବାସୁଦେବ ।
ତିଲୋକର ଅପବର୍ଗ ଅବାଧେ ମିଳିଲେ
ଶୋକଭାର ମୋର ମନୁ ନ ଯିବ ବୋଇଲେ ।
ଏହି ପ୍ରକାରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ କହି
ରଥରେ ବସି ରହିଲେ ମୌନବ୍ରତ ହୋଇ ।
ଅର୍ଜୁନଙ୍କର ବଚନ ଶୁଣି ଭଗବାନ
ହରଷ ମନରେ ତାଙ୍କୁ କହିଲେ ବଚନ ।
ଶୋକ ଅଯୋଗ୍ୟ କଥାରେ ବୃଥା କର ଶୋକ
ଜ୍ଞାନୀ ହୋଇ କହୁ ଅଜ୍ଞାନୀର କଥାଯାକ ।
ପଣ୍ଡିତମାନେ ଯେ ଜାତ ମୃତ ଲୋକ ପାଇଁ
ଶୋକ ନ କରନ୍ତି କେବେ ଜାଣିଥାଅ ତୁହି ।

ତୁମ୍ଭେ ଆମ୍ଭେ ଜନ୍ମିଅଛୁ ଯେତେ ଏ ମହୀର
ପୂର୍ବେ ଥିଲୁଁ ଜନ୍ମିଅଛୁ ଆସି ପୁନର୍ବାର ।
ପୁଣି ବା ଜନ୍ମଲଭିବା ଆଉ କେତେବାର
ଏ କଥାରେ ଶୋକ କପାଁ କରୁଛ ମନର ।
ଶରୀର ଶରୀରେ ହୁଏ କୌମାର ଯୌବନ
ଯେ ପ୍ରକାରେ ହେଉଅଛି ଜରା ଉତପନ୍ନ ।
ସେରୂପେ ଆନ ଶରୀର ଲଭୁଅଛି ପ୍ରାପ୍ତି
ପଣ୍ଡିତେ ଏହା ଶୁଣିଣ ମୋହକୁ ତେଜନ୍ତି ।
ଇନ୍ଦ୍ରିୟମାନଙ୍କରେ ଯେ ବିଷୟ ସମ୍ବନ୍ଧ
ଶୀତ ଉଷ୍ମ ସୁଖ ଦୁଃଖ ଆଦି ସେ ପ୍ରଭେଦ ।
ହେଉଥାଏ ପୁଣି ଯାଉଥାଏ ଅବଚ୍ଛିନ୍ନ
ଏମାନଙ୍କୁ ସହିଥାନ୍ତି ଦେହୀ ପ୍ରତିଦିନ ।
ଯାହାକୁ ଶୀତୋଷ୍ମ ସୁଖ ଦୁଃଖ ନ ବାଧଇ
ସେ ନିଶ୍ଚୟ ମୁକତିର ପନ୍ଥାକୁ ଲଭଇ ।
ଶୀତ ଉଷ୍ମ ସୁଖ ଦୁଃଖ ଆଦିର ବିଜୟ
ସର୍ବଦା ଅସତ୍ୟ ଏହୁ ନୁହେଁ କେବେ ପ୍ରିୟ ।
ସତ୍ୟ ବୋଲିଣ ଆମ୍ଭଙ୍କୁ ଯେ ଅବା କହଇ
ବିଚାରକରି ଦେଖିଲା ମିଥ୍ୟା ସେ ଅଟଇ ।
ତତ୍ତ୍ୱଦର୍ଶୀ କହିଛନ୍ତି ଏହିପରି ଗିର
ମୋଠାରୁ ଏ କଥା ଜାଣି ଗାଣ୍ଡୀବକୁ ଧର ।
ସମସ୍ତ ଜଗତ ବ୍ୟାପିଛନ୍ତି ସେ ମହାତ୍ମା
ଅବିନାଶୀ ଯେ ଅଟଇ ତାଙ୍କର ମହିମା ।
ତାଙ୍କୁ ବିନାଶିବା ପାଇଁ ଏ ମହୀମଣ୍ଡଳେ
କେହି ନାହିଁ ଧନଞ୍ଜୟ ଜାଣିଥାଅ ଭଲେ ।
ଆତ୍ମାକୁ ନାଶିବାପାଇଁ କେହି ଜଣେ ନାହିଁ
ସବୁବେଳେ ଜୀବଆତ୍ମା ଅମର ଅଟଇ ।
ଆତ୍ମାର ନ ହୁଏ କେବେ ଜନମ ମରଣ
ଏହି କଥା ଅର୍ଜୁନ ତୁ ଭଲରୂପେ ଜାଣ ।
ସର୍ବଦା ଯେ ବ୍ରହ୍ମଆତ୍ମା ଜଡ଼ି ରହିଅଛି
କ୍ଷଣମାତ୍ର କେତେବେଳେ ନ ଯାଏ ମୁରୁଛି ।
ଏକ ରୂପ ହୋଇଥାଏ ନ ଛିଡ଼େ ନ ବଢ଼େ
ଏହି କଥା କହିଛନ୍ତି ମୁନିମାନେ ଦୃଢ଼େ ।
ନିତ୍ୟଯୋଗ ସର୍ବଦା ସେ ଅକ୍ଷୟ ଅବ୍ୟୟ
ପୁରାତନ ହେଲେ ମଧ୍ୟ ନ ହୁଅଇ କ୍ଷୟ ।
ଦେହ ପରିତ୍ୟାଗ ଯେବେ କରନ୍ତି ଦେହୀ
ଅଦୃଶ୍ୟ ଭାବରେ ସେହି ଆତ୍ମା ରହିଥାଇ ।

ଆତ୍ମାର ଜନମ ମୃତ୍ୟୁ ନାହିଁ ଯେବା ଜାଣେ
ହେ ଅର୍ଜ୍ଜୁନ ତାହାକୁ ବା କେ ମାରିବ ରଣେ ।
ଛିଗଲୁଗା ଛାଡ଼ି ଯେସନ୍ତେ ନୂତନ ପିନ୍ଧନ୍ତି
ଆତ୍ମା ଯାଇ ନରଦେହେ କରେ ଅବସ୍ଥିତି ।
ଆତ୍ମାକୁହିଁ ଶସ୍ତ୍ର କେବେ କାଟି ନ ପାରଇ
ଅଗ୍ନିରେ ଆତ୍ମା କଦାପି ପୋଡ଼ି ଯେ ନ ହୋଇ
ବୁଡ଼ାଇ ନ ପାରେ ତାକୁ କେବେହେଁ ସଲିଳ
ନ ପାରେ ଶୁଖାଇ ତାକୁ କଦାପି ଅନିଳ ।
ଆତ୍ମାକୁ କାଟିଲେ କେବେ କାଟି ନ ହୁଅଇ
ପଥର କଣ୍ଠାରେ ତାର ବିନାଶ ନ ହୋଇ ।
ମୂର୍ତ୍ତି ନ ଥିବାରୁ ତାର ଟଳ ସେ ନ ଯାଏ
ଓଦା ଭବରେ ସର୍ବଦା ସେହି ରହିଥାଏ ।
ଚରଳ ପଦାର୍ଥ ନୁହେ ସେହି ଆତ୍ମାଗୋଟି
ହେ ଅର୍ଜ୍ଜୁନ ଜପର ସେ ଶୁଷ୍କ ହୋଇବଟି ।
ଆତ୍ମା ଅଟେ ଅବିନାଶି ଥାଏ ଶରୀରରେ
ସ୍ଥିର ହୋଇ ରହିଥାଏ ରାତି ଦିବସରେ ।
ନିଜରୂପ ଛାଡ଼େ ନାହିଁ ଅନାଦିଟି ସେହି
ଅପ୍ରକଟ ରୂପ ତାର ଦେହେ ପ୍ରକଟଇ ।
ଇନ୍ଦ୍ରିୟର ଅଗୋଚର ଆତ୍ମାଗୋଟି ଜାଣ
ନ ପାରନ୍ତି ମନେ ଚିନ୍ତେ ଧରି ତାକୁ ପୁଣ ।
ଜ୍ଞାନେନ୍ଦ୍ରିୟ କର୍ମେନ୍ଦ୍ରିୟ ନୁହଇ ଗୋଚର
ଏହା ଜାଣି ଶୋକ ତୁହି ପରିତ୍ୟାଗ କର ।
ଦେହର ଜନ୍ମ ମାତ୍ରକେ ଆତ୍ମା ଜନ୍ମି ଅଛି
ଦେହ ନଷ୍ଟ ହେଲେ ସୁଦ୍ଧା ନଷ୍ଟ ନ ହେଉଛି ।
ଏହା ସୁଦ୍ଧା ଜାଣି ତୁମ୍ଭେ କର ବୃଥା ଶୋକ
ପୁଣି ଯାହା କହୁଅଛି ଶୁଣ ହେ ବିବେକ ।
ଜନ୍ମ ହେଲେ ମୃତ୍ୟୁ ହୁଏ ମୃତ୍ୟୁ ହେଲେ ଜନ୍ମ
ଅବଶ୍ୟହିଁ ଏହା ଅଟେ ପ୍ରକୃତିର କର୍ମ ।
ପ୍ରକୃତି ଯୋଗରୁ ଦେହ ହୋଇଣ ସମ୍ଭୂତ
କେତେକାଳରେ ମଧ୍ୟରେ ହୁଅଇ ବ୍ୟକତ ।
ପୁଣି ପ୍ରକୃତି ସଙ୍ଗରେ ଲୀନ ସେ ହୁଅଇ
ସେ ପାଇଁ ଶୋକ କରିବା ଉଚିତ ନୁହଇ ।
ଏହି କଥା ଶାସ୍ତ୍ର ଗୁରୁଠାରୁ ଶିକ୍ଷା ପାନ୍ତି
ଆତ୍ମାର କଥା ଶୁଣିଣ ଆଶ୍ଚର୍ଯ୍ୟ ହୁଅନ୍ତି ।
ଯେଉଁମାନେ ବା କହନ୍ତି ଆଶ୍ଚର୍ଯ୍ୟ ହୋଇଣ
ସମସ୍ତେ ଆଶ୍ଚର୍ଯ୍ୟ ହୁନ୍ତି ଏ କଥା ଶୁଣିଣ ।

ଦେଖିଲେ ଶୁଣିଲେ ଆତ୍ମା ନୁହଇ ଜନମ
କେହି ତାହା ନ ଜାଣେ ହେ ପାଣ୍ଡବ ଅର୍ଜ୍ଜୁନ
ଶରୀରର ଶରୀରି ଯେ ଅଟେ ମୂର୍ତ୍ତିମନ୍ତ
ହୋଇଅଛି ଆତ୍ମା ଅବିନାଶରୁ ଜଗତ ।
ଏହା ଜାଣିଣ ମନରେ ଚିନ୍ତା ତୁ ନ କର
ମହାଯଶା ଅର୍ଜ୍ଜୁନ ତୁ ମନରେ ବିଚାର ।
ଆପଣା ସ୍ୱବୃତ୍ତି ଆପେ ଆଚରଣ କର
ଅକାରଣେ ନ କମ୍ପାଅ ଶୋକରେ ଶରୀର ।
କ୍ଷତ୍ରିୟ ଆଶ୍ରୟ ଧର୍ମଯୁଦ୍ଧ ଯେ ସର୍ବଥା
ଥିଲ ପର ଦିଶୁ ନାହିଁ ଆହେ ମହାରଥା ।
ଦେଖ ସ୍ୱର୍ଗଦ୍ୱାର ଫିଟିଅଛି ଅଲୋଡ଼ାରେ
ଯୋଦ୍ଧାଙ୍କର ଇଚ୍ଛା ଯିବାପାଇଁ ସେ ବାଟରେ
ତୁମ୍ଭେ ଯେବେ କ୍ଷତ୍ରୀଙ୍କର ଧର୍ମ ନ କରିବ
ଆମ୍ଭେ ଜାଣୁ ଅକର୍ତ୍ତବ୍ୟ ପାତକ ଭୁଞ୍ଜିବ ।
ଏହି ଅପକୀର୍ତ୍ତି ଯେବେ ପୃଥ୍ୱୀ ବ୍ୟାପ୍ତ ହେବ
ଶୁଣିକରି ମଲପରି ନଷ୍ଟପ୍ରୟ ହୋଇବ ।
ସେମାନେ ତୁମ୍ଭଙ୍କୁ ଏବେ କରୁଛନ୍ତି ଭୟ
ସେମାନେ କହିବେ କାତ୍ରୁ ନୁହେ ଧନଞ୍ଜୟ ।
ବୀର ହୋଇଣ ସମର ନ କରି ରହିଲେ
ଅଖ୍ୟାତି ପ୍ରାପ୍ତ ହୋଇଣ ସଂସାରରେ ଭଲେ ।
ଶତ୍ରୁମାନେ ତୁମ୍ଭଙ୍କୁ ଯେ ନ ବୋଲିବେ କଥା
କଟୁକଥା ବୋଲିବେ ସେ ଛାଡ଼ି ହୃଦବ୍ୟଥା ।
ଏହାଠାରୁ ବଳି ଦୁଃଖକଥା ଆଉ ନାହିଁ
ଯୁଦ୍ଧେ ଅଙ୍ଗୀକାର କର ମୋହର ବୋଲେହିଁ
ଯୁଦ୍ଧକରି ମଲେ ସ୍ୱର୍ଗେ ପ୍ରାପ୍ତ ହେବ ଭୋଗ
ଜିତିଲେ ରାଜ୍ୟ ଲଭିବ ଆହେ ମହାଭାଗ ।
ଏବେ ମୋହର କଥାକୁ ଘେନ ବୀରବର
ଧନୁ ଧରି ଯୁଝିବାକୁ ହୁଅ ଅଗ୍ରସର ।
ସୁଖ ଦୁଃଖ ଲାଭାଲାଭ ଜୟ ଯେ ଅଜୟ
ତୁଲ୍ୟ ମଣି ଯୁଦ୍ଧ କର ଆହେ ଧନଞ୍ଜୟ ।
ଏଥିରେ ତୁମ୍ଭର ପାପ କିଛି ହେବ ନାହିଁ
ଅସତ୍ୟ ବଚନ ନୁହେ କହୁଅଛି ମୁହିଁ ।
ଆତ୍ମତତ୍ତ୍ୱ ବିଷୟରେ ଜ୍ଞାନ ହେବାପାଇଁ
କହିଲି ସମସ୍ତ ମୁହିଁ ତୁମ୍ଭଙ୍କୁ ବୁଝାଇ ।
ଏବେ କର୍ମ କରିବାରେ ଯେଉଁ କଥାମାନ
କହୁଅଛି ମନଯୋଗ କରି ତାହା ଶୁଣ ।

ତହିଁରେ ଯଦ୍ୟପି ତୁମ୍ଭେ ନିବେଶିବ ମନ
କହୁଛି ଛେଦି ପାରିବ ସଂସାର ବନ୍ଧନ ।
ନିଷ୍କାମ କର୍ମ ଅଧିକ ଯେବେ ହେବ ପାର୍ଥ
କରି ପାରିବ ପ୍ରାଣୀଙ୍କୁ ସେହି ଚରିତାର୍ଥ ।
ଈଶ୍ୱରଙ୍କଠାରେ ଦୃଢ଼ଭକ୍ତି କରିବାକୁ
ଭାବଇ ଯେ ସ୍ଥିରବୁଦ୍ଧି ବୋଲନ୍ତି ତାହାକୁ ।
କାମନା କରିଣ ଯେହୁ କରଇଟି କର୍ମ
ଅନନ୍ତବୁଦ୍ଧି ବୃକ୍ଷର ବହୁଶାଖା ଜାଣ ।
ସ୍ୱର୍ଗାଦି ଫଳପ୍ରାପ୍ତିରେ ଯେ କରେ ମାନସ
ବେଦକୁ ଘେନିଣ କାମୀ କରୁଥାନ୍ତି ବିଷ ।
ପୁଷ୍ପଯୁକ୍ତ ବିଷଲତା ଅତି ରମଣୀୟ
ତାଙ୍କର ଫଳ ଯେମନ୍ତ ହୁଅଇ ଅପ୍ରିୟ ।
ତେମନ୍ତ ପ୍ରକାର ଅଟେ କାମୀଙ୍କ ବଚନ
ମୂଢ଼ ମଧ୍ୟରେ ସେମାନେ ଅଟନ୍ତି ଗଣନ ।
ସେମାନେ ବେଦାର୍ଥବାଦେ ସଦା ରତ ହୋଇ
ଅହର୍ନିଶି କଟାଅନ୍ତି ତୁଚ୍ଛ ସୁଖପାଇଁ ।
ସ୍ୱର୍ଗଠାରୁ ବଳିକରି କଥା ନ କହନ୍ତି
ନାନାବିଧ ପୋଥିଗାଇ କଥା ରଖାଅନ୍ତି ।
ଯେଉଁମାନେ ସେହି କର୍ମେ ପ୍ରବୃତ୍ତ ହୁଅନ୍ତି
ଜନ୍ମକର୍ମ ଫଳଯାକ ସେମାନେ ଲଭନ୍ତି ।
ଭୋଗୈଶ୍ୱର୍ଯ୍ୟରେ ଆସକ୍ତ ହୋଇଣ ଯେ ନର
ଈଶ୍ୱରଙ୍କଠାରେ ବୁଦ୍ଧି କରନ୍ତି ଅନ୍ତର ।
ସୁଖପ୍ରାପ୍ତ ହେବାପାଇଁ ସକାମୀ ଲୋକର
କର୍ମ କରିବାକୁ ବେଦ କରୁଛି ପ୍ରଚାର ।
ମୁଁ କହୁଅଛି ନିଷ୍କାମଗୁଣ ତୁମ୍ଭେ ବହି
ହେ ଅର୍ଜ୍ଜୁନ କର୍ମକରି ସୁଖେ ଥାଅ ରହି ।
ସତ୍ତ୍ୱଗୁଣରେ ରହିଣ ନିନ୍ଦାକୁ ନ ଭଜ
ସାବଧାନ ହୋଇ କର୍ମଫଳମାନ ତେଜ ।
ପ୍ରାଣୀର କାର୍ଯ୍ୟସମସ୍ତ ପ୍ରାଣୀର ଦେହରେ
ନିର୍ବାହ ହୋଇଯାଏ ସେ ମହାର୍ହ ପଙ୍କରେ ।
କୂପ ବାପୀଆଦି ସବୁ ଅଟେ ପ୍ରାଣୀକାର୍ଯ୍ୟ
କର୍ତ୍ତା ହୁଅଇ ଯେ ରୂପେ ଆହେ ବୀରରାଜ ।
ବେଦୋକ୍ତ ନିଷ୍କାମକର୍ମ କଲ ଲୋକଙ୍କର
କର୍ମଫଳ ପ୍ରାପ୍ତି ହୁଏ ସେହି ପରକାର ।
ତତ୍ତ୍ୱଜ୍ଞାନର କର୍ମରେ ବୁଡ଼ିଅଛ ତୁମ୍ଭେ
ଏଣୁ କର୍ମଫଳ ତେଜ ବୋଲୁଅଛୁଁ ଆମ୍ଭେ ।

କର୍ମଫଳ ପ୍ରବୃତ୍ତିରେ ଅଛଇ କାରଣ
ତାହା ପରିତ୍ୟାଗ କରି କର୍ମେ ଦିଅ ମନ ।
କରୁଅଛି ବୋଲି ଏହି ଅହଙ୍କାର ଛାଡ଼ି
କର୍ମ କର ଯୋଗରସ ଜଳେ ସଦା ବୁଡ଼ି ।
କର୍ମର ସିଦ୍ଧି ଅସିଦ୍ଧି ହେଲେ ବୁଦ୍ଧି ସମ
ତହିଁରେ କର ଅର୍ଜ୍ଜୁନ ବହି ମନେ ପ୍ରେମ ।
ନିଷ୍କାମ କର୍ମ ଅଟଇ କାମ୍ୟକର୍ମ ଊଣା
ଏହା ଭଲରୂପେ ଜାଣି ନ ହୁଅ ତୁ ଦଣା ।
ଆହେ ଅର୍ଜ୍ଜୁନ ନିଷ୍କାମ କର୍ମ ତୁହି କର
ଫଳପ୍ରାପ୍ତି ଆଶା ମନୁ ବେଗେ କର ଦୂର ।
ନିଷ୍କାମକର୍ମ ଯେ ଇହଲୋକରେ କରଇ
ସୁକୃତ ଦୁଷ୍କୃତ ତାର ଜଣାଯାଏ ନାହିଁ ।
ଏଥିପାଇଁ କର୍ମଯୋଗେ ସଦା ଯତ୍ନ କର
ଏହି କଥା ଭଲରୂପେ ହେଜ ବୀରବର ।
ନିଷ୍କାମ ଜ୍ଞାନରେ ଜନ୍ମି ବନ୍ଧନ ନ ଥାଏ
ଅଗମ୍ୟ ପଦର ଅନୁବନ୍ଧ ପ୍ରାପ୍ତ ହୁଏ ।
ଯେବେ ତୋ ବୁଦ୍ଧି ଭଜିବ ଏ ମୋର ଦେହକୁ
ତେବେ ତୁ ଶୁଣିବୁ ପାର୍ଥ ତେଜିବା କଥାକୁ ।
ଈଶ୍ୱରଙ୍କଠାରେ ବୁଦ୍ଧି ନିଶ୍ଚଳ ହୋଇବ
ହେ ଅର୍ଜ୍ଜୁନ ଭଲରୂପେ ଯୋଗପ୍ରାପ୍ତ ହେବ ।
ଅର୍ଜ୍ଜୁନ ବୋଇଲେ ତହୁଁ ସ୍ଥିତପ୍ରଜ୍ଞ ଲୋକ
ଲକ୍ଷଣ ମୋତେ କହନ୍ତୁ ରୁକ୍ମିଣୀନାୟକ ।
ସେହୁ କି ରୂପରେ କହେ କି ରୂପରେ ଥାଏ
କିରୂପେ ବସଇ ସେହୁ କିରୂପେ ବତାଏ ।
ଶ୍ରୀକୃଷ୍ଣ ବୋଇଲେ ଯେହୁ କାମନା ତେଜଇ
ତାହାକୁହିଁ ସିନା ସ୍ଥିତପ୍ରଜ୍ଞ ବୋଲି କହି ।
ଦୁଃଖେ ଯେଉଁ ଲୋକ ଉଦ୍‌ବିଗ୍ନମନା ନୁହେ
ସକଳରେ ଆଶାକୁ ଯେ ନ ବୁଡ଼ାଏ ମୋହେ
ହୃଦୟରୁ ରାଗ ଯେହୁ ଦୂର କରିଥାଏ
ସ୍ଥିତପ୍ରଜ୍ଞ ବୋଲି ସେହୁ ଜଗତେ ବୋଲାଏ
ଶତ୍ରୁମାନଙ୍କୁ ଯେ ଲୋକ ସମାନ ମଣଇ
ଶୁଭାଶୁଭ ଦୋଷ ଗୁଣ ମଧ୍ୟ ନ ତେଜଇ ।
ଉଦାସୀନ ହୋଇଣ ଯେ କହେ ସବୁକଥା
ମହାବୁଦ୍ଧିମନ୍ତ ସେହୁ ଅଟେ ମହାରଥା ।
କଚ୍ଛପ ସଦୃଶ ନିଜ ରୂପକୁ ସଂହରେ
ଯୋଗୀଜନ କଲି ପରି ଇନ୍ଦ୍ରିୟ ନିବାରେ ।

ଯେ ସବୁ ଆୟତ୍ତ କରେ ଏ ସବୁକୁ ଜନ
ସେହିକାଳେ ସବୁସିଦ୍ଧି ହୁଏ ତାର ଜାଣ ।
ପେଟ ନ ପୂରଇ ଯେତେ ଆହାର କରଇ
ଇନ୍ଦ୍ରିୟ ବିଷୟେ ରାଗ ଥାଉଁ ନିବର୍ତ୍ତିଲ ।
ଇନ୍ଦ୍ରିୟ ସଙ୍ଗତେ ରାଗ ଯୋଗୀ ଲୋକଙ୍କର
ନିବୃତ୍ତ ହୁଅଇ ଆହେ ପାର୍ଥ ମହାବୀର ।
ମୋକ୍ଷ ନିମନ୍ତେ କରଇ ଯେଉଁ ଲୋକ କର୍ମ
ଇନ୍ଦ୍ରିୟ ହରି ନିଅନ୍ତି ତା ବିବେକ ଜାଣ ।
ଏହା ଜାଣିଣ ଇନ୍ଦ୍ରିୟ ସଂଯମ ତୁ କର
ମୋ ଭକ୍ତି କଥାରେ ସଦା ହୁଅ ତତପର ।
ଯାହାର ଇନ୍ଦ୍ରିୟଗଣ ହୁଏ ବଶୀଭୂତ
ଜଗତରେ ତାର ବୁଦ୍ଧି ଅଟେ ପ୍ରତିଷ୍ଠିତ ।
ବିଷୟାକୁ ଧ୍ୟାନ କଲେ ଆସକ୍ତି ଜନ୍ମଇ
ହେ ଅର୍ଜ୍ଜୁନ ଭଲରୂପେ ଜାଣିଥାଅ ତୁହି ।
ଆସକ୍ତିରୁ ନିଶ୍ଚେଁ କାମ ହୁଅଇ ସଂଜାତ
କାମରୁ କ୍ରୋଧ ଜନମେ ଜାଣିଥା ନିଶ୍ଚିତ ।
କ୍ରୋଧରୁ ମୋହ ଜନ୍ମଇ ମୋହେ ବୁଦ୍ଧିଭ୍ରଂଶ
ମତିଭ୍ରଂଶ ହେଲେ ଜାଣ ବୁଦ୍ଧିଯାଏ ନାଶ ।
ବୁଦ୍ଧି ନାଶଗଲେ ଜୀବନ୍ମୃତ ସେ ଅଟଇ
ବିଷୟ ଚିନ୍ତା ନରକେ ପଡ଼ି ସେ ମରଇ ।
ରାଗ ବିଦ୍ୱେଷ ରହିତ ଯାହାର ଇନ୍ଦ୍ରିୟ
ତାହା ନିକଟରେ ଦୋଷ ଲଭେ ପରାଜୟ ।
ଶାନ୍ତିପ୍ରାପ୍ତି ମାନବାକୁ ଯେବେ ଘଟେ ଦୁଃଖ
ସେଥିରେ ନ ହୁଏ ସେହି କେବେହେଁ ବିମୁଖ ।
ଯାହାପ୍ରତି ଚିନ୍ତା ଜାଣ ପ୍ରସନ୍ନ ହୋଇଛି
ଅବିଚଳିତ ତା ବୁଦ୍ଧି ଅଟଇ ବିବର୍ସି ।
ଅଣଆୟତ୍ତ ଇନ୍ଦ୍ରିୟ ଯେଉଁମାନଙ୍କର
ଆତ୍ମବୁଦ୍ଧି ଜନ୍ମିବାକୁ କଷ୍ଟ ତାହାଙ୍କର ।
ଏମନ୍ତ ଲୋକଙ୍କର ଯେ ଭାବନା ଜନ୍ମଇ
ସେଥିରେ ତାହାକୁ ତିଳେ ଶାନ୍ତି ନ ମିଳଇ ।
ସୁଖ ମୋକ୍ଷ କି ପ୍ରକାର ଅଶାନ୍ତ ଲୋକର
ହୋଇବ କପରି କହ ଆହେ ବୀରବର ।
ଇନ୍ଦ୍ରିୟ ଯେବେ ବିଷୟ ଆଶ୍ରୟ କରନ୍ତି
ବଳବାନ ହୋଇକରି ପ୍ରଜ୍ଞାକୁ ବଡ଼ାନ୍ତି ।
ସ୍ଥିର ଜଳରେ ପବନ ଯେହ୍ନେ ନାବ ନେଇ
ମନକୁ ଇନ୍ଦ୍ରିୟ ସେହିପରି ଘେନିଯାଇ ।
କରିଥାଏ ଇନ୍ଦ୍ରିୟକୁ ବଶ ଯେଉଁ ଜନ
ପ୍ରତିଷ୍ଠିତପ୍ରଜ୍ଞ ତାକୁ କହି ଅରଜୁନ ।
ରାତ୍ରିର ସମାନ ଅଟେ ପ୍ରାଣୀ ବ୍ରହ୍ମଜ୍ଞାନ
ଯୋଗୀମାନେ କରିଥାନ୍ତି ତହିଁ ଜାଗରଣ ।
ବିଷୟ ସମାନ ଅଟେ ପ୍ରାଣୀଙ୍କ ଦିବସ
ଯୋଗାଭ୍ୟାସୀମାନଙ୍କୁ ସେ ଅନ୍ଧାର ସଦୃଶ ।
ବହୁତ ନଦୀର ଜଳ ସମୁଦ୍ରେ ମିଳଇ
ତଥାପି ତାହାର ନୀର କୂଳ ନ ଲଙ୍ଘଇ ।
ଯୋଗାଭ୍ୟାସୀଠାରେ ଯେବେ ବିଷୟ ମିଳଇ
ବିଷୟ ତାଙ୍କର ଜ୍ଞାନ ନାଶି ନ ପାରଇ ।
ନିଷ୍କାମରେ ଯୋଗୀ ଯେବେ ପର୍ଯ୍ୟଟନ କରେ
ଶାନ୍ତ ଭଜଣ ରହଇ ନିଷ୍କାମ ପଦରେ ।
ବ୍ରହ୍ମଜ୍ଞାନ ରୀତିମାନ କହିଲୁ ତୁମ୍ଭଙ୍କୁ
ଏବେ ଛାଡ଼ିଦିଅ ତୁମ୍ଭେ ସମସ୍ତ ମୋହକୁ ।
ଅନ୍ତିମ କାଳରେ ବ୍ରହ୍ମଜ୍ଞାନ ସ୍ମରି ଲୋକ
ରହିଲେ ପାଏ ମୋକ୍ଷ ସେ ଛାଡ଼ିଦେଇ ଶୋକ ।
ବାଲ୍ମୀକାଙ୍କୁ ଯୋଗକୁ ସେ ଆରମ୍ଭି ଅଛଇ
ତାର ତରିବାର କଥା କସ କହିବଇଁ ।



## (୩) କର୍ମଯୋଗ

ଏଥୁଅନ୍ତେ ଅରଜୁନ କୃଷ୍ଣଙ୍କୁ ଅନାଇ
ପୁଣି ହରଷେ ବୋଇଲେ ତାହାଙ୍କୁ ବିନୟି ।
ଜ୍ଞାନରୁ କର୍ମ ଅଟଇ ବହୁତ ଯେ ଊଣା
କପାଇଁ କହୁଛ ମୋତେ ବୁଦ୍ଧି ହୁଏ ବଣା ।
ଜ୍ଞାନ କରମ ଦୁହିଙ୍କୁ ପ୍ରଶଂସା କରନ୍ତେ
ବିଷମ ଭ୍ରାନ୍ତି ଜନ୍ମିଲା ଏ ମୋହର ଚିତ୍ତେ ।
ଏଥିଯୋଗେ ଭ୍ରାନ୍ତ ହୋଇ ମୁହିଁ ପଚାରୁଛି
କେଉଁ କଥାଟି ନିଶ୍ଚିତ କହ ଯଦୁପତି ।
ଯେ କଥା ଶ୍ରବଣ କଲେ ମୋର ହେବ ଶ୍ରେୟ
ସେହି କଥା ମୋର ଆଗେ କହ ଦୟାମୟ ।
ଶ୍ରୀକୃଷ୍ଣ ବୋଇଲେ କର୍ମଜ୍ଞାନ ମୁହିଁ ନିତ୍ୟ
କହିବଇଁ ଯେଉଁ କଥା ଘେନ ହୋଇ ହୃଷ୍ଟ ।
ଯାହା ପଚାରିଲୁ ମୋତେ ହେ ବୀର ଅଗ୍ରଣୀ
ସେହି କଥା ତୁମ ଆଗେ କହିବଇଁ ପୁଣି ।
ଜ୍ଞାନ ପ୍ରଧାନ ଅଟଇ କର୍ମପ୍ରତି ଜାଣ
କେତେ ବୁଝାଇ କହିବ ତୋତେ ପୁନଃପୁନ ।

ପରବଶମନା ଲୋକର ଅଟଇ ସୁଜ୍ଞାନ
ଚେଷ୍ଟାକରି ପାଆନ୍ତି ସେ ମୁକତିର ସ୍ଥାନ ।
ଯେଉଁ ଲୋକର ହୃଦୟ ଶୁଦ୍ଧ ହୋଇ ନାହିଁ
ଜ୍ଞାନପାଇଁ କର୍ମ ସେହୁ ଅପେକ୍ଷା କରଇ ।
ଏଥି ସକାଶରେ ଚିତ୍ତ ଶୁଦ୍ଧାଶୁଦ୍ଧ ଘେନ
ଦୁଇ ପ୍ରକାରେ କହିଲି ଉପଦେଶ ବାଣୀ ।
କର୍ମଅନୁଷ୍ଠାନ ଯେଉଁଲୋକ ନ କରଇ
ଜ୍ଞାନପ୍ରାପ୍ତ ହେବାପାଇଁ ସୁକଠିନ ହୋଇ ।
ଚିତ୍ତଶୁଦ୍ଧ ବ୍ୟତିରେକେ କର୍ମ ତ୍ୟାଗ କଲେ
ମୋକ୍ଷପ୍ରାପ୍ତ ନ ହୁଅନ୍ତି ଜାଣ ଭୂମି ଭଲେ ।
ଯେବେ କୌଣସି ଦଶାରେ କର୍ମକୁ ଛାଡ଼ଇ
ସେ ଲୋକ ଘଡ଼ିଏ ମାତ୍ର ବଞ୍ଚି ନ ପାରଇ ।
ସବୁ ଅବସ୍ଥାରେ ରାଗ ଦ୍ୱେଷଆଦି କରି
ଗୁଣ କର୍ମ କରୁଛନ୍ତି ହୋଇଣ ଉଗାରି ।
କର୍ମ ଇନ୍ଦ୍ରିୟମାନଙ୍କୁ ଅଧୀନରେ ରଖି
ମନକୁ ବିଷୟରେ ଯେ ଦେଇଥାଏ ପୋଷି ।
ଏହିରୂପେ ଯେଉଁ ଲୋକ ଅଟଇ ଅର୍ଜୁନ
ତାହାକୁ ବୋଲନ୍ତି ଲୋକେ ଦାମ୍ଭିକ ବୋଲିଣ
ଜ୍ଞାନେନ୍ଦ୍ରିୟମାନଙ୍କୁ ଯେ ବଶୀଭୂତେ ରଖି
କର୍ମ କରିବା ନିମନ୍ତେ ତାକୁ ଦିଏ ପୋଷି ।
ଆସକ୍ତ ନ ଥିବା ଯୋଗେ ହୁଏ ନାହିଁ ପାପ
ଏହା ଜାଣି ମନୁ ଦୂର କର ତୁ ସନ୍ତାପ ।
ଏଥିପାଇଁ ଜାଣିଥାଅ ମୁହିଁ କହୁଅଛି
ନିତ କର୍ମ କରିବାରେ ଦୋଷ ନାହିଁ କିଛି ।
କର୍ମ ନ କରିବାଠାରୁ ନିଶ୍ଚୟ କରମ
କରିବାକୁ ହେ ଅର୍ଜୁନ ଅଟଇ ଉତ୍ତମ ।
କରିବାର କର୍ମ କଲେ ଶରୀର ରହଇ
ନ କଲେ ନିର୍ବାହ କେବେ ଶରୀର ନ ରହି ।
ନିଷ୍ଠାକର୍ମ ବ୍ୟତିରେକେ ସବୁକର୍ମଯାକ
ଲୋକଙ୍କ ବନ୍ଧନ ଜାଣ ହେ ବୀରନାୟକ ।
ଏହା ଜାଣି ଭଗବାନଙ୍କର ପ୍ରିୟପାଇଁ
କରମ କରିବାପାଇଁ ଆମ୍ଭେ କହୁଥାଇଁ ।
ଯଜ୍ଞାଧିକାରୀ ପ୍ରଜାଙ୍କୁ ପ୍ରଜାପତି ଆଗେ
ସର୍ଜନ କରିଣ କହିଥିବେ ଏହି ବାଗେ ।
ପ୍ରାଣିମାନେ ଆଜଠାରୁ ଯାଗ ଆରମ୍ଭିଣ
କ୍ରମେ କ୍ରମେ ବୃଦ୍ଧି ପ୍ରାପ୍ତହେବ ଅବଛିନ୍ନ ।

ଏ କର୍ମକୁ ଇଷ୍ଟ ଭାବ ଯତନରେ କର
ଏ କଥାକୁ କଣ୍ଠନ୍ୟାସ ମନରେ ନ ଡର ।
ଯାଗକରି ଦେବତାଙ୍କୁ ଭାବନା କରିଲେ
ସର୍ବକାର୍ଯ୍ୟ ସିଦ୍ଧି ହୁଏ ତାହାଙ୍କର ବରେ ।
ସମସ୍ତେ କରିଣ ଯେବେ ଭାବନା କରିବ
ସଦ୍ୟ ମହାଶ୍ରେୟ ଏହି କାରଣୁ ଲଭିବ ।
ଦେବେ ଆଦ୍ୟେ ବୃଷ୍ଟି କରି ବଢ଼ାଇବେ ଶସ୍ୟ
ତୁମ୍ଭେ ଯାଗରେ ତାହାଙ୍କୁ କର ବୀର ତୋଷ ।
ଦେବତାଙ୍କର ପ୍ରଦତ୍ତ ଅଟେ ଯେଉଁ ଅନ୍ନ
ତାଙ୍କୁ ନ ଦେଇ କେବେହେଁ ନ କର ଭୋଜନ
ସାଧୁଲୋକମାନେ ସେହି ଯଜ୍ଞ ଅବଶେଷ
ଭୋଜନ କରି ପାତକ କରନ୍ତି ବିନାଶ ।
ଆପଣା ନିମନ୍ତେ ରାନ୍ଧି ଯେହୁ ବା ଭୁଞ୍ଜଇ
ତାଠାରୁ ବଳ ପାତକୀ ଖୋଜିଲେ ନ ପାଇ ।
ଅନ୍ନରୁ ଶରୀର ସିନା ହୁଅଇ ଉତ୍ପନ୍ନ
ସେହି ଅନ୍ନ ବୃଷ୍ଟି ହେତୁ ଲଭଇ ଜନମ ।
ଯାଗଯୋଗେ ବରଷାର ହୁଅଇ ସଞ୍ଚାର
ଯଜ୍ଞମାନେ ଯଜ୍ଞ ଯୋଗେ ଜନମ ତାହାର ।
ଯଜମାନ କାର୍ଯ୍ୟମାନ ବେଦରୁ ଯେ ଜାତ
ବେଦ ହୋଇଅଛି ସିନା ବ୍ରହ୍ମରୁ ସମ୍ଭୂତ ।
ଦିବାକର ବ୍ୟାପି ହୋଇ ଯାଗେ ପ୍ରତିଷ୍ଠିତ
ହୋଇଅଛି ଜାଣ ଆହେ କୁନ୍ତୀଦେବୀ ସୁତ ।
ଏକରୂପେ ପ୍ରବର୍ତ୍ତିବା ଚକ୍ରକୁ ଯେ ନର
ନ କରଇ ଅନୁଷ୍ଠାନ ବୃଥା ତା ଶରୀର ।
ଯେମାନେ ଆତ୍ମାରେ ରତ ହୋଇ ସଦା ତୁଷ୍ଟ
ହୋଇଥାନ୍ତି ତାହାଙ୍କର କର୍ମ ହୁଏ ନଷ୍ଟ ।
ଆତ୍ମା ଅତୃପ୍ତ ଲୋକର କର୍ମେ ପୁଣ୍ୟ ନାହିଁ
ହେ ଅର୍ଜୁନ ନିଶ୍ଚୟ ମୁଁ ବୁଝି କହିଲଇଁ ।
କର୍ମ ନ କଲେ ଯଦ୍ୟପି ଦୋଷ ନାହିଁ କିଛି
ତେବେ ତାହାକୁ ଆଶ୍ରୟ ନ କର ଶ୍ରୀବତ୍ସି ।
ଏଥି ସକାଶେ ଆସକ୍ତ ସବୁ ଛାଡ଼ିଦେଇ
କର୍ମ କରିବା ନିମନ୍ତେ ତୋତେ କହୁଥାଇ ।
ଆସକ୍ତିକୁ ତ୍ୟାଗକରି କର୍ମ ଯେହୁ କରେ
ନ ପଡ଼ିବ ସେହି ଲୋକ ଭବ ବନ୍ଧନରେ ।
ଜନକ ପ୍ରଭୃତି ରାଜାମାନେ କର୍ମକରି
କୀର୍ତ୍ତି ପ୍ରାପ୍ତ ହୋଇଛନ୍ତି ଲକ୍ଷେ ଧନୁର୍ଦ୍ଧାରୀ ।

ତୁମ୍ଭେ କର୍ମ କଲେ ସର୍ବେ କରବେଟି କର୍ମ
ଏବେ ମୁଁ କହୁଅଛୁ ତୁ କର ଯୁଦ୍ଧ କର୍ମ ।
ବଡ଼ଲୋକ ଆଚରଣମାନ ସାନଲୋକ
ସୁହିଁକର କରୁଥାନ୍ତି ସବୁ କଥାଯାକ ।
ବଡ଼ଲୋକ ଯେ କାର୍ଯ୍ୟକୁ ପ୍ରମାଣ କରଇ
ନୀଚଲୋକ ତାହାରହିଁ ଅନୁବର୍ତ୍ତୀ ହୋଇ ।
ତିନଲୋକରେ ଅପ୍ରାପ୍ତ କଥା ମୋର ନାହିଁ
ତେବେ ନିରନ୍ତର ମୁହିଁ କର୍ମ କରୁଛଇଁ ।
କର୍ମରେ ପ୍ରବୃତ୍ତ ମୁହିଁ ନ ହୋଇବି ଯେବେ
ମୋତେ ଗୁହିଁ ସମସ୍ତେହିଁ କର୍ମ ଛାଡ଼ି ଦେବେ
କର୍ମ ନ କଲେ ସମସ୍ତେ ହୋଇବେ ଉଚ୍ଛନ୍ନ
ପୁଣିହିଁ ବର୍ଣ୍ଣସଙ୍କର ହୋଇବେ ଉତ୍ପନ୍ନ ।
କର୍ମ ତ ଆସକ୍ତ ଅଟେ ଅତଦ୍ୟ ସଙ୍ଗମେ
ଅନାସକ୍ତ କର୍ମ କରିବେକ ସାଧୁଜନେ ।
ଅଜ୍ଞାନୀ ପୁରୁଷଗଣ ଅସକତ ଚିତ୍ତେ
ଯେପରି କର୍ମାନୁଷ୍ଠାନ କରନ୍ତି ନିରତେ ।
ଲୋକଶିକ୍ଷାର ନିମନ୍ତେ ଜ୍ଞାନବନ୍ତ ଜନ
ଅନାସକ୍ତ କର୍ମକୁ ଯେ କରି ଅନୁଷ୍ଠାନ ।
ଇନ୍ଦ୍ରିୟମାନେ କରମ କରୁଥାନ୍ତି ନିତ
ଅହଙ୍କାରେ ଚିତ୍ତ ମୁଁ ତା ବଡ଼ ବୋଲୁଥାନ୍ତି
ଗତ କର୍ମ ବିଭାଗର ତତ୍ତ୍ୱ ସେ ଜାଣଇ
ମୁଁ କହୁଅଛୁ ବୋଲିବା କଥା ସେ ଛାଡ଼ଇ ।
ପ୍ରକୃତରେ ତତ୍ତ୍ୱାଦର କର୍ମେ ମୁଗ୍ଧ ହୋଇ
ଗୁଣ କର୍ମରେ ଆସକ୍ତ ହୋନ୍ତି ସର୍ବଦେହୀ ।
ଏହୁ କାରଣରୁ ସେହୁ ତୁଏ ଜ୍ଞାନୀଜନ
ପ୍ରବର୍ତ୍ତାଉଥିବ ସତନରେ କର୍ମମାନ ।
ହେ ଅର୍ଜୁନ ମୋହଠାରେ ସବୁ କର୍ମ ଦେଇ
ଈଶ୍ୱରାଧୀନ ବୋଲିଣ ଜାଣ ସର୍ବ ଦେହୀ ।
ଯେଉଁମାନେ କରନ୍ତି ମୋ ମତ ଅନୁଷ୍ଠାନ
ଜ୍ଞାନବାନ ପରି ମୁକ୍ତ ଲଭଇ ଅର୍ଜୁନ ।
ଯେଉଁଲୋକମାନେ ମୋତେ ଅସୂୟା କରନ୍ତି
ଜ୍ଞାନମୂଢ଼ ହୋଇ ସେହୁ ନାଶପ୍ରାପ୍ତ ହୋନ୍ତି ।
ଜ୍ଞାନବନ୍ତ ଲୋକମାନେ ପୂର୍ବ ସଂସ୍କାରରେ
ସମସ୍ତ କର୍ମହିଁ କରୁଥାନ୍ତି ନିରନ୍ତରେ ।
ପ୍ରକୃତିକୁ ଆଶ୍ରେ କରିଥାନ୍ତି ଅସଜ୍ଜନ
ଇନ୍ଦ୍ରିୟ ନିଗ୍ରହ କଏ କରିବ ଅର୍ଜୁନ ।

ପ୍ରକୃତି ଇନ୍ଦ୍ରିୟଙ୍କର ବିଷୟ ଯୋଗରେ
ରାଗ ଦ୍ୱେଷ ବଢ଼ି ରହିଅଛି ନିରନ୍ତରେ ।
ରାଗ ଦ୍ୱେଷର କେବେହେଁ ନ ହୋଇବ ବଶ
ଏ କଥା ମନରେ ରଖିଥିବ ଗୁଡ଼ାକେଶ ।
ମୁକ୍ତି ଇଚ୍ଛୁକ ବ୍ୟକ୍ତିର ରାଗ ଆଉ ଦ୍ୱେଷ
ଦୁହେଁଯାକ ଅଟନ୍ତି ମୋ ଶତ୍ରୁର ସଦୃଶ ।
ପରମ ଧର୍ମ କରିଁକୁ ଆପଣାର ଧର୍ମ
ନ୍ୟୂନ ହୋଇଲେହେଁ ସୁଦ୍ଧା ଅଟଇ ଉତ୍ତମ ।
ନିଜ ଧର୍ମରେ ଥାଇଣ ମୃତ୍ୟୁ ଅଟେ ଶ୍ରେୟ
ତେଣୁକରି ଯୁଦ୍ଧ ଦ୍ୱାରା କର ତୁମ୍ଭେ ଜୟ ।
ଅର୍ଜୁନ ବୋଇଲେ ଲୋକ କାହାରେ ପ୍ରୟୋଗେ
ପାପ କରୁଛନ୍ତି ତାହା କହ ମୋର ଆଗେ ।
ଶ୍ରୀକୃଷ୍ଣ ବୋଇଲେ ବୀର କାମ କ୍ରୋଧ ଦୁଇ
ଯୋଗେ କର୍ମ ପ୍ରବର୍ତ୍ତନ ହେଉଅଛି ଦେହୀ ।
କାମନା ମନର ଯେତେବେଳେ ନୋହେ ପୂର୍ଣ୍ଣ
ଅତି ଉଗ୍ର ବୋଲି ତାକୁ ଜାଣ ହେ ଅର୍ଜୁନ ।
ଇହଲୋକରେ ସବୁରି କାମ ଅଟେ ବୈରୀ
କାମନାକୁ କେହି କେବେ ନ ପାରେ ସଂହାରି
ବହ୍ନି ଧୂମରେ ଦର୍ପଣ ମଳେ ଗର୍ଭ ଚର୍ମେ
ଆବୃତ ହୋଇଲା ପରି ଜଗତହିଁ କାମେ ।
ଜ୍ଞାନକର୍ମେ ଜ୍ଞାନୀଲୋକ ଥାଆନ୍ତି ଆବୃତ
ଧୂମରେ ଅନଳ ଉଠେ ଜାଣ ଯେଉଁମତ ।
ଇନ୍ଦ୍ରିୟମାନେ ଅଟନ୍ତି କାମରହିଁ ସ୍ଥାନ
ବିବେକ ବୁଡ଼ାଇ ମୋହୁଛନ୍ତି ପ୍ରାଣୀ ମନ ।
ଇନ୍ଦ୍ରିୟମାନ ଆୟତ୍ତ କରିଣ ଅର୍ଜୁନ
ବିସ୍ମରଣ ନାଶକର ପାପମୟ କାମ ।
ଶରୀରଠାରୁ ଇନ୍ଦ୍ରିୟ ଅଟନ୍ତି ଟରେଷ୍ଠ
ଇନ୍ଦ୍ରିୟମାନଙ୍କଠାରୁ ମନ ଅଟେ ଶ୍ରେଷ୍ଠ ।
ମନର ଆୟତ୍ତ ବୁଦ୍ଧି କାମର ସେ ସ୍ଥାନ
ବିବେକ ଘୋଡ଼ାଇ ମୋହୁଅଛି ପ୍ରାଣୀମନ ।
ହେ ଅର୍ଜୁନ କାମ ଶତ୍ରୁକର ହେ ସଂହାର
ମୋର କହିବା ବଚନ ଦୃଢ଼ କରି ଧର ।

---

## (୪) ଜ୍ଞାନଯୋଗ

ଏଥୁଅନନ୍ତରେ ପୁଣି ଜଗତ ପାବନ ।
କହିଲେ ଅରଜୁନକୁ ଏମନ୍ତ ବଚନ ।

ପୂର୍ବେ କହିଥିଲି ଏହି ଯୋଗ ମୁଁ ସୂର୍ଯ୍ୟଙ୍କୁ
ସୂର୍ଯ୍ୟ କହିଥିଲେ ତାଙ୍କ ଆତ୍ମଜମାନଙ୍କୁ ।
ମନୁ ଇକ୍ଷ୍ୱାକୁ ରାଜାଙ୍କୁ ପୁଣି ଶିଖାଇଲେ
କ୍ରମେ କ୍ରମେ ଆନ ଆନ ଋଷିଏ ଜାଣିଲେ ।
ବହୁକାଳ ଅନ୍ତେ ମୋର ଶିକ୍ଷାଦେବା ଯୋଗ
ନାଶ ଯାଇଅଛି ଆହେ ପାର୍ଥ ମହାଭାଗ ।
ସେହି ଯୋଗ ବର୍ତ୍ତମାନ ତୁମ୍ଭଙ୍କୁ କହିଲି
ଶୁଣି ହେବ ମୋହଠାରୁ ଆହେ ମହାବଳ ।
ତେଣୁକରି ତୁମ୍ଭେ ମୋର ପ୍ରାଣସଖା ଅଟ
ଭକତ ମଧ୍ୟରେ ପୁଣି ତୁମ୍ଭେ ଅଟ ଶ୍ରେଷ୍ଠ ।
ଏଣୁ ତୁମ୍ଭଙ୍କୁ ମୁଁ ସବୁ କଥା କହିଲଇଁ
ଗୋପନୀୟ ହୋଇ କିଛି କଥା ରହିନାହିଁ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭ ଜନ୍ମ ନିକଟରେ
ପୁରାତନ କଥା କହୁଅଛ କି ପ୍ରକାରେ ।
ସୂର୍ଯ୍ୟ ଦେବତାଙ୍କୁ କହିଥିଲ ଯଦୁସାଇଁ
ଏ କଥା ମୋହର ମନେ ପ୍ରତେ ହେଉନାହିଁ ।
ଯେଉଁରୂପେ ମୋର ମନେ ବିଶ୍ୱାସ ଜନ୍ମିବ
ତେମନ୍ତ କଥା ମୋଠାରେ କହ ବାସୁଦେବ ।
ଶ୍ରୀକୃଷ୍ଣ ବୋଇଲେ ବହୁଥର ମୁଁ ଜନ୍ମିଛି
ପ୍ରତି ଜନମର କଥା ମନେ ମୋର ଅଛି ।
ଏଥର ବାହାରେ ତୁମ୍ଭ ଜନ୍ମମାନ ମୁହିଁ
ଜାଣିଅଛି ଏଥେ କିଛି ସନ୍ଦେହ ଯେ ନାହିଁ ।
ପୂର୍ବ ଜନମର କଥା ମନେ ନାହିଁ ତୋର
ତେଣୁକରି ପଚାରିଲୁ ମୋତେ ମହାବୀର ।
ଯେଣୁକରି ଅବିନାଶୀ ଈଶ୍ୱର ମୁଁ ଅଟେ
ମୋହର ମାୟାରେ ମୁହିଁ ଜଗତେ ପ୍ରକଟେ ।
ଧର୍ମ ଯାଇ ଅଧରମ ଯେବେ ପ୍ରବର୍ତ୍ତଇ
ତେବେ ମହୀମଣ୍ଡଳେ ମୁଁ ଜନମ ଲଭଇ ।
ସାଧୁଜନ ପରିତ୍ରାଣ ଦୁଷ୍ଟ ସଂହାରଣ
ପ୍ରତିଯୁଗେ କରେ ମୁହିଁ ଧର୍ମ ସଂସ୍ଥାପନ ।
ଧର୍ମ ପାଳିବା ନିମନ୍ତେ ମୋହର ଜନମ
ହେବାର ତେଣୁ ଜାଣଇ ସେ ନୋହେ ଜନମ
ମୋ ଲୋକରେ ମୋହଠାରେ ସେହି ରହିଥାଏ
ସନ୍ଦେହ ନ କର ଏଥେ ଆହେ ବୀରବର୍ଯ୍ୟେ ।
ରାଗ ଭୟ ହିଂସା ଆଦି କରଣ ବର୍ଜନ
ତପେ ରତ ହୋଇ କର ଜ୍ଞାନ ଉପାର୍ଜ୍ଜନ ।

ମୋତେ ଆଶ୍ରୟ କରଣ ବ୍ରହ୍ମଜନମାନେ
ମୋହ ତ୍ୟାଗ କରନ୍ତି ବିଶ୍ୱର ତୁ ମନେ ।
ଯେଉଁରୂପେ ଯେ ମୋହଠାରେ ପଶଇ ଶରଣ
ସେ ରୂପେ ମୁହିଁ ତାହାକୁ ରଖଇ ହେ ଜାଣ ।
ମୋର ପଥ ଅନୁସରି ତିନଲୋକ ପ୍ରାଣୀ
ଅଛନ୍ତି କରନ୍ତି ଜାଣ ବୀର ଶିରୋମଣି ।
କର୍ମ ସିଦ୍ଧିର ଇଚ୍ଛାରେ ଜଗତର ଜନ
ଇନ୍ଦ୍ରାଦି ଦେବଗଣଙ୍କୁ କରନ୍ତି ଭଜନ ।
ଦଇବ କର୍ମର ଫଳ ଚତକାଳେ ସିଦ୍ଧି
ତାହା ଶୀଘ୍ର କ୍ଷୟ ହୁଏ ଶୁଣ ହେ ସୁବୁଦ୍ଧି ।
ମୋର ଇଚ୍ଛାକରି ଯେହୁ କରନ୍ତି କର୍ମ
ପୂର୍ବରେ ତାହା ଜାଣିଣ ଆତ୍ମାର ଯେ ଧର୍ମ ।
ଅକର୍ମ କର୍ମ ବୋଲିଣ ଯେଉଁ କଥା ଗୋଟି
ପଣ୍ଡିତଠାରେ ନ ଥାଏ ତହିଁର ଭ୍ରାନ୍ତି ।
ସେହି କର୍ମ ତୋତେ ମୁହିଁ କହିବି ଅର୍ଜ୍ଜୁନ
ଫିଟିବା ନିମନ୍ତେ ତୋର ସଂସାର ବନ୍ଧନ ।
ଚାରିବର୍ଣ୍ଣଯାକ ଗୁଣ କର୍ମ ବିଭାଗରେ
ସୃଷ୍ଟି ହୋଇଅଛି ଏହୁ ମହୀମଣ୍ଡଳରେ ।
ଏହାର କରତା ସିନା ମୁଁ ଏକା ଅଟଇ
ଆସକ୍ତି ନ ଥିବା ଯୋଗେ କର୍ତ୍ତା ମୁଁ ନୋହଇ
ମୋ ଦେହରେ କର୍ମମାନେ ନ ଲାଗନ୍ତି କେବେ
କର୍ମଫଳେ ଯେଣୁ ସ୍ପୃହା ନ କରେ ମୁଁ ଲବେ
ଜ୍ଞାନୀ ଲୋକହିଁ ଜାଣନ୍ତି ଏହି କର୍ମବନ୍ଧ
ଜାଣୁ ଜାଣୁ ରେ ଅର୍ଜ୍ଜୁନ ନ ହୁଅ ତୁ ଅନ୍ଧ ।
ଅକର୍ମ ଆଉ ବିକର୍ମ ଦୁହିଙ୍କର ଗତି
ବୁଝି ନ ପାରେ ଅର୍ଜ୍ଜୁନ କଦାପି ଏ ମତି ।
ଈଶ୍ୱର ଆରାଧନାରେ କର୍ମର ବନ୍ଧନ
ନୁହଇ ବୋଲେ ଯାହାର ବୁଝିଅଛି ମନ ।
ଏହା ବାହାରେ ବିହିତ କର୍ମକୁ ନ କଲେ
ମହାଦୋଷ ହୁଏ ବୋଲି ଜାଣେ ମୁହିଁ ଭଲେ
ଏପରି ଯେ ଜାଣେ ସେହି ଅଟେ ବୁଦ୍ଧିମନ୍ତ
ସମସ୍ତ କର୍ମ ତାହାକୁ ହୁଅଇ ପ୍ରାପତ ।
କର୍ମଫଳ ଭୋଗିବାକୁ ଯାର ଇଚ୍ଛା ନୁହେଁ
ତାର କର୍ମଜ୍ଞାନାଗ୍ନିରେ ଦଗଧ ହୋଇଯାଏ ।
ପଣ୍ଡିତ ତାହାଙ୍କୁ ଜ୍ଞାନୀ ବୋଲିଣ ମାନନ୍ତି
ଏ କଥା ସତ୍ୟ ବୁଝିବୁ ହେ ଇନ୍ଦ୍ର ସନ୍ତତି ।

କର୍ମଫଳରେ ଆସକ୍ତି ତେଜି ଲଭେ ତୋଷ
ନିରାଶ୍ରୟ ହୋଇଲେ ନ ପାଏ କର୍ମଦୋଷ ।
ନିଷ୍କାମ ଶାନ୍ତାତ୍ମା ହୋଇ ସେହି ଯୋଗୀବର
ସର୍ବ ପରିଗ୍ରହକୁ ସେ କରିଥାଏ ଦୂର ।
ସ୍ୱଦେହ ପୋଷଣ ସେହୁ କର୍ମ କଲେ ହେଲେ
ସଂସାରର ବନ୍ଧନରେ ନ ପଡ଼ଇ ଭଲେ ।
ଅଯାଚିତ ଦ୍ରବ୍ୟ ଆସି ହେଲେ ଉପସ୍ଥିତ
ହେଉ ବା ନ ହେଉ ବୋଲି ତୋଷୁଥାଏ ଚିତ୍ତ
ଶୀତ ଉଷ୍ଣ ଦୁଃଖଙ୍କୁ ସେ ସମାନ ମଣଇ
ତାହାହେଲେ ତାର କର୍ମ ବନ୍ଧ ନ ରହଇ ।
ଯା ଚିତ୍ତ ନିଷ୍କାମ ହୋଇ ଜ୍ଞାନକୁ ଆଦରେ
ସର୍ବଦା ନିଯୁକ୍ତ ଥାଏ ବିଷ୍ଣୁଙ୍କ କର୍ମରେ ।
ସମସ୍ତ କର୍ମ ତାହାର ଲୋପପ୍ରାପ୍ତ ହୋଇ
ପ୍ରାନ୍ତକାଳେ ମୋ ସମୀପେ ସେହି ଲୋକ ଯାଇ
ଅଗ୍ନି ହବିଷ୍ୟ ସ୍ରୁବ ଘୃତଆଦି ଯଜମାନ
ସେ ସମସ୍ତ ବ୍ରହ୍ମବୋଲି ଜାଣ ହେ ଅର୍ଜ୍ଜୁନ ।
ଅଲଭ୍ୟ ବ୍ରହ୍ମ ନିଶ୍ଚୟ ତାହାକୁ ମିଳଇ
କର୍ମର ଫଳ ତାହାର ଦେହେ ଲୀନହୋଇ ।
କେହି କେହି କର୍ମଯୋଗୀ ଦେବତାମାନଙ୍କୁ
ଉପାସନା କରିଥାନ୍ତି କହୁଛି ତୁମ୍ଭଙ୍କୁ ।
ଜ୍ଞାନଯୋଗୀମାନେ ବ୍ରହ୍ମସ୍ୱରୂପ ଅଗ୍ନିରେ
କର୍ମମାନ କରୁଛନ୍ତି ଲୀନ ନିରନ୍ତରେ ।
ବ୍ରହ୍ମଋଷିମାନେ ଜାଣ ସଂଯମ ଅଗ୍ନିରେ
ଇନ୍ଦ୍ରିୟମାନଙ୍କୁ ହୋମ କରନ୍ତି ସତ୍ୱରେ ।
ଇନ୍ଦ୍ରିୟ ଅଗ୍ନିରେ ଗୃହୀ ସମସ୍ତ ବିଷୟ
ଶବ୍ଦକୁ ସେ ଇଡ଼ୁଥାଏ ମନେ କରି ପ୍ରିୟ ।
ଧ୍ୟାନନିଷ୍ଠ ବ୍ୟକ୍ତିମାନେ ବୁଦ୍ଧି କର୍ମେନ୍ଦ୍ରିୟ
ପ୍ରାଣ କର୍ମକୁ କରନ୍ତି ଧ୍ୟାନାଗ୍ନିରେ ଜୟ ।
ଦାନଯଜ୍ଞ ତପଯଜ୍ଞ ଆଦି ଯୋଗଯଜ୍ଞ
ବେଦଯଜ୍ଞର ସଦୃଶ କଏ ପାର୍ଥବିଜ୍ଞ ।
ଯୋଗୀଜ୍ଞାନାଗ୍ନିରେ କରେ ପ୍ରାଣକୁ ଯେ ହୋମ
ଏହି କଥା ଦୃଢ଼େ ଜାଣ ଆହେ ନରୋତ୍ତମ ।
ପ୍ରାଣ ଅପାନରେ କେହି ମନ ରୁନ୍ଧିଦେଇ
ହୋମ କରନ୍ତି ପ୍ରାଣରେ ଅପାନକୁ ନେଇ ।
ଏହି ପ୍ରକାରେ ପୂରଇ ରେଚକ କୁମ୍ଭକ
ପ୍ରାଣାୟାମର କର୍ମରେ କରନ୍ତି ବିବେକ ।

ଆନ ଜନ କେ ନିୟତ ଆହାର କରନ୍ତି
ଇନ୍ଦ୍ରିୟରେ ପ୍ରାଣାଦିକୁ ଆହୁତି ଦିଅନ୍ତି ।
ଏହା କଲା ଲୋକ ବୋଲାଅନ୍ତି ଯଜ୍ଞବିଦ
ଯଜ୍ଞାବଶିଷ୍ଟ ଭୋଜନେ ଲଭନ୍ତି ଆମୋଦ ।
ସେହି ବଳେ ପୁଣି ସେହି ବ୍ରହ୍ମକୁ ଯାଆନ୍ତି
ଆଉଥରେ ମହୀରେ ସେ ଜନ୍ମ ନ ଲଭନ୍ତି ।
ଏ ବିଧିରେ ଯଜ୍ଞମାନ ଯେହୁ ନ କରଇ
ଇହକାଳ ପରକାଳ ତାହାର ଯେ ନାହିଁ ।
ବେଦ ଏହିରୂପେ ଯଜ୍ଞବିଧି ବାଛି ବାଛି
ପ୍ରତିଦନ କରି ସୁଖେ ଅର୍ଜ୍ଜୁନ ବଦନ୍ତି ।
ଏହି ଯଜ୍ଞମାନ କର୍ମୁଁ ହୋଇଣ ଉତ୍ପନ୍ନ
ପ୍ରାଣୀମାନଙ୍କୁ କରନ୍ତି ମୁକତି ପ୍ରଦାନ ।
ଏହା ଅବଗତ ହୋଇ ଯେ ଜନ କରଇ
ସଂସାର ବନ୍ଧନୁ ସେହୁ ମୁକତି ଲଭଇ ।
ଜ୍ଞାନଯଜ୍ଞ ଦ୍ରବ୍ୟଯଜ୍ଞଠାରୁ ଶ୍ରେଷ୍ଠତମ
ଅଟେ ବୋଲି କହିଛନ୍ତି ସବୁ ବିଜ୍ଞଜନ ।
ସର୍ବ କର୍ମଯାକ ଜ୍ଞାନଯଜ୍ଞରେ ନିହିତ
ହୋଇଅଛି ଜାଣ ଆହେ ପଣ୍ଡୁଙ୍କର ସୁତ ।
ଏହି ଜ୍ଞାନକଥା ଜ୍ଞାନୀଜନଙ୍କୁ ପଚାରି
ଯତନରେ ଶିକ୍ଷା କର ଆହେ ଧନୁର୍ଦ୍ଧାରି ।
ତେବେ ତୁମ୍ଭଙ୍କୁ ସେ ଜ୍ଞାନୀ ଜ୍ଞାନଶିକ୍ଷା ଦେବେ
ଏହି ସଂସାରବନ୍ଧନୁ ତରିଯିବ ତେବେ ।
ଜ୍ଞାନୀଜନଠାରୁ ତୁମ୍ଭେ ପ୍ରାପ୍ତହେଲେ ଜ୍ଞାନ
ବନ୍ଧୁଙ୍କୁ ମାରିବା ପାଇଁ ନ ହେବ କି ମନ ।
ମୋହଠାରୁ ଯେଉଁ ଜ୍ଞାନ ଶୁଣିଲ ଅର୍ଜ୍ଜୁନ
ସେ ଜ୍ଞାନବଳେ ଦେଖିବ ଜଗତ ସମାନ ।
ଏ ମହୀରେ ତୁମ୍ଭେ ଯେବେ ପାପୀହୋଇଥିବ
ଜ୍ଞାନପ୍ଳବେ ପାପ ସିନ୍ଧୁ ହେଲେ ତରିଯିବ ।
ଜ୍ୱାଳାନ୍ତକ କାଷ୍ଠପୋଡ଼ିଦେଲକ ସଦୃଶ
ଜ୍ଞାନାଗ୍ନି ପାପକୁ ପୋଡ଼ିଦିଅଇ ବାରେଶ ।
ଇହଲୋକେ ଜ୍ଞାନସମ ବୋଲି ଯେଉଁ କଥା
ପବିତ୍ର କରିବାପାଇଁ ନାହିଁ ମହାରଥୀ ।
ଜୀବ କର୍ମଯୋଗରେ ଯେ ସିଦ୍ଧି ଲଭ କରି
ତତ୍ତ୍ୱଜ୍ଞାନ ପ୍ରାପ୍ତହୁଏ ହେ ଗାଣ୍ଡିବଧାରୀ ।
ହୃଦରେ ଜ୍ଞାନ ଆସିଣ ହୁଏ ଉପସ୍ଥିତ
ଜ୍ଞାନକୁ ଲଭିଲେ ନର ହୁଅଇ ମୁକତ ।

ସଂଯତଇନ୍ଦ୍ରିୟ ପୁଣି ଜ୍ଞାନେ ଶ୍ରଦ୍ଧାବନ୍ତ
ଅଳ୍ପକାଳରେ ଅର୍ଜୁନ ହୁଅଇ ଶାନ୍ତ ।
ଯେହୁ ନ ଜାଣଇ ଗୁରୁ ବେଦ ଉପଦେଶ
ଯେବେ ଜାଣେ ନ କରଇ ଶ୍ରଦ୍ଧା ବୀରଈଶ ।
ଯେବେ ଶ୍ରଦ୍ଧା ହୁଏ ତେବେ କଢ଼ଇ ସଂଶୟ
ଜ୍ଞାନ ତାର ହୃଦୟରେ ନ ହୁଏ ଉଦୟ ।
ତିନଲୋକରେ ସଂଶୟମନା ଯେ ଅଟଇ
ତାର ଜାଣ ଇହ ପରକାଳେ ସୁଖ ନାହିଁ ।
ନିଷ୍କାମ କର୍ମର ଜ୍ଞାନ ଯାହାଠାରେ ଅଛି
ସଂସାରର ବନ୍ଧନେ ସେ ନ ପଡ଼େ ଭବସି ।
ହୃଦୟର ସଂଶୟ ଯେ ଅଜ୍ଞାନରୁ ଜାତ
ଛେଦ ପକାଅ ପେଷିଣ ଜ୍ଞାନଖଡ୍ଗ ପାର୍ଥ ।
କର୍ମଯୋଗ ଆଶ୍ରେକରି ଉଠ ବୀରବର
କ୍ଷତ୍ରିୟ ଧର୍ମରେ ମତ କେବେହେଁ ନ କର ।

— ——

## ୫ (କର୍ମ୍ମ ସନ୍ନ୍ୟାସ ଯୋଗ)

ଏଥୁଅନନ୍ତରେ ପାର୍ଥ କୃଷ୍ଣଙ୍କୁ ଚାହିଁଣ
ସଂଶୟମନା ହୋଇଣ ପଚାରିଲେ ପୁଣ ।
କର୍ମଯୋଗ କର୍ମନ୍ୟାସ ଯେଉଁ ଦୁଇ କଥା
ମୋତେ ତ କହିଲ ଆହେ କୃଷ୍ଣ ମହାରଥୀ ।
ଏହି ଦୁଇଟି କଥାରେ କିସ ଅଟେ ଶ୍ରେଷ୍ଠ
ତାହା ମୋର ଆଗେ କହ ହୋଇଣ ସନ୍ତୁଷ୍ଟ ।
କୃଷ୍ଣ ବୋଇଲେ ସନ୍ନ୍ୟାସକର୍ମ ଯୋଗେ ସାର
ମୋକ୍ଷ ବୋଲି ଜାଣି ଥାଅ ଆହେ ବୀରବର ।
ସନ୍ନ୍ୟାସ ଯୋଗକୁ ବଳି କର୍ମଯୋଗ ଶ୍ରେଷ୍ଠ
ତାହା ଜାଣି ଆଚରନ୍ତୁ ମନେ କରି ଇଷ୍ଟ ।
ଜାଣିବା ନିମନ୍ତେ ଯେହୁ ଆକାଂକ୍ଷା କରଇ
ନିତ୍ୟ ସନ୍ନ୍ୟାସ ବୋଲିଣ ତାହାକୁହିଁ କହି ।
ନିର୍ଦ୍ଦ୍ୱନ୍ଦ୍ୱ ଭବରେ ଯେହୁ ମୁକତ ଲଭଇ
ତୁମ୍ଭ ଆଗେ ସେହି କଥା ମୁହିଁ କହିଲଇଁ ।
ଯଜ୍ଞ ସନ୍ନ୍ୟାସ କର୍ମରେ ଯେଉଁ ଯୋଗ ଦୁଇ
ଭିନ୍ନ ଭିନ୍ନ ବୋଲି ମୁହିଁ ଶୁଣି ଆସୁଛଇଁ ।
ପଣ୍ଡିତଙ୍କ ମତ ଏହୁ ନୁହଇ ଅର୍ଜୁନ
କର୍ମ କଲେ ଦୁଇଫଳ ହୁଅଇଟି ଜାଣ ।
କର୍ମ ସନ୍ନ୍ୟାସ ଲୋକଇ ହୁଏ ଯେଉଁ ସ୍ଥାନ
କର୍ମ କଲା ଲୋକ ପ୍ରାପ୍ତ ହୁଅଇ ସେ ସ୍ଥାନ ।
ସନ୍ନ୍ୟାସ ଯୋଗକୁ ଏକ କରି ଯେ ଦେଖଇ
ଜାଣିବାର ଲୋକେ ବୋଲି ତାହାକୁହିଁ କହି
କର୍ମଯୋଗ ନ କରି ଯେ ସନ୍ନ୍ୟାସ କରଇ
କଷ୍ଟ ହୁଅଇ ଅର୍ଜୁନ ଜାଣିଥାଅ ତୁହି ।
କର୍ମଯୋଗ କଲା ଲୋକ ସନ୍ନ୍ୟାସକୁ ପାଇ
ଅଳ୍ପକାଳରେ ଅର୍ଜୁନ ବ୍ରହ୍ମ ସେ ଜାଣଇ ।
ଯୋଗରେ ଯୁକ୍ତ ବିଶୁଦ୍ଧ ବିଜିତ ଯା ଆତ୍ମା
ଜିତେନ୍ଦ୍ରିୟ ସର୍ବଭୂତେ ଦେଖେ ହେ ଏକାତ୍ମା
କର୍ମ କଲେ ସେ ଲୋକେ ନ ଲାଗେ କର୍ମଫଳ
ହେ ଅର୍ଜୁନ ଏଥେ ମନ ନ କର ଆକୁଳ ।
ଯେ ଲୋକ କର୍ମ ଯୋଗକୁ ଆଶ୍ରେ କରିଥାଏ
ତାହାଠାରେ ତତ୍ତ୍ୱଜ୍ଞାନ ନିଶ୍ଚେ ଜାତହୁଏ ।
ସେହୁ ଦେଖିଲେ ଶୁଣିଲେ ଛୁଇଁଲେ ସୁଙ୍ଘିଲେ
ଶୋଇଲେ ଖାଇଲେ କିବା ନିଃଶ୍ୱାସ ଛାଡ଼ିଲେ
କହିଲେ ଛାଡ଼ିଣ ଦେଲେ ଘେନିଲେ ଗମିଲେ
ଚକ୍ଷୁ ଦୁଇଟି ବୁଜିଲେ କିବା ଫିଟାଇଲେ ।
ବୋଲେ ଇନ୍ଦ୍ରିୟଗଣର ଅଟେ ଏହି ଚେଷ୍ଟା
ମୋହର ନୁହଇଟି ଯେ କରିବା କେଉଁଠା ।
ଏହିପରି କରୁଥାନ୍ତି ଭାବନା ଯେମାନେ
କର୍ମେ ଲିପ୍ତ ନୁହନ୍ତି ସେ ପାର୍ଥ ଘେନ ମନେ ।
ଈଶ୍ୱରଙ୍କଠାରେ କର୍ମଫଳ ସମର୍ପଇ
କର୍ମଫଳ ତ୍ୟାଗ କରି କର୍ମ ସେ କରଇ ।
ପାପରେ ସେ ଲୋକ ଯେବେ ନ ହୁଅଇ ଲିପ୍ତ
ପଦ୍ମପତ୍ରେ ଜଳ ଥିଲା ପ୍ରାୟେ ହୁଏ ଖ୍ୟାତ ।
କର୍ମ ଯୋଗୀଗଣ ଆତ୍ମ ଶୁଦ୍ଧିର ସକାଶେ
କର୍ମଫଳ ପରିତ୍ୟାଗ କରନ୍ତି ହରଷେ ।
କାୟ ମନ ବୁଦ୍ଧି ଆଉ ଇନ୍ଦ୍ରିୟରେ କର୍ମ
କରୁଥାନ୍ତି ଜାଣ ଆହେ ବୀରଙ୍କ ଉତ୍ତମ ।
କର୍ମଯୋଗୀମାନେ କର୍ମ ଫଳକୁ ତେଜିଣ
ମୋକ୍ଷପଦ ପ୍ରାପ୍ତ ହୁଅନ୍ତି ଭଲରୂପେ ଜାଣ ।
ମୋହବଶ ହୋଇ ଯେହୁ କାମ୍ୟକର୍ମ କରେ
ଭବବନ୍ଧ ଭ୍ରମରେ ସେ ପଡ଼େ ନିରନ୍ତରେ ।
ଜିତେନ୍ଦ୍ରିୟ ହୋଇ କର୍ମ ଯେହୁ ଛାଡ଼ିଦିଏ
ନବଦ୍ୱାର ଦେହ ଘରେ ସୁଖେ ରହିଥାଏ ।

କରୁଛ କଗନ୍ନାଥ ବୋଲିବା ଏ କଥା
ତାହା ନିକଟରେ କେବେ ନ ଥାଏ ସର୍ବଥା ।
କହେ କର୍ମଫଳକୁ ସେ ଶିବ କର ନାହିଁ
ସ୍ୱଭାବେ ଗୁଣରେ ସେହୁ ଜାତ ହୋଇଛଇଁ ।
ଏହି ସକାଶୁ ଈଶ୍ୱର କାର ପାପପୁଣ୍ୟ
ନ ଘେନନ୍ତି ଜାଣ ତୁହେ ପାଣ୍ଡବ ଅର୍ଜ୍ଜୁନ ।
ଜ୍ଞାନିଙ୍କର ଅଜ୍ଞାନରେ ଆବୃତ ହୋଇଣ
ଭଗବାନଙ୍କୁ ନିନ୍ଦଇ ଅଜାଉଣେ ପୁଣ ।
ଅଜ୍ଞାନ ଘୁଞ୍ଚିଣ ଯେବେ ଆତ୍ମଜ୍ଞାନ ପାଏ
ତମ ବିନାଶଇ ତାର ଆଦିତ୍ୟର ପ୍ରାୟେ ।
ଆତ୍ମଜ୍ଞାନ ହେତୁ ନାଶ ଅଜ୍ଞାନ ସେ ଯାଇ
ଏହି କଥା ତୁମ୍ଭଙ୍କୁ ମୁଁ କହିଲି ବୁଝାଇ ।
ବୁଦ୍ଧି ନିଷ୍ଠା ଆଶ୍ରାକଲେ ଈଶ୍ୱରଙ୍କଠାରେ
ହୃଦପ ପାତକମାନେ ପଳାଅନ୍ତି ଦୂରେ ।
ମୁକତ ଲଭଇ ଏଥେ ସନ୍ଦେହ ଯେ ନାହିଁ
ବୀରକୁଳ ଶ୍ରେଷ୍ଠ ଆହେ ଅରିଜୁନ ଭାଇ ।
ପଣ୍ଡିତ ଜନ ଚଣ୍ଡାଳ ଆଉ ଗାଈ ହାତୀ
ଶ୍ୱାନକୁ ସମ ମଣଇ ଯେଉଁ ବ୍ୟକ୍ତି ମତି ।
ହେ ଅର୍ଜ୍ଜୁନ ତାହାକୁହିଁ ଜ୍ଞାନୀ ବୋଲି କହି
ଆନଠାରେ ସେ କଥା କି ସମ୍ଭବ ହୁଅଇ ।
ଯାର ମନ ସବୁଠାରେ ଅଟଇ ସମାନ
ତାକୁ କେଭେ ନ ଲାଗଇ ସଂସାର ବନ୍ଧନ ।
ବ୍ରହ୍ମ ଅଟନ୍ତି ସମାନ ସବୁଠାରେ ଜନ୍ତ
ତେଣୁ କରି ସମଦର୍ଶୀ ତାହାକୁ ବୋଲନ୍ତି ।
ପ୍ରିୟକଥା ଶୁଣି ଆନନ୍ଦିତ ନ ହୁଅଇ
ଅପ୍ରିୟ କଥା କହିଲେ ଉଦ୍‌ବିଗ୍ନ ନ ହୋଇ ।
ଏହିପରି ଯେଉଁ ଲୋକ ହୁଅଇ ଅର୍ଜ୍ଜୁନ
ତାହାକୁ ବୋଲନ୍ତି ବ୍ରହ୍ମବିଦ ଧୀରଜନ ।
ବିଷୟରେ ଆସକ୍ତ ନ ହେଲେ ଯେଉଁ ସୁଖ
ଆତ୍ମାରେ ଲଭଇ ନାହିଁ ଆହେ ବୀରଶିଖ ।
ବ୍ରହ୍ମଯୋଗରେ ଯଦ୍ୟପି ନିଯୁକ୍ତ ହୁଅଇ
ସେହି ଅକ୍ଷୟ ସୁଖକୁ ପ୍ରିୟ ସେ ମଣଇଁ ।
ଆହେ ପାର୍ଥ ଯେଉଁ ଲୋକ ଜ୍ଞାନବାନ ହେବ
ସୁଖ ଦୁଃଖ ବୋଲି ସେହୁ ମନେ ନ ଘେନିବ
ଇହଲୋକ କାମକ୍ରୋଧ ଆବର ଉଦ୍‌ବେଗ
ଦେହ ଶେଷ ପର୍ଯ୍ୟନ୍ତ ଯେ ସହେ ମହାଭାଗ ।
ସେ ଲୋକକୁ ଗୀତା ଯୋଗୀ ସୁଖୀ ବୋଲି କହି
ଆନଠାରେ ଏହି ଗୁଣ ସମ୍ଭବ ନାହିଁ ।
ଆତ୍ମସୁଖୀ ଆତ୍ମ ରମ ଆତ୍ମାଦୃଷ୍ଟି ଯାର
ଏ ପ୍ରକାରେ ଏ ମହୀରେ ଅଛି ଯେଉଁ ନର ।
ବ୍ରହ୍ମଠାରେ ସେହି ଲୋକ ଲଭଇ ସେ ଲୟ
ଏହି କଥା ଜାଣ ଆହେ ବୀର ଧନଞ୍ଜୟ ।
ସମଦର୍ଶୀ ନିଷ୍ପାପୀ ନିଃସଂଶୟ ଯା ମତି
ଯା ଚିତ୍ତ ସବୁପ୍ରାଣୀଙ୍କ ହିତେ ସଦା ରତି ।
ସେହି ଲୋକ ବ୍ରହ୍ମଠାରେ ଲୟକୁ ପାଆନ୍ତି
ନ କର ଶଙ୍କା ତତ୍ତ୍ୱଦର୍ଶୀଙ୍କର ନାତି ।
ଯେଉଁ ଲୋକ କାମ କ୍ରୋଧ କରିଥାଏ ଦୂର
ସଂଯତଚିତ୍ତ ହୋଇଣ ଥାଏ ନିରନ୍ତର ।
ଆତ୍ମାର ତତ୍ତ୍ୱ କଥାକୁ ହୃଦେ କରିଥାଏ
ଜୀବନ୍ମୁକ୍ତ ବୋଲି ତାକୁ ବୋଲନ୍ତି ସର୍ବେ ।
ଚକ୍ଷୁ ଦୁଇଟି ଭ୍ରୂଦ୍ୱୟର ମଧ୍ୟରେ ଥୋଇବ
ବିଷୟ ଚିନ୍ତା ହୃଦୟୁ ବାହାରେ ରଖିବ ।
ପ୍ରାଣ ଅପାନକୁ ନେଇ ନାସିକା ମଧ୍ୟରେ
ସଞ୍ଚାର କରି ରୁନ୍ଧିବ ତାକୁ ନିରନ୍ତରେ ।
ଏରୂପେ ଇନ୍ଦ୍ରିୟ ମନ ଏ ଦୁଇକି ଜିଣି
ଛାଡ଼ିଥାଏ ଇଚ୍ଛା ପୁଣି ଭୟ କ୍ରୋଧ ଶ୍ରେଣୀ ।
ଏହି ଲୋକ ସବୁକାଳେ ହୁଅନ୍ତି ମୁକତ
ଏହା ଜାଣ ହେ ଅର୍ଜ୍ଜୁନ କୁନ୍ତୀଦେବୀ ସୁତ ।
ଯାଗ ତପଆଦି ଭୋକ୍ତା ପ୍ରାଣୀଙ୍କ ଈଶ୍ୱର
ଅନ୍ତର୍ଯ୍ୟାମୀ ବୋଲି ମୋତେ ଜାଣଇ ଯେ ନର
ମୋହର କୃପାରେ ସେହୁ ମୁକତ ଲଭଇ
ହେ ଅର୍ଜ୍ଜୁନ ହୃଦେ ଶଙ୍କା କିଛି କର ନାହିଁ ।

—※—

## ୬ (ଅଭ୍ୟାସ ଯୋଗ)

ଏମନ୍ତେ ଭାଗବତ କହିଲେ ହେ ପାର୍ଥ
କଥାଏ କହିବି ପୁଣ ଶୁଣ ଦେଇ ଚିତ୍ତ ।
କର୍ମଫଳ ଆଶା ତେଜି ଶାସ୍ତ୍ରକୁ ଯେ ଘେନ
କର୍ମ କରଲେ ସନ୍ନ୍ୟାସୀ ଯୋଗୀ ବୋଲି ମାନ
ଯାଗ ଜଳ ଛାଡ଼ି ସେହୁ କେବଳ ଛାଡ଼ଇ
ତାହାକୁ ସନ୍ନ୍ୟାସୀ ବୋଲି ଅର୍ଜ୍ଜୁନ ନ କହି
ସନ୍ନ୍ୟାସ ବୋଲି ଯାହାକୁ କହନ୍ତି ଅର୍ଜ୍ଜୁନ ।
କର୍ମଯୋଗ ବୋଲି ପାର୍ଥ ତାହାକୁହିଁ ଜାଣ ।

ଯେ ଅବାଞ୍ଛ ଫଳ ସଂକଳ୍ପ ତ୍ୟାଗ ନ କରିବ
ଯୋଗୀ ବୋଲିଣ ତାହାକୁ କଏ ବା କହିବ ।
ଜ୍ଞାନ ହେବା ପରଯନ୍ତ କରୁଥିବ କର୍ମ
ଜ୍ଞାନ ଜନ୍ମିଲ ଉତ୍ତାରୁ ଛାଡ଼ିବ ସେ ଧର୍ମ ।
ସେକାଳେ ବିଷୟ କର୍ମେ ଆସକ୍ତ ନ ଥାଇ
ଯୋଗଚିତ୍ତେ ସ୍ଥିର ବୋଲି ତାକୁ ସିନା କହି ।
ମନ ଗୋଟିକ ଯାହାର ବଶ ହୋଇ ନାହିଁ
ଜଗତରେ ତାହାଠାରୁ ଶତ୍ରୁ କାହିଁ ନାହିଁ ।
ଶୀତ ଉଷ୍ଣ ସୁଖ ଦୁଃଖ ମାନ ଅନାଦର
ରାଗ ଦ୍ୱେଷ ବିବର୍ଜିତ କରିଛି ଯେ ନର ।
ରକ୍ଷି ଅଛଇ ଆତ୍ମାକୁ ତାକୁ ପରମାତ୍ମା
ଗୋଚର ହୁଏ ଜାଣ ହେ ଅର୍ଜ୍ଜୁନ ମହାତ୍ମା ।
ଜ୍ଞାନ ବିଜ୍ଞାନରେ ଯେହୁ ତୃପ୍ତି ନିର୍ବିକାର
ମାଟି ସୁନା ପଥରକୁ ସମାନ ବେଭାର ।
କରିଣ ଯେଉଁ ମାନବ ଜିତେନ୍ଦ୍ରିୟ ହୁଏ
ଯୋଗାରୂଢ଼ ଯୋଗୀ ସେହି ଜଗତେ ବୋଲାଏ
ସୁହୃଦ ମଧ୍ୟସ୍ଥ ମିତ୍ର ବୈରୀ ଦ୍ୱେଷ ବନ୍ଧୁ
ଉଦାସୀନ ସାଧୁଜନ ପାପୀ ଯେ ଅସାଧୁ ।
ଏମାନଙ୍କଠାରେ ବୁଦ୍ଧି କଲେ ସମତାକୁ
ଯୋଗାରୂଢ଼ ଯୋଗୀ ତେବେ ସମନ୍ତୁହେ ତାକୁ
ଯୋଗୀଲୋକ ଏକାନ୍ତରେ ମନକୁ ନିବେଶି
ଯୋଗ ସାଧନ କରିବ ସାବଧାନେ ବସି ।
ସଂଯମ କରିବ ଦେହ ଚିତ୍ତ ଏକା ହୋଇ
କଉଣସି ବିଷୟରେ ମନ ନ ବଳାଇ ।
ବିଶୁଦ୍ଧ ସ୍ଥାନରେ ଉଚ୍ଚ ଆସନ କରିବ
ଆସନରେ ଯୋଗନିଷ୍ଠ ନିଶ୍ଚଳ ହୋଇବ ।
କୁଶ ଆସନ ଖଣ୍ଡିଏ ଭୂମିରେ ପକାଇ
ମୃଗଛାଲ ତା ଉପରେ ଦେବ ଯେ ବିଛାଇ ।
ଛାଲର ଉପରେ ପୁଣି ପକାଇ ବସନ
ତହିଁରେ ଚକା ପକାଇ କରିବ ଆସନ ।
ଏକାଗ୍ର ମାନସ ହୋଇ ଚିତ୍ତ ନିବେଶିବ
ଇନ୍ଦ୍ରିୟର କ୍ରିୟାମାନ ନିଷେଧ କରିବ ।
ଏହି ପ୍ରକାରେ ଯୋଗକୁ କରିବ ଅଭ୍ୟାସ
ତେବେ ଯାଇ ଯୋଗସିଦ୍ଧ ହୋଇବ ନରେଶ
ଶରୀରର ମଧ୍ୟଭାଗ ପୁଣି ଗ୍ରୀବା ଶିର
ସମାନ ଭାବରେ ରଖି କରିବ ଯେ ସ୍ଥିର ।

ଏକାଗ୍ର ହୋଇ ନାସିକା ଅଗ୍ରେ ଦୃଷ୍ଟି ଦେଇ
ମନକୁ ସ୍ଥିର କରିବ ଭୟ ଛାଡ଼ି ଦେଇ ।
ବ୍ରହ୍ମଚର୍ଯ୍ୟେ ରହି ମନ ସଂଯମ କରିଣ
ଚିତ୍ତକୁ କରିଣ ମୋରଠାରେ ସମର୍ପଣ ।
ମୋଠାରେ ତତ୍ପର ହୋଇ ସର୍ବଦା ରହିବ
ଯୋଗଫଳ ପ୍ରାପ୍ତପାଇଁ ଯେବେ ଇଚ୍ଛା ଥିବ ।
ଏହିରୂପେ ଯୋଗୀ ଯୋଗ କରିଣ ଅଭ୍ୟାସ
ମୋକ୍ଷ ପଦକୁ ସେ ପାଏ ହେ ପଣ୍ଡୁଙ୍କ ଶିଷ୍ୟ
ଖାଇବା ଶୋଇବା ଚାଆଇଁବା ଖତମାନ
ଯୋଗର କାରଣ କେଭେ ନୁହଇଟି ଜାଣ ।
ଯୋଗୀ ଯେବେ ନ ଖାଇଣ ଯୋଗ ସାଧିବ ସେ
ଯୋଗସିଦ୍ଧ ତାହାର ଯେ କେଭେ ନ ପ୍ରକାଶେ
ଦେହାନୁରୂପେ ଆହାର ବିହାର କରିବ
ତେବେ ତାର ଯୋଗସିଦ୍ଧି ପ୍ରକାଶିତ ହେବ ।
ଅଧିକ ନ ଶୋଇ ଚିତ୍ତେ ହୋଇଣ ଜାଗ୍ରତ
କରିଥିବ ସବୁ ଅତି ଯତନେ ସଂଯତ ।
ଯେ କାଳେ ଆତ୍ମାରେ ଚିତ୍ତ ବାସ କରେ ଆସି
ସେହିକାଳେ ଯୋଗୀ ବୋଲି ତାହାକୁହିଁ ଭାଷି
ନିର୍ବାତ ଦେଶର ଦୀପପ୍ରାୟେ ଯୋଗୀ ଯେବେ
ଯୋଗରେ ରହଇ ଯୋଗ ସିଦ୍ଧ ହୁଏ ତେବେ
ଯୋଗ ଅଭ୍ୟାସରେ ସଦା ଚିତ୍ତକୁ ରୁନ୍ଧଇ
ବିଷୟକୁ ବିଷପ୍ରାୟ ଦିଅଇ ପକାଇ ।
ମନ ମଧ୍ୟରେ ଆତ୍ମାକୁ କରଇ ଦର୍ଶନ
ତେବେ ସେ ବୋଲାଏ ସେହି ଯୋଗଶିଖାଜନ
ସେ ସମୟେ ଜଣାଯାଏ ତାକୁ ଅତି ସୁଖ
ତେବେ ଜାଣ ବୋଲାଏ ସେ ନର ଯୋଗଶିଖ
ଯୋଗୀମାନେ ଯେବେ ସୁଖେ ତହିଁରେ ରହନ୍ତି
ତହିଁରୁ ସେମାନେ ବିଚଳିତ ନ ହୁଅନ୍ତି ।
ଆତ୍ମାଲାଭକୁ ମଣନ୍ତି ଅତିବ ସୁଲଭ
ଖୋଜିଲେ ମହୀରେ ଆଉ ନ ପାଆନ୍ତି ଲାଭ ।
ଆତ୍ମାଲାଭକୁ ଯଦ୍ୟପି ସୁଖୀ ସେ ହୁଅନ୍ତି
ଶୀତ ଉଷ୍ଣ ଦୁଃଖରେ ସେ କେଭେ ନ ପଡ଼ନ୍ତି
ଯୋଗସିଦ୍ଧ ନ ହୋଇଲେ ନିର୍ବେଦ ନୋହିବ
ନିରନ୍ତରେ ଯୋଗରେ ସେ ଉଡ଼ି ବୁଲୁଥିବ ।
ସଙ୍କଳ୍ପରେ କାମ ଜାଣ ଉତ୍ପତ୍ତି ହୁଅଇ
ଯୋଗରେ ଜାଣ ହେ ପାର୍ଥ ସେ ନାଶି ପକାଇ ।

ଏଥିପାଇଁ ଆହେ ପାର୍ଥ ଛାଡ଼ି କାମନାକୁ
ଇନ୍ଦ୍ରିୟଙ୍କ ସଂଯୋଗରେ କରିବ ଯୋଗକୁ ।
ମନ ଯଦ୍ୟପି ବିଷୟେ ହେବ ଉପଗତ
ଆତ୍ମାକୁ ଆଣି ତାହାକୁ କରିବ ଆବୃତ୍ତ ।
ସମସ୍ତ ଚିନ୍ତାମାନଙ୍କୁ ପଛକୁ ପକାଇ
ଏକା ଯୋଗେ ହେଉଥିବ ମନକୁ ବୁଡ଼ାଇ ।
ଯେତେକ ମନ କେଉଁସ୍ଥାନେ ବଳାକାରେ ଯିବ
ସେଠାବରୁ ତାକୁ ଆଣି ଆତ୍ମାରେ ରଖିବ ।
ମନଟି ଯେକାଳେ ପାର୍ଥ ଶାନ୍ତ ହୋଇଯାଏ
ସେହିକାଳେ ଜାଣ ବ୍ରହ୍ମସୁଖ ଭୋଗ ଯାଏ ।
ଯୋଗୀ ଲୋକ ମନ ଯେବେ ଆସ୍ଥରେ ରହଇ
ତେବେ ତାର ବ୍ରହ୍ମ ପ୍ରାପ୍ତି ନିଶ୍ଚିତ ହୁଅଇ ।
ଯୋଗୀଲୋକ ସବୁଙ୍କର ଜାଣେ ଏକ ଆତ୍ମା
ମୋହର ଆତ୍ମା ସମାନ ତାହାଙ୍କର ଆତ୍ମା ।
ସବୁଠାରେ ଦେଇଅଛୁ ମୁହିଁ ତ ବ୍ରହ୍ମଙ୍କୁ
ହେ ପାର୍ଥ ଏଥିରେ ଅଛୁ ବସ କହିବାକୁ ।
ଯେଉଁଲୋକ ସବୁଠାରେ ମୋତେ ଏକା ଦେଖେ
ସବୁ ମୋ ଦେହରେ ଅଛୁ ବୋଲିଣ ନିରେଖେ
ମୁହିଁ ସେ ଲୋକକୁ କେବେ ନୁହଇ ଅଦୃଶ୍ୟ
ସେ ଲୋକ ଗୋଟି ଅଟଇ ମୋହର ସଦୃଶ ।
ଯେଉଁ ଲୋକ ମୋତେ ଜାଣେ ସବୁର ଆଶ୍ରୟ
ଉତ୍ତମ ବୈରାଗୀ ସେହି ଜାଣିଥା ନିଶ୍ଚୟ ।
ନିଜ ସୁଖ ଦୁଃଖ ପ୍ରାୟେ ପରର ମଣଇ
ହେ ଅର୍ଜ୍ଜୁନ ଜାଣ ତୁମ୍ଭେ ଯୋଗୀଶ୍ରେଷ୍ଠ ସେହି
ଅର୍ଜ୍ଜୁନ ବୋଇଲେ ଯୋଗେ ଯାହାର ମାନସ
ସମାନ ହୋଇ ରହଇ ବୋଲ ପୀତବାସ ।
ମୋର ଆଗରେ କହିଲୁ ହୋଇଣ ପ୍ରସନ୍ନ
ମୋହର ମତରେ କପା ଚଞ୍ଚଳ ମୋ ମନ ।
ଏଣୁ ଯୋଗସ୍ଥିତି କିଏ ଜାଣି ନ ପାରଇ
କୃପାକରି କହ ମୋତେ ରୁକ୍ମିଣୀର ସାଇଁ ।
ମାନସ ହେବ ଇନ୍ଦ୍ରିୟ ଦୁହିଙ୍କ କ୍ଷୋଭକ
ପୁଣି ବଳୀୟାର ଦୃଢ଼େ ଅଟେ ସେ ଅଧିକ ।
ଯେଉଁ ରୂପରେ ଦୁଷ୍କର ବାୟୁ ରୁନ୍ଧିବାର
ସେହିରୂପେ ବୋଲୁଛି ମୁଁ ମନ ରୁନ୍ଧିବାର ।
ଶ୍ରୀକୃଷ୍ଣ ବୋଇଲେ ଯାହା କହିଲ ଅର୍ଜ୍ଜୁନ
ସ୍ୱଭାବେ ଅତି ଚଞ୍ଚଳ ଅଟଇ ଯେ ମନ ।
ଏହା ଜାଣି ଅଭ୍ୟାସ ଯେ ବଇରାଗ୍ୟ ଦୁଇ
କଥାରେ ରଖିଥିବ ହେ ତାକୁ ଯତ୍ନ ବହି ।
ମନକୁ ସଂଯତ କରି ରଖି ନ ପାରିଲେ
ଯୋଗପ୍ରାପ୍ତ ନ ହୁଅନ୍ତି ଜାଣିଥାଅ ଭଲେ ।
ମନ ବଶ ହୋଇଅଛି ଯାହାର ଅର୍ଜ୍ଜୁନ
ଯୋଗ ତାହାର ସର୍ବଦା ଅଟଇ ଅଧୀନ ।
ଅର୍ଜ୍ଜୁନ ବୋଇଲେ ଯେବେ ଯୋଗ ସାଧୁଥିବ
ଦେବଯୋଗେ ମନ ଯେବେ ବିଚଳିତ ହେବ ।
ଏହି ସମୟରେ ତାର ହୋଇଲେ ମରଣ
କି ଗତି ହୋଇବ ସେହି କହ ନାରାୟଣ ।
ଯୋଗ କର୍ମଫଳ ଦୁଇ ପ୍ରାପ୍ତ ନ ହୋଇଲେ
ମନ ମଧ୍ୟରେ ଗଣନା ହେବ କି ସେ ଭଲେ ।
ଯୋଗଭ୍ରଷ୍ଟ ହୋଇକରି ବିନାଶ ଲଭିଲେ
ପୁଣ୍ୟଲୋକ ଭୋଗ ପୁଣି ମର୍ତ୍ତ୍ୟେ ଜନମିଲେ ।
ଧର୍ମଲୋକ କୁଳେ ଜନ୍ମି ଭୋଗକୁ କରଇ
ନଭୁବା ଯୋଗୀ କୁଳରେ ଜନମ ଲଭଇ ।
ପୂର୍ବ ଜନ୍ମଦେହ ଯୋଗ ବୁଦ୍ଧି ତାକୁ ଦିଅନ୍ତି
କୃପାକରିଣ ଈଶ୍ୱର ପ୍ରସନ୍ନ ହୁଅନ୍ତି ।
ବୁଦ୍ଧି ଦେବାକ୍ଷଣି ଯେତେ ଯତନ କରଇ
ହେ ଅର୍ଜ୍ଜୁନ ଅହର୍ନିଶି ଯୋଗରେ ବସଇ ।
ପୂର୍ବ ଅଭ୍ୟାସରୁ ତାର ହୁଅଇ ଅଭ୍ୟାସ
ଏଣୁ ଯୋଗ ମାନସରେ କରେ ଅଭିଳାଷ ।
ଯୋଗ ଇଚ୍ଛା କରିଥିବା ଲୋକ କର୍ମଗତ
ଛାଡ଼ଇ ଆହେ ଅର୍ଜ୍ଜୁନ ସବୁ ମନ ମତ ।
ଯୋଗ କଲ ଲୋକ ଗତି କସି କି ବର୍ଣ୍ଣିବ
ହେ ଅର୍ଜ୍ଜୁନ ମହାଭାଗ ପଣ୍ଡୁଙ୍କ କୁମର ।
ତପସ୍ୱୀଙ୍କ ଜ୍ଞାନ କର୍ମ ମାନ୍ତ ଯୋଗୀଜନ
ଅଧିକ ତୁମ୍ଭେ ଯୋଗକୁ ସାଧ ପ୍ରତିଦିନ ।
ବ୍ରହ୍ମ ଜାଣିପାରି ଯେଉଁ ଯୋଗୀ ମୋତେ ଭଜେ
ସେହୁ ବଡ଼ ଅଟେ ଜାଣ ଯୋଗୀଙ୍କ ସମାଜେ
ଏହି ସକାଶରୁ ମୋର ଭକ୍ତ ହେବା ପାଇଁ
ଯାହା କହୁଅଛି ତାହା ଶୁଣ ମନଦେଇ ।
ଆସ ଯୋଗ ଶିରୋମଣି କହେ ଭକ୍ତିଯୋଗ
ନ ବୋଲିଣ ଅରଜୁନ କଲେକ ସରାଗ ।
ଯୋଗୀଙ୍କ ଦୁର୍ଲ୍ଲଭ ଯେଉଁ କୃଷ୍ଣ ପାଦପଦ୍ମ
ମନ ଭୃଙ୍ଗ ରହୁ ମୋର କରି ତହିଁ ସଦ୍ମ ।

---

## ୭ (ଜ୍ଞାନବିଜ୍ଞାନ ଯୋଗ)

ଏ ଅନ୍ତେ କୃଷ୍ଣ ବୋଇଲେ ଶୁଣ ହେ ଅର୍ଜୁନ
ମୋଠାରେ ମନ ଦେଇଥାଅ ପ୍ରତିଦିନ ।
ଯୋଗ ଅଭ୍ୟାସିଣ ଯେଉଁ ପ୍ରକାରରେ ମୋତେ
ଜାଣିବ ତାହା କହୁଛି ଶୁଣ ଏକଚିତ୍ତେ ।
ଯେଉଁ ଜ୍ଞାନ ଆଜ ମୁହିଁ ତୋତେ କହିବଇଁ
ତାହା ଜାଣିଲେ କାହିଁରେ ଭ୍ରମ ହେବ ନାହିଁ
ମନୁଷ୍ୟମାନଙ୍କ ମଧ୍ୟେ ଯେଉଁ ଜନମାନେ
ସିଦ୍ଧିର ଇଚ୍ଛା କରନ୍ତି କସି ପ୍ରତିଦିନେ ।
ସିଦ୍ଧିକୁ ଯେମାନେ ଅତିଶୟ ଯତ୍ନକର
ଜାଣନ୍ତି ସେମାନେ ମୋତେ ପାର୍ଥ ଧନୁର୍ଦ୍ଧାର
ଭୂମି ସଲିଳ ପବନ ଅନଳ ଗଗନ
ବୁଦ୍ଧି ଅହଙ୍କାର ଆଦି ସଙ୍ଗତରେ ମନ ।
ଏ ଆଠୋଟି ଅଟେ ମୋର ଅପରା ପ୍ରକୃତି
ଏହା ବ୍ୟତିରେକେ ଜୀବ ପରା ପରକୃତି
ଜଗତ ରୂପ ଧରିବା କାରଣରୁ ପରା
ତାହାର ନାମ ହୋଇଛି ଜାଣ ପରମ୍ପରା ।
ସ୍ଥାବର ଜଙ୍ଗମ ପରା ଅପରାରୁ ଜାତ
ହୋଇଅଛନ୍ତି ଜାଣ ହେ ବୀରବର ପାର୍ଥ ।
ପରା ଅପରା ମୋଠାରୁ ଜନ୍ମ ଲଭିବାରୁ
ସୃଜନ ସଂସାର ହୁଏ ମୋହର ଯୋଗରୁ ।
ଜଗତୁଁ ମୋଠୁଁ ଅଧିକ ହୋଇ କେହି ନାହିଁ
ଏହା ଭଲରୂପେ ପାର୍ଥ ଜାଣିଥାଅ ତୁହି ।
ସୂତ୍ରେ ମଣି ଗୁନ୍ଥା ହେଲ ପରାୟେ ଜଗତ
ମୋହର ଦେହେ ଜଗତ ହୋଇଅଛି ସ୍ଥିତ ।
ଜଳରୂପ ରସ ସିନା ଅଟଇ ସେ ମୁହିଁ
ଚନ୍ଦ୍ର ସୂର୍ଯ୍ୟଙ୍କର ରଶ୍ମି ପ୍ରଭା ମୋତେ କହି ।
ସମସ୍ତ ଦେବତାଙ୍କର ଅଟେ ମୁଁ ପ୍ରଣବ
ଆକାଶର ଶବ୍ଦ ମୁହିଁ ହେ ଦ୍ରୌପଦୀଧବ ।
ମନୁଷ୍ୟମାନଙ୍କର ମୁଁ ପୌରୁଷ ଅଟଇ
ପୃଥିବୀ ମଧ୍ୟରେ ପୁଣି ଗନ୍ଧ ଅଟେ ମୁହିଁ ।
ଅଗ୍ନିଙ୍କର ତେଜ ମୁହିଁ ପ୍ରାଣୀଙ୍କ ଆୟୁଷ
ଏହା ତୁ ନିଶ୍ଚୟ ଜାଣ ଆହେ ବୀରଈଶ ।
ତପସ୍ୱୀଙ୍କ ତପ ମୁହିଁ ପ୍ରାଣୀଙ୍କ ଜୀବନ
ଏ କଥା ନିଶ୍ଚୟ ତୁହି ଜାଣ ହେ ଅର୍ଜୁନ ।

ବୁଦ୍ଧିମନ୍ତର ବୁଦ୍ଧି ମୁଁ ପ୍ରଗଳଭ ପ୍ରାଗଳଭ୍ୟ
ବୋଲି ଜାଣିଥାଅ ଆହେ ଧାନୁଷ୍କ ଦୁର୍ଲ୍ଲଭ ।
କାମ ରାଗ ବିବର୍ଜିତ ବଳବନ୍ତଙ୍କର
ବଳ ମୁହିଁ ତ ଅଟଇ ଜାଣ ଆହେ ବୀର ।
ପ୍ରାଣୀମାନଙ୍କର ଧର୍ମ ଅବିରୁଦ୍ଧ କାମ
ମୁହିଁ ସିନା ଅଟଇ ସେ ହେ ବୀର ଉତ୍ତମ ।
ସାତ୍ତ୍ୱିକ ରାଜ ତାମସ ଏହି ତିନଭାବ
କର୍ତ୍ତା ତ ମୁହିଁ ଅଟଇ ହେ ନରପୁଙ୍ଗବ
ଏହି ତିନଭାବଠାରେ ମୁହିଁ ଥାଏ ନାହିଁ
ମୋଠାରେ ବଳେ ବଳେ ଅଛନ୍ତି ସେ ରହି
ଜଗତଯାକ ଏ ତିନଗୁଣରେ ମୋହିତ
ମୋତେ ଜାଣିବାକୁ ଏହୁ ନୁହନ୍ତି ସମର୍ଥ ।
ଗୁଣମୟୀ ଦୈବୀମାୟା ଯୋଟିଛି ମୋହର
ତାହାକୁ ତରିବାପାଇଁ ନାହିଁ କେହି ନର ।
ମୋହର ଶରଣ ବିନା ସେ ମାୟାଜଳକୁ
ଲେକା ମାନ ନାହିଁ ଆଉ କହୁଛି ତୁମ୍ଭଙ୍କୁ ।
ଯେଉଁମାନେ ମୂଢ଼ ପୁଣି ଅସୁର ସ୍ୱଭାବ
ମୋଠାରେ ତାଙ୍କ ଚିତ୍ତ ଯାଏନାହିଁ ଠାବ ।
ରୋଗ ଜିଜ୍ଞାସୁ ଧନାର୍ଥୀ ଜ୍ଞାନୀମାନେ ନିତ୍ୟେ
ସୁକୃତ ଥିଲେ ହେ ପାର୍ଥ ଭଜନ୍ତି ମୋତେ ।
ଏହି ଚାରିଜନ ମଧ୍ୟେ ଜ୍ଞାନୀ ଯେ ଭଜଇ
ବଡ଼ ବୋଲି ହେ ଅର୍ଜୁନ ତାହାକୁହିଁ କହି ।
ଜ୍ଞାନୀର ମୁଁ ଅଟେ ପ୍ରିୟ ଜ୍ଞାନୀ ମୋର ପ୍ରିୟ
ଏହି କଥା ଧ୍ରୁବ ବୋଲି ଜାଣ ଧନଞ୍ଜୟ ।
ଯେରୂପେ ସେରୂପେ ହେଉ ଭଜିଲେ ମୁକତି
ଦିବ୍ୟଜ୍ଞାନୀମାନେ ମୋର ଆତ୍ମା ବୋଲିଅନ୍ତି ।
ଆହେ ଅର୍ଜୁନ ସଂଶୟ ନ କର ମନରେ
ଯେତେ କଥା କହିଲି ମୁଁ ତୁମ୍ଭର ଆଗରେ ।
ଯେମାନେ କାମରେ ଅବା ଦୃଢ଼ମନା ହୁଅନ୍ତି
ଆନ ଦେବତାମାନଙ୍କୁ ଆଶ୍ରୟ କରନ୍ତି ।
ଯେ ଅବା ଯେଉଁ ଦେବଙ୍କୁ ଯେଉଁ କାମନାରେ
ଭଜେ ପୂର୍ଣ୍ଣ କରେ ମୁହିଁ ପ୍ରସନ୍ନ ମନରେ ।
ଏଣୁକରି ତାର ବୁଦ୍ଧି ହୁଅଇ ନିଶ୍ଚଳ
ସବୁବେଳେ ସେହି କାର୍ଯ୍ୟ କରେ କୁନ୍ତୀବାଳ
ଏହି ଫଳମାନ ଅଳ୍ପଦିନେ ନାଶଯାଏ
ମୋହର ଭଜନ ଫଳ ସବୁଦିନେ ଥାଏ ।

ଦେବତାଙ୍କୁ ପୂଜାକଲେ ପାନ୍ତି ଦେବତାଙ୍କୁ
ମୋତେ ଯେହୁ ପୂଜେ ମୁହିଁ ଦେଖାଦଏ ତାଙ୍କୁ
ଅବ୍ୟକତ ମୁହିଁ ମିଜା ଅଟଇ ଅର୍ଜ୍ଜୁନ
ନ ଜାଣିମା ଲୋକ ଜାଣି ମୋହର ଜନମ ।
ମନୁଷ୍ୟ ପଣରେ ମୋରଠାରେ ବୁଦ୍ଧି ଦେଇ
ଆନ ଦେବତାଙ୍କୁ ସେବା କରନ୍ତି ସେ ଯାଇ ।
ଯେମାନେ ଯୋଗମାୟାରେ ହୋଇଣ ଆବୃତ
ଦୃଢ଼କରି ନ ପାରନ୍ତି ମୋରଠାରେ ଚିତ୍ତ ।
ଆଜ ଅଭ୍ୟ ହୋଇଣ ମୂଢ଼ଲୋକେ ମୋତେ
ଜାଣି ନ ପାରନ୍ତି ଆହେ ପାର୍ଥ ମହାମତେ ।
ସମସ୍ତ ପ୍ରାଣୀମାନଙ୍କ ଜାନକୁ ଯେ ମୁହିଁ
ଜାଣୁଅଛୁ ମୋତେ କେହ୍ନ ଜାଣିପାରୁ ନାହିଁ ।
ଇଚ୍ଛାଦ୍ବେଷ ଏ ଦୁଇରୁ ଜାତ ଦ୍ବନ୍ଦ୍ବ ମୋହ
ତହିଁରେ ପ୍ରାଣୀଏ ମୋହପ୍ରାପ୍ତ ହେ ବଜୟ ।
ପୁଣ୍ୟ କର୍ମରୁ ଯାହାର ପାପ ନାଶଯାଏ
ଭଜନର ଦ୍ବାରା ମୋତେ ସେହ୍ନ ପ୍ରାପ୍ତ ହୁଏ ।
ଜରା ମରଣରୁ ମୁକ୍ତି ପାଇବା ନିମନ୍ତେ
ମୋତେ ଆଶ୍ରେ କରେ ଜାଣ ସେହି ମହାମତେ
ଅଧ୍ୟାତ୍ମିକ ବ୍ରହ୍ମ ପୁଣି ଅଖିଳ ଜନମ
ଗୋଚର ହୁଅଇ ତାଙ୍କୁ ହେ ବୀରଉତ୍ତମ ।
ଅଧିଭୂତ ଅଧିଦୈବ ଅଧିଯଜ୍ଞ ସହ
ମୋତେ ଯେମାନେ ଜାଣନ୍ତି ପ୍ରାଣାନ୍ତ ସମୟ ।
ସେହିକାଳେ ମୁହିଁ ତାଙ୍କୁ ପ୍ରାପ୍ତ ହୁଏ ଯାଇ
ମୋତେସେମାନେକେବେହେଁ ପାସୋରନ୍ତିନାହିଁ



## ୮ (ଅକ୍ଷର ବ୍ରହ୍ମଯୋଗ)

ଏଥୁଅନନ୍ତରେ ପାର୍ଥ ବୋଲେ ହେ ଗୋବିନ୍ଦ
ମୋ ପୁଛିବା କଥା କହ କରଅ ଆନନ୍ଦ ।
ବ୍ରହ୍ମ କସ ଆଧ୍ୟାତ୍ମିକ ଧର୍ମ ଅଧିଭୂତ
ଅଧିଯଜ୍ଞ ଅଧିଦେବ କହ ହେ ଅଚ୍ୟୁତ ।
ମୃତ୍ୟୁକାଳେ ଜିତେନ୍ଦ୍ରିୟ କିରୂପେ ଜାଣନ୍ତେ
ତାହା ବୁଝାଇଣ ମୋତେ କହ ହେ ଶ୍ରୀପତି ।
କୃଷ୍ଣ ବୋଇଲେ ଯେ ହେଲୁ ଅଟେ ଅବିନାଶି
ଯେଉଁ ପଦାର୍ଥ ତାହାକୁ ବ୍ରହ୍ମ ବୋଲ ଋଷି ।
ବ୍ରହ୍ମ ପଦାର୍ଥରେ ଆତ୍ମଭାବ ଯେଉଁ ଜୀବ
ଅଧ୍ୟାତ୍ମ ବୋଲଣ ତାକୁ ଜାଣ ହେ ପାଣ୍ଡବ ।
ପ୍ରାଣୀଙ୍କର ଉତପତ୍ତି ନିମେ କର୍ତ୍ତିବାର
କରଇ ଯେ ଯଜ୍ଞ ଆଦ କର୍ମମାନ ତାର ।
ଦେହାଦ ଯେତେକ ଦ୍ରବ୍ୟ ନାଶ ହୋଇଯାଏ
ଅଧିଭୂତ ନାମ ପାର୍ଥ ସେହ୍ନ ତ ବୋଲାଏ ।
ସୂର୍ଯ୍ୟମଣ୍ଡଳରୁ ଯେଉଁ ବ୍ରହ୍ମଟି ସମ୍ଭୂତ
ବୈରାଗ୍ୟ ପୁରୁଷ ସେହି ଅଧିଦଇବତ ।
ଅନ୍ତର୍ଯ୍ୟାମୀଙ୍କ ରୂପରେ ଦେହେ ସ୍ଥିତ ହେଲେ
ଅଧିଯଜ୍ଞ ବୋଲାଏ ମୁଁ ଲୋକମଧ୍ୟେ ଭଲେ ।
ଅନ୍ତଃକାଳେ ଯେହୁ ମୋତେ ସ୍ମରଣ ମରେ
ସେ ଯାଇ ଲୀନ ହୁଅଇ ମୋର ଶରୀରରେ ।
ଅନ୍ତଃକାଳରେ ସ୍ମରେ ଯେଉଁ ରୂପ ଗୋଟି
ଆହେ ପାର୍ଥ ଜାଣିଥାଅ ଲଭେ ସେ ରୂପଟି ।
ଏଥିପାଇଁ ହେ ଅର୍ଜ୍ଜୁନ ସୁର ପ୍ରତିଦିନେ
ଅନ୍ତଃକାଳରେ ସ୍ମରିବ ନିଶ୍ଚେ ତୁମ୍ଭ ମନେ ।
ଚିତ୍ତଶୁଦ୍ଧି ବ୍ୟତିରେକେ ନ ହୁଏ ସ୍ମରଣ
ଚିତ୍ତର ଶୁଦ୍ଧଟି ଅଟେ ସ୍ବଧର୍ମ କାରଣ ।
ଏହା ଜାଣି ମୋ ପାଖରେ ସଦା ମନ ରଖ
ଯୁଦ୍ଧକୁ ପକାଇ ଦିଅ ତ୍ୟଜ ଭବଦୁଃଖ ।
ମୋହଠାରେ ଏ ପ୍ରକାରେ ଦେଲେ ମନବୁଦ୍ଧି
ମୋତେ ପାଇବ ଅର୍ଜ୍ଜୁନ ଲଭି ମହାସିଦ୍ଧି ।
ଯୋଗଯୁକ୍ତ ଅଭ୍ୟାସରେ ଚିତ୍ତ ମୋତେ ଚିନ୍ତ
ବିବେକ ପ୍ରାପ୍ତ ହୋଇବ ମୋତେଟି ନିଶ୍ଚିତ ।
ସର୍ବଜ୍ଞ ଯେ ଅତିସୂକ୍ଷ୍ମ ଆଦିତ୍ୟର ବର୍ଣ୍ଣ
ପ୍ରକୃତିରୁ ଅତୀତ ଅଚିନ୍ତ୍ୟ ରୂପବାନ ।
ଅନାଦି ସିଦ୍ଧ ସକଳଜନଙ୍କ ପୋଷକ
ଅତି ସୂକ୍ଷ୍ମମାନଙ୍କର ଅଟେ ସେହି ସ୍ତୋକ ।
ଯୋଗବଳେ ଏମନ୍ତ ଯେ ରୂପ ଅନ୍ତଃକାଳେ
ସୁରେ ତହିଁ ପ୍ରାଣ ରଖି ଅତି କୁତୂହଳେ ।
ଆତ୍ମ ପରଂପୁରୁଷକୁ ପାଏ ସେହି ଜାଣ
କହୁଅଛୁ ଏହି କଥା ସଂଶୟ ନ ମଣ ।
ବେଦଜ୍ଞମାନେ ଯାହାକୁ ଅକ୍ଷର ବୋଲନ୍ତି
ଯତିମାନେ ତହିଁରେ ସେ ବିଣା ନ ହୁଅନ୍ତି ।
ତାହା ଜାଣିବାକୁ ଆଚରନ୍ତି ବ୍ରହ୍ମଚର୍ଯ୍ୟ
ସଂକ୍ଷେପେ କହିବୁ ତାହା ଆହେ ବୀରବର ।
ଯେହୁ ଇନ୍ଦ୍ରିୟକୁ କରିଥିବଟି ସଂଯମ
ହୃଦୟରେ କରିଥିବ ମନକୁ ସ୍ଥାପନ ।

ଆପଣା ପ୍ରାଣକୁ ଭୂରୁ ମଧ୍ୟରେ ରଖିବ
ପ୍ରଣବ ସୁମର ତହୁଁ ପ୍ରାଣକୁ ଛାଡ଼ିବ ।
ଯେଉଁ ଲୋକ ଏହିପରି କରଇ ଅର୍ଜୁନ
ତାହାର ଉତ୍କୃଷ୍ଟ ଗତି ନିଶ୍ଚେଁ ହୁଏ ଜାଣ ।
ଯେଉଁ ଲୋକ ଅହର୍ନିଶି ମୋତେ କରେ ଧ୍ୟାନ
ତାହାର ହୁଅଇ ମୁହିଁ ନିଶ୍ଚେଁ ନିଶ୍ଚେଁ ଜାଣ ।
ସର୍ବଦା ଭଜନ କରେ ମୋତେ ଯେଉଁ ଦେହୀ
ପୁନର୍ଜନ୍ମ ନ ହୁଅଇ ଜାଣିଥାଅ ତୁହି ।
ବ୍ରହ୍ମଲୋକ ପରିଯନ୍ତେ ଯାଇକରି ଲୋକ
ଆଉଥରେ ଆସୁଅଛି ପୁଣି ମହୀଲୋକ ।
ମର୍ତ୍ତ୍ୟପୁରେ ଯେଉଁ ଲୋକ ଆନନ୍ଦରେ ଥାଏ
ଧରି ନ ପାରଇ ସେହୁ ଆଉ ଥରେ କାୟେ ।
ସହସ୍ର ଯୁଗେ ହୁଏ ବ୍ରହ୍ମାଙ୍କର ଦିନ
ହେଉଅଛି ରାତିଟିଏ କେତେକାଳ ଜାଣ ।
ଯେଉଁମାନେ ଏହି କଥା ଜାଣନ୍ତି ଅର୍ଜୁନ
ସେହିମାନେ ବୋଲାଅନ୍ତି ସର୍ବଜ୍ଞ ଦୋଳଣ ।
ବ୍ରହ୍ମାଙ୍କ ଦିବସ ପୁଣି ଆଗତ ହୋଇଲେ
ଅବ୍ୟକ୍ତରୁ ବ୍ୟକ୍ତ ଜାତ ହୁଏ ଭଲେ ।
ବ୍ରହ୍ମାଙ୍କର ନିଶିଥିନୀ ହୋଇଲେ ଅବ୍ୟକ୍ତ
ପୁଣ ରୂପରେ ହୁଅନ୍ତି ସେହୁ ପରିଣତ ।
ଦେବବରଙ୍କର ଯେବେ ହୁଏ ଦିନ ରାତି
ସର୍ବଭୂତେ ଉତପନ୍ନ ସଂହାର ହୁଅନ୍ତି ।
ବ୍ୟକତ ଆଉ ଅବ୍ୟକ୍ତ ଅଟଇ ସେ ଭିନ୍ନ
ନିତ୍ୟରେ ସେ ଅଛି ଜାଣ ଆହେ ଅରଜୁନ ।
ସବୁ ପ୍ରାଣୀ ନାଶଗଲେ ନ ଯାଏ ସେ ନାଶ
ସେହି ସିନା ବୋଲାଏ ସେ ଅବ୍ୟକ୍ତ ପୁରୁଷ ।
ସେ ପୁରୁଷେ ଜାଣିକରି ପରଂ ପୁରୁଷାର୍ଥ
ଚାରିଗୋଟି ବେଦରେ ଯେ କହୁଥାନ୍ତି ଅର୍ଥ ।
ସେହି ପୁରୁଷକୁ ଯେଉଁ ଲୋକ ପ୍ରାପ୍ତ ହୁଏ
ପ୍ରତ୍ୟାବର୍ତ୍ତନ ତାହାର କଦାପି ନ ହୁଏ ।
ସେହି ପୁରୁଷଟି ଅଟେ ସ୍ୱରୂପ ମୋହର
ମୁହିଁ ସେହି ବୋଲି ଜାଣ ପାର୍ଥ ମହାବୀର ।
ସେହି ପୁରୁଷ ଗୋଟିକୁ ଏକାନ୍ତ ଭକ୍ତିରେ
ଲଭିପାରେ ଜାଣ ଆହେ ମୋର କହିବାରେ ।
ପ୍ରାଣୀଏ ଅଛନ୍ତି ଯେଉଁ ପୁରୁଷ ହୃଦରେ
ଏହାଙ୍କୁ ବ୍ୟାପକ ବୋଲି ଜାଣ ନିରନ୍ତରେ ।

କେଉଁ କାଳରେ ମରିଲେ ଅବୃତ୍ତ୍ୟନାବୃତ୍ତି
ପାଆନ୍ତି ତାହା ଶୁଣ ତୁ ପଣ୍ଡୁର ସନ୍ତତି ।
ଦେହୁଁ ଜାତ ଜ୍ୟୋତିଆଦି ଦିନ ଶୁକ୍ଳପକ୍ଷ
ଉତ୍ତର ଅୟନ ଷଟମାସ ଦେବ ମୁଖ୍ୟ ।
ଲୋକ ଯୋଗକୁ ପାଇଣ କ୍ରମଶଃ ମୁକତି
ପାଉଛନ୍ତି ଜାଣ ଆହେ ପଣ୍ଡୁଙ୍କ ସନ୍ତତି ।
ଧୂମରାତ୍ରି କୃଷ୍ଣପକ୍ଷ ଦକ୍ଷିଣ ଅୟନ
କର୍ମଯୋଗୀମାନେ ପାନ୍ତି ଏହି ସବୁ ସ୍ଥାନ ।
କ୍ରମେ କ୍ରମେ ସ୍ୱର୍ଗଭୋଗ ସେମାନେ କରନ୍ତି
ପୁନର୍ବାର ଆସିକରି ମହୀରେ ଜନ୍ମନ୍ତି ।
ଯେଉଁ ଶୁକ୍ଳଗତି କଥା ମୁହିଁ କହିଲଇଁ
ସର୍ବଦା ଜଗତ ମଧ୍ୟେ ଏହା ଅଛି ରହି ।
ଶୁକ୍ଳଗତି ହେଲେ ଜାଣି ମୋକ୍ଷ ଲୋକ ପାଏ
କୃଷ୍ଣଗତିରେ ପାର୍ଥ ହେ ପୁନର୍ଜନ୍ମ ହୁଏ ।
ଯେବେ ଏହି ଦୁଇ ମାର୍ଗ ଯୋଗୀଏ ଜାଣନ୍ତି
ସଂସାରର ବନ୍ଧନରେ କେବେ ନ ପଡ଼ନ୍ତି ।
ଏଥିପାଇଁ ସବୁବେଳେ ହେ ବୀର ଅର୍ଜୁନ
ଯୋଗଯୁକ୍ତ କଥାରେ ଯେ ପ୍ରବର୍ତ୍ତାଅ ମନ ।
ଯଜ୍ଞ ତପସ୍ୟା ଫଳକୁ ଯୋଗୀଜନ ବଳି
ଉତ୍ତମ ସ୍ଥାନ ପାଆନ୍ତି ଜାଣ ମହାବଳୀ ।

—*—

## ୯ (ରାଜଗୁହ୍ୟ ଯୋଗ)

ଏଥିଉତ୍ତାରେ ରୁକ୍ମିଣୀ ଦେବୀ ପ୍ରାଣପ୍ରିୟ
କହିଲେ ଅର୍ଜୁନଠାରେ ବହି ଅତି ସ୍ନେହ ।
ଶୁଣ ଆହେ ଅରଜୁନ ତୁମ୍ଭେ ମନ ଦେଇ
ରାଜଯୋଗ ତୁମ୍ଭଠାରେ ଏବେ କହିବଇଁ ।
ଈଶ୍ୱରଙ୍କ ଉପାସନା କହିତ ଜ୍ଞାନକୁ
ଶୁଣ ତୁମ୍ଭେ ପାର୍ଥବୀର ଦେଇଣ ମନକୁ ।
ତାହା ଶୁଣିଲେ ନ ହେବ ସଂସାର ବନ୍ଧନ
ମୁକ୍ତି ଲଭି ମୋ ଶରୀରେ ହୋଇଯିବ ଲୀନ ।
ଯେଉଁ ଜ୍ଞାନ ତୁମ୍ଭଙ୍କୁ ମୁଁ ଏବେ କହିବଇଁ
ସମସ୍ତ ଯୋଗ ମଧ୍ୟରେ ରାଜା ଅଟେ ସେହି ।
ଅତୀବ ପବିତ୍ର ଗୁପ୍ତ ଅଟଇ ସେ କଥା
ଭଲରୂପେ ଜାଣିଥାଅ ପାର୍ଥ ମହାରଥା ।
ପ୍ରତ୍ୟକ୍ଷହିଁ ଫଳପ୍ରଦ ଅତି ସୁଖକର
ଅକ୍ଷୟ ଗୁଣର ସେହୁ ଅଟଇ ଆକାର ।

ମୋ କହିବା କଥା ଯେହୁ ନ କରେ ଅର୍ଜୁନ
ତାକୁ ଜାଣ ଲାଗିଥାଏ ସଂସାର ବନ୍ଧନ ।
ଅବ୍ୟକ୍ତ ମୂର୍ତ୍ତିରେ ମୁହିଁ ବ୍ୟାପିଛୁ ଜଗତ
ଦୃଢ଼ରୂପେ ଜାଣିଥାଅ କୁନ୍ତୀଦେବୀ ସୁତ ।
ସବୁ ପ୍ରାଣୀମାନେ ଛନ୍ତି ମୋହର ଦେହରେ
ଜାଣିଥାଅ ମୁହିଁ ନାହିଁ ପ୍ରାଣୀଙ୍କ ମଧ୍ୟରେ ।
ମୋ ଯୋଗ ବଳରେ ଏବେ ଦେଖ ହେ ଅର୍ଜୁନ
ମୋହର ଦେହେ ନାହାନ୍ତି ଯେଉଁ ପ୍ରାଣୀଗଣ ।
ଭୂତମାନଙ୍କୁ ତ ମୁହିଁ ପାଳନ କରୁଛି
ଧରିଣ ତାହାଙ୍କଠାରୁ ଅଲଗା ହୋଇଛି ।
ଯେରୂପେ ପବନ ରହିଅଛି ସବୁଠାରେ
ସେରୂପେ ମୁଁ ରହିଅଛି ବ୍ୟାପି ଜଗତରେ ।
ପ୍ରାଣୀମାନେ ମୋତେ ସିନା ଆଶ୍ରୟ କରିଣ
ଥାଆନ୍ତି କଳ୍ପ କ୍ଷୟର ସମୟରେ ଜାଣ ।
କଳ୍ପର ଆଦ୍ୟରୁ ମୁହିଁ କରଇ ସୃଜନ
ପ୍ରକୃତିକୁ ଘେନି ଜାଣ ଆହେ ଅରଜୁନ ।
ସୃଜନ ପାଳନ ସଂହାରଣ କର୍ମ ମୋତେ
ବାଧେ ନାହିଁ ହେ ଅର୍ଜୁନ କହିଅଛି ତେ ।
ଯେଣୁକରି ମୋର ନାହିଁ କର୍ମରେ ଆସକ୍ତ
ତେଣୁକରି ହୋଇଥାଏ ଉଦାସୀନ ମତ ।
ପ୍ରକୃତି ସିନା ଜଗତେ ମୋତେ ପ୍ରାପ୍ତ ହୋଇ
ସମସ୍ତ ପଦାର୍ଥମାନ ସୃଜନ କରଇ ।
ଜଗତରେ କରିବାରୁ ମୁହିଁ ଅଧିଷ୍ଠାନ
ଥିରକୁଥିର ହେଉଛି ଲୋକେ ପରିପୂର୍ଣ୍ଣ ।
ମୂଢ଼ଲୋକମାନେ ମୋର ଐଶ୍ୱର୍ଯ୍ୟ ନ ଜାଣି
ମନୁଷ୍ୟ ମଧ୍ୟରେ ମୋତେ ପକାଅନ୍ତି ଗଣି ।
ଆସୁରିକ ପ୍ରକୃତିର ଆଶ୍ରୟକୁ ପାଇ
ମୋତେ ନ ଜାଣନ୍ତି ଆହେ ଦ୍ରୌପଦୀର ସାଇଁ
ଦୈବ ପ୍ରକୃତି ଆଶ୍ରେକରି ଯେଉଁମାନେ
ଭଜଣ ପ୍ରାପ୍ତ ହୁଅନ୍ତି ମୋ ପୁର ବଧାନେ ।
ଜ୍ଞାନୀଲୋକେ ସବୁବେଳେ ମୋର ନାମ ଧରି
ହେ ଅର୍ଜୁନ ହୁଅନ୍ତି ସେ ନାନା ବ୍ରତାଚାରୀ ।
ଯେଉଁମାନେ ସଦା ମୋତେ କରି ନମସ୍କାର
ବୋଲୁଥାନ୍ତି କୃଷ୍ଣ କୃଷ୍ଣ ମୁଖରେ ତାଙ୍କର ।
ଯେଉଁ ଲୋକମାନେ ଜ୍ଞାନଯୋଗରେଟି ମୋତେ
ଉପାସନା କରି ଜଗି ବସିଛନ୍ତି ନତ୍ୟେ ।

ଅଭେଦ ଭେଦରେ ଯେହୁ ଆଦି ବ୍ରହ୍ମରୂପେ
ମୋତେ ବନ୍ଦନା କରନ୍ତି ପ୍ରତେ କରି ଆପେ ।
ଅଗ୍ନିଷ୍ଟୋମ ଆଦି ଯାଗ ମୁଁ ଏକା ଅଟଇ
ପଞ୍ଚଯଜ୍ଞାଦି ଯେତେକ ଯାଗ ମୋତେ କହି ।
ଶ୍ରାଦ୍ଧୌଷଧି ମନ୍ତ୍ର ଅଗ୍ନି ସମିଧ ଯେ ଘୃତ
ଆହୁତି ବୋଲିଣ ମୋତେ ଜାଣ କୁନ୍ତୀସୁତ ।
ଜଗତର ମାତା ପିତା ବୋଲି ମୋତେ କହି
ଧାତା ହୋଇ ଯାକୁ ବୋଲି ସେହୁ ମୁଁ ଅଟଇ
ମୁହିଁ ଅଟେ ଜ୍ଞେୟବସ୍ତୁ ପବିତ୍ର ହେତୁ
ମୁଁ ପ୍ରଣବ ଋକ ସାମ ଯଜୁର୍ବେଦ ତନ୍ତୁ ।
ଗତିମୁକ୍ତି ପ୍ରଭୁ ସାକ୍ଷୀ ସୁହୃଦ ଶରଣ
ପ୍ରଳୟର ସ୍ଥାନ ବୀଜ ଅଟଇ ମୁଁ ଜାଣ ।
ନିଦାଘ କାଳରେ ତାପ ତେଜ ମୁଁ ସୃଜଇ
ବୃଷ୍ଟି ଆଉ ଅନାବୃଷ୍ଟି ମୁହିଁତ କରଇ ।
ମରାମର ଅସତ ଯେ ସତ ଅଟେ ମୁହିଁ
ଏହା ଜାଣିଣ ଭଜନ୍ତି ମୋତେ ସମସ୍ତେହିଁ ।
ତ୍ରିବେଦ ଜାଣିବା ଲୋକେ ଯୋଗକୁ ଆଚରି
ନିଷ୍ପାପ ଦେହ ହୁଅନ୍ତି ସୋମ ପାନ କରି ।
ସ୍ୱର୍ଗକୁ ଯାଇ ଅପ୍‌ସରାଗଣଙ୍କର ସଙ୍ଗେ
କ୍ରୀଡ଼ା ତେଜିଣ କରନ୍ତି ନୀଡ଼ା ନାନାରଙ୍ଗେ ।
ସେତେବେଳେ ତାହାଙ୍କର ପୁଣ୍ୟ ସରିଯାଏ
ମର୍ତ୍ତ୍ୟ ଲୋକରେ ତାଙ୍କର ପୁଣି ଜନ୍ମ ହୁଏ ।
ଆନ ଦେବଙ୍କୁ ପୂଜିଲେ ମୁହିଁ ପ୍ରାପ୍ତ ହୁଏ
ବିଧିହୀନ କେବଳ ସେ ଅର୍ଜୁନ ବୋଲଏ ।
ଭୋକ୍ତା ପ୍ରଭୁ ଅଟେ ମୁହିଁ ସମସ୍ତ ଯାଗର
ଭଲରୂପେ ଜାଣିଥାଅ ଆହେ ଧନୁର୍ଦ୍ଧର ।
ତେବେ ସୁଦ୍ଧା ମୋତେ ଜାଣ ନ ଜାଣନ୍ତି କେହି
ଏଣୁ ପଡ଼ନ୍ତି ସେ ପୁଣ୍ୟଲୋକୁଁ ଚ୍ୟୁତହୋଇ ।
ଇନ୍ଦ୍ରାଦି ଦେବଗଣଙ୍କୁ ପୂଜେ ଯେଉଁ ନର
ଇନ୍ଦ୍ରାଦି ଦେବତାପୁରେ କରେ ସେହୁ ଘର ।
ଶ୍ରାଦ୍ଧଆଦି କର୍ମ ଯେହୁ କରେ ଶ୍ରଦ୍ଧା ବହି
ପିତୃଲୋକ ପ୍ରିୟ ହୁଅନ୍ତି ସନ୍ଦେହ ଯେ ନାହିଁ ।
ବିନାୟକ ଆଦି ମାତୃଗଣେ ଯେ ପୂଜନ୍ତି
ଭୂତଲୋକରେ ଯାଇଣ ଘର ସେ କରନ୍ତି ।
ହେ ପାର୍ଥ ପୂଜା କରନ୍ତି ମୋତେ ଯେଉଁମାନେ
ମୋର ଗୃହରେ ରହନ୍ତି ଯାଇଣ ସେମାନେ ।

ଭକତରେ ପତ୍ର ପୁଷ୍ପ ଫଳ ଯେ ଦିଅଇ
ପ୍ରୀତ ହୋଇ ମୁହିଁ ତାହା ଗ୍ରହଣ କରଇ ।
ତପ ହୋମ ଦାନ ଯାହା ତୋର କରିବାର
ହେ ଅର୍ଜୁନ ମୋତେ ତାହା ସମ୍ପ୍ରଦାନ କର ।
ଏହିରୂପେ କର୍ମମାନ ତୁ ଯେବେ କରିବୁ
ସତ କହୁଅଛୁ ଶୁଭାଶୁଭରୁ ତରିବୁ ।
ସନ୍ନ୍ୟାସ ଯୋଗରେ ତୁମ୍ଭେ ହୋଇଲେ ଯୁକତ
ମୁହିଁ ନିଶ୍ଚୟ କରିବି ତୁମ୍ଭଙ୍କୁ ମୁକତ ।
ସର୍ବ ସମାନ ହୋଇଣ ମୁହିଁ ପ୍ରବର୍ତ୍ତଇ
ପ୍ରିୟ ଅପ୍ରିୟ କାହାରିଠାରେ ନ କରଇ ।
ଯେ ମୋତେ ଭକ୍ତି ଚିତ୍ତରେ ଭଜଇ ଅର୍ଜୁନ
ମୁଁ ତାଠାରେ ସେ ମୋହରଠାରେ ଥାଏ ଜାଣ
ଦୁରାଚାରୀ ଲୋକ ଯେବେ ଆମ୍ଭଙ୍କୁ ଭଜଇ
ସାଧୁ ସମାଜରେ ତାର ନାମ ଲେଖା ହୋଇ ।
ଉତ୍ତମ ପାଇଁ ଯେ ଲୋକ କରେ ବ୍ୟବସାୟ
କେତେବେଳେ ନୁହଇ ସେ ମୋହର ଅପ୍ରିୟ ।
ମୋତେ ଯେ ଭଜନ କରେ ଏକାନ୍ତ ମନରେ
ଧର୍ମଆତ୍ମା ବୋଲି ଗଣ୍ୟ ହୁଅଇ ସଂସାରେ ।
ଏହି କାରଣରୁ ତାର ଲବ୍ଧ ହୁଏ ଶାନ୍ତି
ଏଥିରେ ସନ୍ଦେହ ନାହିଁ କୁନ୍ତୀଙ୍କ ସନ୍ତତି ।
ହେ ଅର୍ଜୁନ ଜାଣିଥାଅ ମୋହର ଭକତ
କେତେବେଳେ ନାଶକୁ ସେ ନ ହୁଏ ପ୍ରାପତ
ପାପଯୋନିଗତ ଲୋକ ମୋତେ ଭଜିକରି
ସଂସାର ବନ୍ଧନୁ ଫିଟି ଯାଆନ୍ତି ସେ ତରି ।
କ୍ଷତ୍ରିୟ ବୈଶ୍ୟାଦି ଭଜି ପରଂଗତି ପାନ୍ତି
ବ୍ରାହ୍ମଣର କଥା କିସ କହିବି ତୋ କତି ।
ଏହି ସୁଖ ଆଦିତ୍ୟଙ୍କୁ ଘେନିଣ ଅର୍ଜୁନ
ମୋର ଭଜନ କଥାରେ ପ୍ରବର୍ତ୍ତାଅ ମନ ।
ମୋର ଭଜନ କଥାକୁ ପ୍ରିୟ ମନେକର
ମୋର ଏ ପାଦପଦ୍ମରେ ଥାଅ ସେବାକରି ।
ଭକ୍ତିଭାବେ ପୂଜି ମୋତେ କର ନମସ୍କାର
ପାଇବା ପାଇଁ ଯଦ୍ୟପି ମୋତେ ଇଚ୍ଛାକର ।

---

## (୧୦) ବିଭୂତି ଯୋଗ

ଏଥୁଅନନ୍ତରେ ପୁଣି ଲକ୍ଷ୍ମୀ ପ୍ରାଣପତି
ବୋଇଲେ ଶୁଣ ତୁ ଏବେ ପାର୍ଥ ମହାମତି ।
ଯେଣୁକରି ସବୁଦିନେ ସଖା ତୁମ୍ଭେ ମୋର
ଯାହା ମୁଁ କହିବି ତୁମ୍ଭେ ବୁଝ ଯତନର ।
ମୋର ଜନ୍ମକଥା ଭୃଗୁଆଦି ଋଷିଗଣ
ନ ଜାଣନ୍ତି ଜାଣିଥାଅ ହେ ବୀର ଅର୍ଜୁନ ।
ଦେବ ଋଷିମାନଙ୍କର ମୁହିଁତ କାରଣ
ଏଥିପାଇଁ ସବୁଙ୍କର ଅଟେ ମୁହିଁ ଜାଣ ।
ଅନାଦି ଈଶ୍ୱର ବୋଲି ମୋତେ ଯେ ଜାଣଇ
ସଂସାର ବନ୍ଧନୁ ସେହି ମୁକତି ଲଭଇ ।
ବୁଦ୍ଧି କ୍ଷମା ଅସମ୍ମୋହ ଆବର ଯେ ଦମ
ସତ୍ୟ ଦୁଃଖ ସୁଖ ମହାଭାବ ଆଉ ସମ ।
ଭୟାଭୟ ଅହିଂସ ଯେ ସାମ୍ୟ ତୁଷ୍ଟି ଯଶ
ତପ ଦାନ ସତ୍ୟ ଆଦି ଆବର ଅଯଶ ।
ମୋହଠାରୁ ଏହିମାନେ ଜନ୍ମ ଲଭିଛନ୍ତି
କହିଲ ମୁଁ ଏହା ତୁମ୍ଭେ ହୋଇବାକୁ ପ୍ରୀତି ।
ମୋହଠାରୁ ଜାତ ସପ୍ତଋଷି ଭୃଗୁଆଦି
ଏହା ବ୍ୟତିରେକ ପୁଣି ଗୁରୁ ସନକାଦି ।
ସ୍ୱାୟମ୍ଭୁବ ଆଦିକରି ଯେତେ ମନୁମାନେ
ମୋର ମନୁ ଜାତ ହୋଇଅଛନ୍ତି ସେମାନେ ।
ଏମାନଙ୍କ ନିକଟରୁ ଯେତେ ପ୍ରାଣୀଗଣ
ଜନମ ଲଭିଣ ବ୍ୟାପିଅଛନ୍ତି ଭୁବେଣ ।
ମୋହର ବିଭୂତି ଯୋଗ ଯେହୁ ଜାଣିଥାଇ
ନିଶ୍ଚୟ ଯୋଗରେ ସେହୁ ନିଶ୍ଚଳ ହୁଅଇ ।
ମୁଁ ସବୁରି ମୂଳ ମୋହଠାରୁ ସର୍ବେ ଜନ୍ମ
ଏ କଥା ଜାଣି ପଣ୍ଡିତ ଆଉ ବିଜ୍ଞଜନ ।
ଅହର୍ନିଶି କରନ୍ତି ସେ ମୋ ନାମ ଭଜନ
ମନୋବୃତ୍ତିରୁ ବିଷୟ ନିବର୍ତ୍ତି କରିଣ ।
ମୋଠାରେ ଚିତ୍ତ ଆଉ ପ୍ରାଣକୁ ସମପ
ସୁଧୀଗଣେ ନ ହୁଅନ୍ତୁ ଭବବନ୍ଧେ ତାପି ।
ଯେ ମୋହର ଭଜନରେ ଆସକ୍ତ ହୁଅଇ
ବୁଦ୍ଧିଯୋଗ ତାହାଙ୍କୁହିଁ ଦିଏ ମୁହିଁ କହି ।
ଯେଉଁ ସୁବୁଦ୍ଧି ବଳରେ ମୋତେ ସେ ପାଆନ୍ତି
ତାହା କେତେ କହିବଇଁ କୁନ୍ତଭୋଜନାତି ।
ତାଙ୍କ ପ୍ରତି ଅନୁଗ୍ରହ କରିବାର ପାଇଁ
ଜ୍ଞାନ ଦେଇ ଅଜ୍ଞାନକୁ ମୁହିଁ ବିନାଶଇ ।
ତହୁଁ ଅର୍ଜୁନ ବୋଇଲେ ପରମ ଆଶ୍ରୟ
ପରମବ୍ରହ୍ମ କେ ତୁମ୍ଭେ ଦେବକୀ ତନୟ ।

ଅଜ ବୋଲଣ ତୁମ୍ଭଙ୍କୁ ନାରଦ ଯେ ବ୍ୟାସ
କେବଳ ଆପ୍ତ ନିତ୍ୟହିଁ କରନ୍ତି ପ୍ରକାଶ ।
ଆପଣ ମଧ୍ୟ ସେରୂପେ ମୋହର ଆଗରେ
କହିବା ହେଉ ଅନନ୍ତ କଥା ପ୍ରସଙ୍ଗରେ ।
ତେଣୁ କରି ଏହା ମୁହିଁ ସତ୍ୟ ମଣିକରି
ବିନୟେ ଭକ୍ତି କରୁଛି ରୁକ୍ମିଣୀ ବିହାରୀ ।
ଦେବ ଦାନବ ମଧ୍ୟରେ ତୁମ୍ଭର ପ୍ରଭାବ
ବ୍ୟକ୍ତ ହୋଇ ନାହିଁ ଆହେ କମଳାବଲ୍ଲଭ ।
ହେ କୃଷ୍ଣ ତୁମ୍ଭ ମହିମା ତୁମ୍ଭେ ମାତ୍ର ଜାଣ
ଏହି କଥା ତୁମ୍ଭ ଆଗେ କରୁଛି ଜଣାଣ ।
ତୁମ୍ଭ ବିଭୂତି ଶୁଣିବା ଇଚ୍ଛା ଅଛି ମୋର
କୃପାକରି କହ ଏବେ ମୋହର ଆଗର ।
ସେ ଭାବନାରେ ତୁମ୍ଭଙ୍କୁ ସଦା କରି ଚିନ୍ତା
ପାଇବି କି କହ ମୋତେ ଜଗତର ପିତା ।
ତୁମ୍ଭର ବିଭୂତିଯୋଗ ବିସ୍ତାର ଭାବରେ
ଆହେ କୃଷ୍ଣ କହ ତୁମ୍ଭେ ମୋହର ଆଗରେ ।
ଶ୍ରୀକୃଷ୍ଣ ବୋଇଲେ ମୋର ବିଭୂତି ଅନନ୍ତ
ପ୍ରଧାନ ବିଭୂତିମାନ କହିବଇଁ ପାର୍ଥ ।
ପ୍ରାଣୀଙ୍କର ପରମାତ୍ମା ଅଟଇ ଯେ ମୁହିଁ
ଆଦ୍ୟ ମଧ୍ୟ ପ୍ରାନ୍ତ ବୋଲି ମୋତେ ସିନା କହି
ଦ୍ୱାଦଶ ଆଦିତ୍ୟ ମଧ୍ୟେ ବିଷ୍ଣୁ ଅଟେ ମୁହିଁ
ଜ୍ୟୋତିଙ୍କ ମଧ୍ୟରେ ସୂର୍ଯ୍ୟଦେବ ମୁଁ ଅଟଇ ।
ମରୁତଗଣଙ୍କ ମଧ୍ୟେ ମରୀଚି ମୋ ନାମ
ନକ୍ଷତ୍ରମାନଙ୍କ ମଧ୍ୟେ ମୁହିଁ ଅଟେ ସୋମ ।
ବେଦମାନଙ୍କ ମଧ୍ୟରେ ସାମବେଦ ମୁହିଁ
ଇନ୍ଦ୍ରିୟମାନଙ୍କ ମଧ୍ୟେ ମନ ମୁଁ ଅଟଇ ।
ଦେବଗଣଙ୍କ ମଧ୍ୟରେ ମୁହିଁ ମଘବାନ
ପ୍ରାଣୀମାନଙ୍କରେ ମୁହିଁ ଅଟଇ ଚେତନ ।
ରୁଦ୍ରଗଣଙ୍କ ମଧ୍ୟରେ ମୁଁ ଅଟେ ଶଙ୍କର
ଯକ୍ଷମାନଙ୍କରେ ମୁହିଁ ବୋଲାଏ କୁବେର ।
ବସୁଗଣ ମଧ୍ୟରେ ମୁଁ ପାବକ ଅଟଇ
ପର୍ବତ ମଧ୍ୟରେ ମେରୁ ବୋଲି ମୋତେ କହି
ପୁରୋହିତଙ୍କ ମଧ୍ୟରେ ବୃହସ୍ପତି ମୁହିଁ
ସେନାନୀଙ୍କ ମଧ୍ୟେ ମୁହିଁ କାର୍ତ୍ତିକ ଅଟଇ ।
ଜଳାଶୟ ମଧ୍ୟେ ମୁହିଁ ସାଗର ବୋଲାଇ
ମହର୍ଷିଙ୍କ ମଧ୍ୟରେ ଭୃଗୁ ଅଟେ ମୁହିଁ ।

ବଚନ ମଧ୍ୟରେ ମୁହିଁ ଅଟଇ ପ୍ରଣବ
ଯଜ୍ଞମାନଙ୍କରେ ମୁହିଁ ଅଟେ ଜପ ସର୍ବ ।
ହିମାଳୟ ଅଟଇ ମୁଁ ସ୍ଥାବର ଗଣରେ
ଅଶ୍ୱତ୍ଥ ନାମ ବୋଲାଇ ବୃକ୍ଷଙ୍କ ମଧ୍ୟରେ ।
ଦେବର୍ଷିଗଣଙ୍କ ମଧ୍ୟେ ମୁହିଁ ଯେ ନାରଦ
ଗନ୍ଧର୍ବରେ ଚିତ୍ରରଥ ମୁଁ ଅଟେ ପ୍ରସିଦ୍ଧ ।
ସିଦ୍ଧଙ୍କ ମଧ୍ୟରେ ମୁହିଁ କପିଳ ବୋଲାଇ
ଅଶ୍ୱେ ଉଚ୍ଚୈଃଶ୍ରବା ନାମ ମୁହିଁ ବହିଛଇଁ ।
ହସ୍ତୀମାନଙ୍କ ମଧ୍ୟରେ ମୁହିଁ ଐରାବତ
ନରମାନଙ୍କ ମଧ୍ୟରେ ମୁହିଁ ନରନାଥ ।
ଆୟୁଧମାନଙ୍କ ମଧ୍ୟେ ବଜ୍ର ମୁଁ ଅଟଇ
ଧେନୁ ମଧ୍ୟେ କାମଧେନୁ ମୁହିଁ ଯେ ବୋଲାଇ ।
ପ୍ରଜା ସୃଷ୍ଟି ପାଇଁ ମୁହିଁ ଅଟଇ କନ୍ଦର୍ପ
ସର୍ପମାନଙ୍କ ମଧ୍ୟେ ମୁଁ ବାସୁକୀ ଅଧିପ ।
ନାଗଗଣଙ୍କ ମଧ୍ୟେ ମୁଁ ଅଟଇ ଅନନ୍ତ
ଜଳଚରଙ୍କ ମଧ୍ୟରେ ମୁଁ ଅଟେ ପ୍ରଚେତ ।
ପିତୃଗଣଙ୍କ ମଧ୍ୟରେ ଅନ୍ତର୍ଯ୍ୟାମୀ ମୁହିଁ
ପ୍ରଜା ସଂଯମରେ ଯମରାଜା ମୁଁ ଅଟଇ ।
ପ୍ରହଲ୍ଲାଦ ଅଟେ ମୁହିଁ ଦୈତ୍ୟମାନଙ୍କରେ
କାଳ ସିନା ଅଟେ ମୁହିଁ ଗଣନାକାରୀରେ ।
ପଶୁମାନଙ୍କ ମଧ୍ୟରେ ଅଟେ ମୁଁ କେଶରୀ
ପକ୍ଷୀ ମଧ୍ୟରେ ଗରୁଡ଼ ନାମଟି ମୋହର ।
ପବିତ୍ରକାରୀଙ୍କ ମଧ୍ୟେ ମୁଁ ଅଟେ ପବନ
ଶସ୍ତ୍ରଧାରୀଙ୍କ ମଧ୍ୟରେ ମୁଁ ରଘୁନନ୍ଦନ ।
ମତ୍ସ୍ୟମାନଙ୍କ ମଧ୍ୟରେ ମୁଁ ଅଟେ ମକର
ପ୍ରବାହମାନଙ୍କ ମଧ୍ୟରେ ଗଙ୍ଗା ନାମ ମୋର ।
ଆକାଶ ଆଦିଙ୍କର ମୁଁ ଆଦି ମଧ୍ୟଗତ
ସବୁଠାରେ ଶ୍ରେଷ୍ଠ ଜାଣ ଇନ୍ଦ୍ରଙ୍କର ସୁତ ।
ବିଦ୍ୟା ମଧ୍ୟେ ବ୍ରହ୍ମବିଦ୍ୟା ମୁହିଁ ଯେ ଅଟଇ
ତର୍କବାଦୀମାନଙ୍କର ବାଦ ଅଟେ ମୁହିଁ ।
ଅକ୍ଷର ମଧ୍ୟରେ ମୁହିଁ ଅଟଇ ଆକାର
ସମାସ ମଧ୍ୟରେ ଦ୍ୱନ୍ଦ୍ୱ ନାମଟି ମୋହର ।
କାଳଙ୍କ ମଧ୍ୟେ ଅକ୍ଷୟକାଳ ମୁଁ ଅଟଇ
କର୍ମଫଳ ବିଧାନର କର୍ତ୍ତା ଅଟେ ମୁହିଁ ।
ସଂହାରକାରୀଙ୍କ ମଧ୍ୟେ ମୃତ୍ୟୁ ମୁଁ ଅଟଇ
ପ୍ରାଣୀଙ୍କରେ ଅଭ୍ୟୁଦୟ ଅଟଇ ଯେ ମୁହିଁ ।

ସ୍ତ୍ରୀମାନଙ୍କରେ କୀର୍ତ୍ତି ଶ୍ରୀ ଧୃତି
ମେଧା କ୍ଷମା ବାଣୀମାନେ ମୋହର ବିଭୂତି ।
ସାମବେଦ ମଧ୍ୟେ ମୁହିଁ ଅଟେ ବୃହତ୍ସାମ
ଛନ୍ଦ ମଧ୍ୟରେ ଗାୟତ୍ରୀ ଅଟେ ମୋର ନାମ ।
ମାସଙ୍କରେ ମାର୍ଗଶୀର ମାସ ମୁଁ ଅଟଇ ।
ଋତୁ ମଧ୍ୟରେ ବସନ୍ତଋତୁ ମୁଁ ବୋଲାଇ ।
ବଞ୍ଚନାକାରୀମାନଙ୍କ ମଧ୍ୟେ ମୁହିଁ ଦ୍ୟୁତ
ଏ କଥା ତୁ ଜାଣିଥାଅ ପଣ୍ଡୁରାଜା ସୁତ ।
ତେଜସ୍ୱୀମାନଙ୍କ ତେଜ ମୁହିଁ ତ ଅଟଇ
ଜୟୀ ଲୋକମାନଙ୍କର ଜୟୀ ମୋତେ କହି ।
ଗୁପତ କଥାରେ ଅଟେ ମୁଁ ମନ ବଚନ
ହେ ଅର୍ଜୁନ ମୁହିଁ ଅଟେ ତତ୍ତ୍ୱଜ୍ଞାନୀ ଜନ ।
ସବୁ ପ୍ରାଣୀଙ୍କ ଜୀବନ ମୁହିଁ ତ ଅଟଇ
ମୋ ବିନା ଜଗତରେ ଜଣେ କେହି ନାହିଁ ।
ସେ ବିଭୂତିମାନଙ୍କର ନାହିଁ ଜାଣ ଅନ୍ତ
ସଂକ୍ଷେପିଣ କହିବଇଁ ତବ ଅଗ୍ରେ ପାଥ ।
ଅଇଶ୍ୱର୍ଯ୍ୟବନ୍ତ ଆଉ ଶ୍ରୀମନ୍ତ ଉନ୍ନତ
ମୋହର ତେଜରୁ ହୋଇଅଛନ୍ତି ସମ୍ଭୂତ ।
ଆଉ ତୁମ୍ଭର ଆଗରେ କେତେ କହିବଇଁ
ମୋର ଏକାଂଶେ ଜଗତ ବ୍ୟାପି ରହିଛଇ ।

---

## ୧୧ (ବିଶ୍ୱରୂପ ଦର୍ଶନ ଯୋଗ)

ଏଥୁ ଅନ୍ତରେ ଅର୍ଜୁନ କହିଲେ କୃଷ୍ଣଙ୍କୁ
ତୁମ୍ଭ ସକାଶୁ ଛାଡ଼ିଲ ସମସ୍ତ ମୋହକୁ ।
ପ୍ରଳୟର ସରଜନ ହୁଏ ତୁମ୍ଭଠାରୁ
କୃପା କରନ୍ତେ ଶୁଣିଲି ତୁମ୍ଭ ଶ୍ରୀମୁଖରୁ ।
ଅବିନାଶୀ ମହାତ୍ମ୍ୟକୁ ମୋହର ଆଗରେ
କହିବା ହୋଇଲେ ମୋତେ ଅତି ସରାଗରେ
ଆତ୍ମଗୁଣ ସମ୍ବନ୍ଧରେ ଯା କହିଲ ମୋତେ
ସତ୍ୟ ମଣି ଘେନିଲଇଁ ତାହାକୁ ମୁଁ ଚିତ୍ତେ ।
ତୁମ୍ଭର ଈଶ୍ୱର ରୂପ ଦେଖିବା ନିମନ୍ତେ
ମନ ହେଉଅଛି ମୋତେ ଦେଖାଅ ଶ୍ରୀପତେ ।
ଯେବେ ମୁହିଁ ହୋଇଥାଏ ତୁମ୍ଭ କୃପାପାତ୍ର
ତେବେ ମୋତେ ଦେଖାଇଣ କରାଅ ପବିତ୍ର ।
ଶ୍ରୀକୃଷ୍ଣ ବୋଇଲେ ଆହେ ନାନାଜାତି ବର୍ଣ୍ଣ
ସହସ୍ର ସହସ୍ର ରୂପ ଦେଖ ଅରଜୁନ ।

ଆଦି ବସୁ ରୁଦ୍ର ଆଉ ଅଶ୍ୱିନୀ କୁମାର
ବାୟୁ ପ୍ରଭୃତି ଆଶ୍ଚର୍ଯ୍ୟରୂପ ଦେଖ ମୋର ।
ମୋର ଦେହେ ରହିଅଛି ସମସ୍ତ ସଂସାର
ଏକା ଦେହକରେ ଦେଖ ଆହେ ବୀରବର ।
ଆଉ ଯାହା କିଛି ଇଚ୍ଛା ହେବ ଦେଖିବାକୁ
ତାହା ମଧ୍ୟ ଦେଖାଇବି କହୁଛି ତୁମ୍ଭଙ୍କୁ ।
ହେ ଅର୍ଜୁନ ଯେଉଁ ଆଖି ତୁମ୍ଭେ ଅଛ ବହି
କହୁଛି ସେଥିରେ କିଛି ଦେଖାଯିବ ନାହିଁ ।
ଦିବ୍ୟଚକ୍ଷୁ ଦେଉଅଛି ତୁମ୍ଭଙ୍କୁ ଯେ ମୁହିଁ
ଆମ୍ଭର ଈଶ୍ୱରରୂପ ଦେଖ ତୋଷ ବହି ।
ଏହିପରି କଥା କହି କୃଷ୍ଣ ଅର୍ଜୁନଙ୍କୁ
ଦେଖାଇଲେ ଆପଣାର ଈଶ୍ୱର ରୂପକୁ ।
ସେହି ରୂପରେ ଅନେକ ବଦନ ନୟନ
ପୂର୍ଣ୍ଣ ହୋଇ ରହିଅଛି ହୋଇ ଅତିଘନ ।
ବହୁତ ଆଶ୍ଚର୍ଯ୍ୟ ଦ୍ରବ୍ୟ ତହିଁ ଅଛି ସ୍ଥିତ
ବହୁଦ୍ରବ୍ୟ ଆଭରଣେ ହୋଇଛି ମଣ୍ଡିତ ।
ବହୁଦିବ୍ୟ ମାଲ୍ୟାମ୍ବର ଅଛନ୍ତି ସେ ଧରି
ବହୁ ଦିବ୍ୟଗନ୍ଧ ଅଛି ସୁବାସିତେ ପୂରି ।
ଆକାଶରେ ସହସ୍ରେକ ସୂର୍ଯ୍ୟ ଉଦେ ଶୋଭା
ଭାଙ୍ଗି ପକାଇଲା ସେହି ବିଶ୍ୱରୂପ ପ୍ରଭା ।
ଜଗତଯାକରେ ନାନା ପରକାରେ ଭାଗ
ହୋଇ ଅଛନ୍ତି ଦେଖିଲେ ପାର୍ଥ ନେତ୍ରଯୁଗ ।
ତେଣୁ ରୋମାଞ୍ଚ ହୋଇଲା ଅର୍ଜୁନ ଶରୀର
ନମସ୍କାର କଲେ ତାଙ୍କୁ ଯୋଡ଼ି ବେନିକର ।
ତହୁଁ ଅର୍ଜୁନ କହିଲେ ତୁମ୍ଭର ଦେହରେ
ଦେଖିଲି ସବୁ ବିଭୂତି ବେନି ନୟନରେ ।
ବ୍ରହ୍ମା ରୁଦ୍ର ଦେବତାଦି ଦେବ ଋଷିପନ୍ତି
ଭୂତଜାତିର ସହିତ ପ୍ରାଣୀଏ ଅଛନ୍ତି ।
ସର୍ପମାନେ ତହିଁ ମଧ୍ୟେ ଅଛନ୍ତି ଅପାର
ନାନାଜାତିର ବର୍ଣ୍ଣରେ ହୋଇ ଧାର ଧାର ।
ବହୁନେତ୍ର ବାହୁ ପୁଣି ଉଦର ଅନେକ
ଦେଖିଲି ତୁମ୍ଭ ଦେହରେ ବିଶ୍ୱର ନାୟକ ।
ଆଦି ମଧ୍ୟ ଅନ୍ତ ମାତ୍ର ମୋତେ ଦିଶୁ ନାହିଁ
କସ କହିବି ସମ୍ମୁଖରେ ହେ ଶ୍ରୀକୃଷ୍ଣ ମୁହିଁ ।
କିରୀଟ ଯେ ଗଦା ଚକ୍ର ତେଜରେ ସେ ବ୍ୟାପ୍ତ
ହୋଇବାରୁ ମୋର ନେତ୍ର ହେଉଅଛି ଲୁପ୍ତ ।

ଅକ୍ଷୟ ପରମବ୍ରହ୍ମ ଯାହାକୁହିଁ କହି
ତୁମ୍ଭେ ସେହି ଅଟ ବୋଲି ଜାଣିଲଇଁ ମୁହିଁ ।
ତୁମ୍ଭେ ଏକା ଧର୍ମରକ୍ଷାକାରୀ ଚକ୍ରଧାରୀ
ସନାତନ ପୁରୁଷ ଯେ ଅଟ ତୁମ୍ଭେ ହରି ।
ନିତ୍ୟ ଅବିନାଶୀ ବୋଲି ତୁମ୍ଭଙ୍କୁ କହନ୍ତି
ଯେଣୁ ବିଶ୍ୱରୂପେ ଦେବ ଭବେ ବ୍ୟାପିଛନ୍ତି ।
ଉତ୍ପତ୍ତି ସ୍ଥିତି ପ୍ରଳୟ ହୁଏ ତୁମ୍ଭଠାରେ
ଏହା ସବୁ ତୁମ୍ଭଠାରୁ ସମ୍ଭବଣ ପାରେ ।
ଚନ୍ଦ୍ର ସୂର୍ଯ୍ୟ ଦୁହେଁ ଛନ୍ତି ନେତ୍ରରେ ତୁମ୍ଭର
ଦେବା ମାନବା ଅଛନ୍ତି ତହିଁ କରି ଘର ।
ଅନନ୍ତ ବାହୁ ବଦନ ତୁମ୍ଭର ଅଟଇ
ଜ୍ୱଳନ୍ତା ଅନଳ ତୁମ୍ଭେ ମୁଖେ ଅଛ ବହି ।
ତେଜରେ ବିଶ୍ୱ ସମସ୍ତ କରୁଛ ସନ୍ତପ୍ତ
ତେଣୁ ତୁମ୍ଭେ ହେ ଅନନ୍ତ ଅଟ ବୀର୍ଯ୍ୟବନ୍ତ ।
ଚତୁର୍ଦ୍ଦିଗେ ରହିବାରୁ ଘୋଟି ତୁମ୍ଭ ରୂପ
ଏଣୁ ତିନିଲୋକ ପ୍ରାପ୍ତ ହେଉଛନ୍ତି ତାପ ।
ଦେଖିକରି ଦେବତାଏ ଶରଣ ପଶନ୍ତି
ଭୀତ ଚିତ୍ତରେ ବା କେହି ସ୍ତୁତି କରୁଛନ୍ତି ।
ସିଦ୍ଧ ମହା ଋଷିଗଣ ସ୍ୱସ୍ତି ବଚନରେ
ତୁମ୍ଭର ସ୍ତବକୁ ପଢ଼ୁଅଛନ୍ତି ମୁଖରେ ।
ସିଦ୍ଧ ସାଧ୍ୟ ଋଷିମାନେ ଗୋଟି ଗୋଟି ହୋଇ
ସ୍ତବ ପାଠ କରୁଛନ୍ତି ତୁମ୍ଭଙ୍କୁ ଅନାଇଁ ।
ରୁଦ୍ର ଆଦିତ୍ୟ ବସୁ ଯେ ଅଶ୍ୱିନୀକୁମାର
ଯକ୍ଷ ରକ୍ଷ କିନ୍ନରାଦି ଗନ୍ଧର୍ବ ଅସୁର ।
ଦେବଗଣ ପିତୃଗଣ ଦିଗପାଳଗଣ
ତୁମ୍ଭ ରୂପ ଦେଖୁଛନ୍ତି ଆଶ୍ଚର୍ଯ୍ୟ ହୋଇଣ ।
ସମସ୍ତେ ଦେଖିଣ ବ୍ୟଥା ପ୍ରାପ୍ତ ହେଉଛନ୍ତି
ମୁହିଁ ମଧ୍ୟ ସେହିପରି ବ୍ୟଥିତ ଯେ ଅଛି ।
ଆକାଶକୁ ଆପଣଙ୍କ ରୂପ ଛୁଇଁଅଛି
ନାନାବିଧ ଗୁଣ ବର୍ଣ୍ଣ ତେଜକୁ ବହିଛି ।
ସମସ୍ତ ମୁଖ ତୁମ୍ଭର ହୋଇଛି ବିସ୍ତୃତ
ନେତ୍ରମାନ ହୋଇଛନ୍ତି ବିଶାଳ ପ୍ରଦୀପ୍ତ ।
ଏହା ଦେଖିଣ ମୋହର ବୁଡ଼ୁଛି ସାହସ
ଧରି ପାରୁନାହିଁ ଶାନ୍ତ ହୋଇଣ ଅବଶ ।
ଦନ୍ତମାନ ହୋଇଛନ୍ତି ମୁଖରେ କରାଳ
ତେଣୁକରି ନାଶୁଛନ୍ତି ମୋର ଧୈର୍ଯ୍ୟବଳ ।
ଦିଗ ଯେ ବିଦିଗ ଏ ସକାଶୁ ଜାଣୁନାହିଁ
ପରସନ୍ନ ହୁଅ ମୋତେ ରୁକ୍ମିଣୀର ସାଇଁ ।
ତୁମ୍ଭର ଦନ୍ତ କରାଳ ମୁଖେ ଦୁର୍ଯ୍ୟୋଧନ
ଧୃତରାଷ୍ଟ୍ର ଆଦି ପଶୁଅଛନ୍ତି ବହନ ।
ଆବର ଭୀଷ୍ମ ଦ୍ରୋଣ ଯେ କର୍ଣ୍ଣ ଜୟଦ୍ରଥ
ଆଦି ଯୋଦ୍ଧାମାନେ ପଶୁଅଛନ୍ତି ନିଯୁତ ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ଆଦି ଯୋଦ୍ଧାଗଣ
ପ୍ରବେଶୁଛନ୍ତି ତୁମ୍ଭର ମୁଖେ ଅନୁକ୍ଷଣ ।
କେତେକ ଯୋଦ୍ଧାମାନଙ୍କୁ ଗିଳିବା ବେଳରେ
ଖଣ୍ଡ ଖଣ୍ଡ ମୁଣ୍ଡ ଲାଗିଅଛଇ ଦନ୍ତରେ ।
ସମୁଦ୍ରରେ ନଦୀମାନେ ଯେରୂପେ ପଶନ୍ତି
ମହା ମହାବୀର ତୁମ୍ଭ ମୁଖେ ପଶୁଛନ୍ତି ।
ଜ୍ୱଳନ୍ତାଗ୍ନିରେ ପତଙ୍ଗ ଯେହ୍ନେ ପ୍ରବେଶନ୍ତି
ତୁମ୍ଭର ମୁଖେ ସେମାନେ ତେହ୍ନେ ପଶୁଛନ୍ତି ।
ସବୁ ଲୋକର ପ୍ରବେଶ ନିରେଖିଣ ମୁହିଁ
ବିସ୍ମିତ ହୋଇ ରହିଛି ମହାଭୟ ପାଇ ।
ସକଳ ଲୋକମାନଙ୍କୁ ଜ୍ୱଳନ୍ତ ବଦନେ
ତୁମ୍ଭେ ତ ଗିଳିଦେଉଛ ବିନା ପରିଶ୍ରମେ ।
ତୁମ୍ଭର ତେଜ ଜଗତେ ବ୍ୟାପି ରହିଅଛି
ସମସ୍ତ ପ୍ରାଣୀମାନଙ୍କୁ ସନ୍ତପ୍ତ କରୁଛି ।
ଭୟଙ୍କର ରୂପଧାରୀ ତୁମ୍ଭେ କେଉଁ ଲୋକ
ବିସ୍ତାରିଣ କହ ମୋତେ ରୁକ୍ମିଣୀ ନାୟକ ।
ତୁମ୍ଭଙ୍କୁ ଯେ ନମସ୍କାର କରୁଅଛି ମୁହିଁ
ହୃଦୟେ ପ୍ରସନ୍ନ ହୁଅ ଆହେ ଘଦଗ୍ରାହୀ ।
ତୁମ୍ଭଙ୍କୁ ଜାଣିବାପାଇଁ ଇଚ୍ଛାକରେ ଯେତେ
ତେତେକ ତ ଅଗୋଚର ହେଉଅଛ ମୋତେ ।
ଶ୍ରୀକୃଷ୍ଣ ବୋଇଲେ ମୁହିଁ ଲୋକକ୍ଷୟ କର
କାଳ ଅଟଇ ଅର୍ଜ୍ଜୁନ ମନେ ତୁ ବିଚାର ।
ପ୍ରାଣୀମାନଙ୍କୁ ସଂହାର କରିବାର ପାଇଁ
ଇହଲୋକରେ ଜାଣିଥା ପ୍ରବର୍ତ୍ତିଛି ମୁହିଁ ।
ତୁମ୍ଭେ ଯୁଦ୍ଧ ନ କଲେହେଁ ଏହି ଯୋଦ୍ଧାଗଣ
କେହି ଜୀବିତ ନ ହେବେ ଭଲରୂପେ ଜାଣ ।
ଅତଏବ ଯୁଦ୍ଧପାଇଁ ତୁମ୍ଭେ ବେଗେ ଉଠ
ଶତ୍ରୁ ବଧିବାକୁ କେବେ ନ କର ହେ ମଠ ।
ସଯତ୍ନରେ ଭୀଷ୍ମ ଦ୍ରୋଣ ସବୁଙ୍କୁ ସଂହାର
ଏବେ ସୁଖେ ଭୁଞ୍ଜ ତୁମ୍ଭେ ହସ୍ତିନାର ଶିରୀ ।

ସାକ୍ଷ ତ୍ରୁଭ୍ଳ ଯେତେକ ସବୁ ମଲ୍ଲପର
ହୋଇଅଛନ୍ତି ନିମିତ୍ତ ହୁଅ ଧନୁର୍ଦ୍ଧାରୀ ।
ସବୁ ଯୋଦ୍ଧାମାନଙ୍କର ଯୁଦ୍ଧେ ନଷ୍ଟ ପ୍ରାଣ
ସଂଗ୍ରାମେ ଜୟୀ ହୋଇବ ହେ କୁନ୍ତୀନନ୍ଦନ
ପାର୍ଥ ଶୁଣି ପୁନଃପୁନଃ କରି ନମସ୍କାର
ଭୀତ ମନରେ ତାହାଙ୍କୁ ଦେଲେକ ଉତ୍ତର ।
ତୁମ୍ଭ ମହିମା ମୁଖରେ କରଣ କୀର୍ତ୍ତନ
ଜଗତ ଲୋକ ଅଛନ୍ତି ଆନନ୍ଦିତ ଜାଣ ।
ରକ୍ଷଗଣ ତାହା ଶୁଣି ଭୀତମନ ହୋଇ
ଦଶଦିଗକୁ ପଳାନ୍ତି ପଛକୁ ନ ଚାହିଁ ।
ସିଦ୍ଧଗଣ କରୁଛନ୍ତି ସଦା ନମସ୍କାର
ମହିମା ତୁମ୍ଭର ଜାଣି ଆହେ ଚକ୍ରଧର ।
ହେ ଅନନ୍ତ ଦେବଗଣ ବ୍ରହ୍ମାଙ୍କ ପିଅର
ତୁମ୍ଭଙ୍କୁ ନ ନମି ରହେ କିଏ ହୋଇ ସ୍ଥିର ।
ବ୍ୟକ୍ତାବ୍ୟକ୍ତ ପରଂବ୍ରହ୍ମ ତୁମ୍ଭେ ସିନା ଅଟ
ଆଦ୍ୟ ପୁରାଣ ପୁରୁଷ ସ୍ଥିତି ସର୍ବଘଟ ।
ବିଜୟ ଜାଣିବା ଲୋକ ଅଟ ସିନା ତୁମ୍ଭେ
ସମସ୍ତ ଲୋକଙ୍କ ଲୟସ୍ଥାନ ତୁମ୍ଭେ ଭବେ ।
ଯେତେକ ପଦାର୍ଥମାନ ସୃଷ୍ଟି ହୋଇଛଇ
ତୁମ୍ଭେ ତାହାର କାରଣ ସର୍ବେ ଛନ୍ତି କହି ।
ବିଷ୍ଣୁ ପଦ ପରଂବ୍ରହ୍ମ ଅଟ ସିନା ତୁମ୍ଭେ
ତୁମ୍ଭର କୀର୍ତ୍ତି ବର୍ଣ୍ଣିବ କଏ ଅଛି ଭବେ ।
ବାୟୁ ଅନଳ ବରୁଣ ଚନ୍ଦ୍ର ପ୍ରଜାପତି
ପିତାମହ ବୋଲିକରି ତୁମ୍ଭଙ୍କୁ ବୋଲନ୍ତି ।
ସହସ୍ର ସହସ୍ର ଥର ତୁମ୍ଭର ପାଦରେ
କରୁଅଛି ନମସ୍କାର ମୁହିଁ ବିନୟରେ ।
ଆଗରେ ପଛରେ କରୁଅଛି ନମସ୍କାର
କୃପା କରଣ କେଶବ କର ହେ ଉଦ୍ଧାର ।
ହେ ଅନନ୍ତବୀର୍ଯ୍ୟ ସର୍ବ ବ୍ୟାପକ ଯେ ହୋଇ
କହିଥିବାରୁ ତୁମ୍ଭଙ୍କୁ ସର୍ବ ବୋଲି କହି ।
ତୁମ୍ଭ ମହିମାରେ ମୁହିଁ ବିମୋହିତ ହୋଇ
ହେ ସଖେ ହେ କୃଷ୍ଣ ବୋଲି ମୁଖରେ ବୋଲଇ
ଏଥୁ ବଳି ଅପରାଧ କିଛି ନାହିଁ ମୋର
ଏ ଲୌକିକ ଦୋଷ କ୍ଷମା କର ଚକ୍ରଧର ।
ଆହାର ବିହାର ଆଉ ଶୟନ କାଳରେ
ପରିହାସ କରେ ସମବୟସ୍କ ଭାବରେ ।
ଏହି ଅପରାଧ ମୋର କ୍ଷମିଣ ଗୋବିନ୍ଦ
ହୃଦୟରେ ଜନମାଅ ପରମ ଆନନ୍ଦ ।
ସମସ୍ତ ବିଶ୍ୱରେ ତୁମ୍ଭେ ଅଟ ମହାଗୁରୁ
ତୁମ୍ଭଙ୍କୁ ଅଧିକ କିସ ଆମ୍ଭେ ବୋଲିପାରୁ ।
ସାଷ୍ଟାଙ୍ଗରେ ପ୍ରଣିପାତ କରି ହେ ଗୋବିନ୍ଦ
କହୁଅଛି କ୍ଷମାକର ସର୍ବ ଅପରାଧ ।
ପୁତ୍ର ଅପରାଧ ଯେହ୍ନେ ପିତା କ୍ଷମାକରେ
ସଖା ଅପରାଧ ଯେହ୍ନେ ସଖା ଯେ ନ ଧରେ ।
ପତ୍ନୀ ଅପରାଧ ଯେହ୍ନେ ପତି କ୍ଷମା କରି
ସେରୂପେ ମୋ ଅପରାଧ କ୍ଷମାକର ହରି ।
ଏମନ୍ତ ଅପୂର୍ବ ରୂପ ପୂର୍ବେ ଦେଖିନାହିଁ
ତେଣୁକରି ମୋର ଆଖି ବୁଜି ପଡ଼ୁଛଇ ।
ହେ ଜଗନ୍ନିବାସ ତୁମ୍ଭେ ପ୍ରସନ୍ନ ହୋଇଣ
ତୁମ୍ଭର ପୂର୍ବ ରୂପକୁ ପ୍ରକାଶ ବହନ୍ ।
କିରୀଟି ଯେ ଗଦା ଚକ୍ର ବହି ଜନାର୍ଦ୍ଦନ
ମୋର ନେତ୍ର ସମ୍ମୁଖରେ କର ଅଧିଷ୍ଠାନ ।
ଶ୍ରୀକୃଷ୍ଣ ବୋଇଲେ ଆହେ ମୋର ରୂପ ଏହି
ତୁମ୍ଭ ବିନା ଅନ୍ୟ ଲୋକ କେହି ଦେଖିନାହିଁ
ଏ ଅନ୍ତରେ ବିଶ୍ୱରୂପ କାହାକୁହିଁ ମୁହିଁ
ଦାନ ଯଜ୍ଞାଦିରେ ସୁଦ୍ଧା ନ ଥିଲି ଦେଖାଇ ।
ଏହି ଭୟଙ୍କର ରୂପେ ବ୍ୟଥିତ ନ ହୁଅ
ପ୍ରୀତମନେ ପୂର୍ବ ରୂପ ଦେଖ କୁନ୍ତୀପୁଅ ।
ଏହି ପ୍ରକାରେ ଅର୍ଜ୍ଜୁନ ଆଗେ କୃଷ୍ଣ କହି
ଛିଡ଼ା ହୋଇଣ ରହିଲେ ପୂର୍ବ ମୂର୍ତ୍ତି ବହି ।
ଅର୍ଜ୍ଜୁନ ଦେଖି ବୋଇଲେ ଆହେ ପୀତବାସ
ସୌମ୍ୟ ମୂର୍ତ୍ତି ଦରଶନେ ଲଭିଲି ସନ୍ତୋଷ ।
ତୁମ୍ଭର ସେ ରୂପ ଦେଖି ମୋହର ପ୍ରାଣଟି
ଛାଡ଼ି ଯାଉଥିଲା ମୋର ହୃଦସ୍ଥାନ ଫୁଟି ।
କୃଷ୍ଣ ବୋଇଲେ ମୋ ସେହି ରୂପକୁ ଅର୍ଜ୍ଜୁନ
ଦେଖିବାକୁ ଦେବେ ସଦା କରୁଥାନ୍ତି ମନ ।
ଭକ୍ତି ବିନା ଅନ୍ୟରୂପେ ମୋର ସେ ରୂପକୁ
ନ ଦେଖାଏ ମୁହିଁ ଆହେ କହୁଛି ତୁମ୍ଭଙ୍କୁ ।
ମୋର ପାଇଁ କରୁଥାଏ କର୍ମ ଜନ ଯେହି
ବଇର ଭାବକୁ ଦେହୁ ଦେଇ ନିବର୍ତ୍ତାଇ ।
ତାହାକୁହିଁ ମୁହିଁ ଜାଣ ହୋଇଣ ପ୍ରସନ୍ନ
ଅନ୍ତକାଳରେ ନେଇଣ ଦିଏ ମୋର ସ୍ଥାନ ।

## ୧୨ (ଭକ୍ତି ଯୋଗ)

ଏଥୁଅନନ୍ତରେ ପାର୍ଥ ପୁଚ୍ଛିଲେ କୃଷ୍ଣଙ୍କୁ
କେଉଁ ଭକ୍ତ ଯୋଗୀ ବଡ଼ କହନ୍ତୁ ଆମ୍ଭଙ୍କୁ ।
କୃଷ୍ଣ ବୋଇଲେ ଯେ ମୋର କରେ ଉପାସନା
ଯୋଗୀ ମଧ୍ୟରେ ସେ ବଡ଼ ଜାଣ ମହାମନା ।
ସର୍ବବ୍ୟାପୀ କୂଟାଚଳ ଯେହୁ ଅନିର୍ଦ୍ଦିଷ୍ଟ
ଅବ୍ୟୟ ଅକ୍ଷୟ ପୁଣି ବ୍ରହ୍ମଜ୍ଞାନ ପଦ ।
ଇନ୍ଦ୍ରିୟ ସଂଯମ କରି ତାଙ୍କୁ ଯେ ଜାଣଇ
ସେ ମତେ ଲଭଇ ମୋତେ ସନ୍ଦେହ ଯେ ନାହିଁ
ଅବ୍ୟକ୍ତ ବ୍ରହ୍ମେ ଆସକ୍ତ ଯାହାର ଯେ ଚିତ୍ତ
ବହୁତ କ୍ଳେଶରେ ତାର ଦେହ ହୁଏ ଯୁକ୍ତ ।
ଅବ୍ୟକତ ଗତିକ ସେ ବହୁତ ଦୁଃଖରେ
ଦେହୀମାନେ ପ୍ରାପ୍ତହୋଇ ବସନ୍ତି ସ୍ୱର୍ଗରେ ।
ଯେଉଁମାନେ ମୋହଠାରେ ସମର୍ପନ୍ତି କର୍ମ
ଏକାନ୍ତ ଭକ୍ତିଭାବରେ ହେ ବୀର ଉତ୍ତମ ।
ତାହାଙ୍କୁ ମୁହିଁ ପ୍ରାପତ ଅଳପେ ହୁଅଇ
କହିବାକୁ ଏଥିରେ ଯେ କିଛୁ କଥା ନାହିଁ ।
ଏହା ଜାଣି ମୋଠାରେ ହେ ବୀର ମନ ଦିଅ
କହୁଅଛି ଛାଡ଼ିଦିଅ ମନରୁ ସଂଶୟ ।
ଏହିରୂପେ ତୁମ୍ଭେ ଯେବେ ମୋଠାରେ କରିବ
ନିଶ୍ଚେ ଜାଣ କହୁଅଛି ମୋତେ ପ୍ରାପ୍ତ ହେବ ।
ଯେବେ ମୋହଠାରେ ମନ ନ ପାରିବ ରଖି
ତେବେ ମୋତେ ସ୍ମରୁଥାଅ ହୋଇକରି ସୁଖୀ
ସ୍ମରଣ ଯଦ୍ୟପି କରି ନ ପାରିବ ତୁମ୍ଭେ
ତେବେ ମୋର ବ୍ରତ କର କହୁଅଛୁ ଆମ୍ଭେ ।
ମୋହ ନିମିତ୍ତରେ କର୍ମ କଲେ ଶୁଭ ବୁଦ୍ଧି
ହୋଇବ ହେ ବୀରବର ପ୍ରାପ୍ତହେବ ସିଦ୍ଧି ।
କିଛୁ ମୋର କର୍ମ କରି ନ ପାରିବ ଯେବେ
ମୋ ଶରଣ ପଶି କର୍ମଫଳ ଛାଡ଼ି ତେବେ ।
ଅଭ୍ୟାସ ଯୋଗ ଅପେକ୍ଷା ଜ୍ଞାନ ଅଟେ ଶ୍ରେୟ
ଜ୍ଞାନଠାରୁ ଧ୍ୟାନ ଆହେ ଅଧିକ ବିଜୟ ।
ଧ୍ୟାନ କଲାଠାରୁ ପୁଣି କର୍ମଫଳ ତ୍ୟାଗ
ବଡ଼ ଅଟଇ ହେ ଜାଣ ପାର୍ଥ ମହାଭାଗ ।
କର୍ମଫଳ ଯେଉଁ ନର ତ୍ୟାଗ ନ କରଇ ।
ସଂସାରରେ ଶାନ୍ତ ଜାଣ ତାହାରତି ନାହିଁ ।
ଭକ୍ତିଥିବା ଲୋକଙ୍କର ପ୍ରାଣୀଠାରେ ଦୋଷ
କରିବାର ହେ ଅର୍ଜ୍ଜୁନ ନୁହଇ ପ୍ରକାଶ ।
ଅହଙ୍କାରେ ମମତାକୁ ଯେହୁ ତ୍ୟାଗ କରେ
ଦୁଃଖ ସୁଖ ସମାନ ଯେ ହୁଏ ତାହାଠାରେ ।
ମିତ୍ର ଭାବରେ ସବୁଙ୍କୁ ଯେ ଦୃଷ୍ଟି ଦିଅଇ
ନିରନ୍ତରେ ହୃଦୟରେ ଦୟା ବହୁଥାଇ ।
ଅଳପକେ ଯେଉଁ ଲୋକ ହୁଅଇ ସନ୍ତୁଷ୍ଟ
ସେ ଲୋକ ମୋହ ପାଖରୁ ନ ହୁଅଇ ଭ୍ରଷ୍ଟ ।
ସାବଧାନ ହୋଇ ଜୟ ଆଶା ନ କରିବ
ମୋର ବିଷୟରେ ଯେତି ବୁଦ୍ଧି ଦେଇଥିବ ।
ଏ ବାହାରେ ଯେ ହୋଇବ ଦୃଢ଼ ଯେ ନିଶ୍ଚୟ
ଜାଣିଥାଅ ଅର୍ଜ୍ଜୁନ ସେ ହୁଏ ମୋର ପ୍ରିୟ ।
ଯା ସକାଶୁଁ ଅନ୍ୟ ଲୋକ ଉଦ୍‌ବେଗ ନ ପାଏ
ନିଜେ ମଧ୍ୟ ଅନ୍ୟପାଇଁ ଉଦ୍‌ବିଗ୍ନ ନ ହୁଏ ।
ହରଷ ଅମରଷାଦ ଉଦ୍‌ବେଗ ରହିତ
ସେହୁ ଅଟଇ ମୋହର ଅତି ପ୍ରିୟ ଭକ୍ତ ।
ନିରପେକ୍ଷ ଶୁଚି ଦକ୍ଷ ପୁଣି ଉଦାସୀନ
ସର୍ବାରମ୍ଭ ପରିତ୍ୟାଗୀ ଅଟେ ଯେଉଁ ଜନ ।
ସେହି ମୋର ଅତି ପ୍ରିୟ ଭକତ ଅଟଇ
ଦୃଢ଼ରୂପେ ଜାଣିଥାଅ ଦ୍ରୌପଦୀର ସାଇଁ ।
ହର୍ଷ ଶୋକ ଶୁଭାଶୁଭ ଯାହାରେ ସମାନ
ହେ ଅର୍ଜ୍ଜୁନ ଜାଣ ସେହୁ ମୋର ପ୍ରିୟତମ ।
ରହୁ ନ ଥିବ ଯେ ଏକସ୍ଥାନେ କରି ଘର
ଏ ପ୍ରକାରେ ରହେ ଯେ ସେ ପ୍ରିୟ ଭକ୍ତ ମୋର
ଯେଉଁମାନେ ମୋର ଏହି କଥାକୁ ଶୁଣନ୍ତି
ସେ ମୋହର ପ୍ରିୟ ଅଟେ କୌନ୍ତେୟ ନାତ ।



## ୧୩ (କ୍ଷେତ୍ର କ୍ଷେତ୍ରଜ୍ଞ ବିଭାଗ ଯୋଗ)

ଏଥଅନ୍ତେ କୃଷ୍ଣ ବୋଇଲେ ଶୁଣ ହେ ଅର୍ଜ୍ଜୁନ
କ୍ଷେତ୍ର ବୋଲିଣ ଗୋଟିଏ ଶରୀରର ନାମ ।
ଶରୀରକୁ କ୍ଷେତ୍ର ବୋଲି ଯେ ଲୋକ ଜାଣଇ
କ୍ଷେତ୍ରଜ୍ଞ ବୋଲିଣ ସିନା ତାହାକୁହିଁ କହି ।
ଆହେ ପାର୍ଥ ମୁହିଁ ଅଟେ ସବୁ କ୍ଷେତ୍ରଗତ
କ୍ଷେତ୍ରଜ୍ଞ ବୋଲିଣ ମୋତେ ଜାଣ କୁନ୍ତୀସୁତ ।
କ୍ଷେତ୍ର କ୍ଷେତ୍ରଜ୍ଞ ସନ୍ଧିରୁ ଜାତ ହୋଇଛନ୍ତି
ସଂକ୍ଷେପେ କହିବା ତାହା ଶୁଣ ଦେଇ ମତି ।

ଋଷିମାନେ କହିଛନ୍ତି ବେଦ ସୂତ୍ରପଦେ
ଲେଖିଯାଇଛନ୍ତି ପୁଣି ନାନାବିଧ ଛନ୍ଦେ ।
ମହାଭୂତ ପୃଥିବ୍ୟାଦି ଏକାଦଶେନ୍ଦ୍ରିୟ
ମନ ବୁଦ୍ଧି ଇଚ୍ଛା ଆଦି ପାଞ୍ଚଟି ବିଷୟ ।
ଦ୍ୱେଷ ସୁଖ ଦୁଃଖ ପୁଣି ଚେତନା ସଂଘାତ
ଧୃତି ଶରୀର ଏମାନେ ବୋଲିଅନ୍ତି କ୍ଷେତ୍ର ।
କ୍ଷମା ଶଉଚ ଅହିଂସା ଧୈର୍ଯ୍ୟ ଅମାନିତା
ଆତ୍ମା ନିଗ୍ରହ ଅଶାବ ଯେ ଅଦାମ୍ଭିକତା ।
ଜନ୍ମ ମୃତ୍ୟୁ ଜରା ବ୍ୟାଧି ଆଉ ଦୁଖ ଦୋଷ
ମାନଙ୍କର ଦରଶନ ବୈରାଗ୍ୟ ଆଶେଷ ।
ବିନମ୍ରୀ ନ ହୋଇବାର ଅହଙ୍କାର ଶକ୍ତି
ପୁତ୍ର ଆଦି ଉତ୍ପାଦନେ ନ ଥାଏ ଆସକ୍ତି ।
ଇଷ୍ଟାନିଷ୍ଟ ଆପତ୍ତିରେ ସମଭାବ ଚିତ୍ତ
ଅଧ୍ୟାତ୍ମ ଭାବ ଆଉ ବିଜ୍ଞାନ ନିମିତ୍ତ ।
ଜନ ସମାଜେ ଆରତି ଆଉ ତତ୍ତ୍ୱଜ୍ଞାନ
ଅର୍ଥ ଦର୍ଶନ ନିମନ୍ତେ ଆଶ୍ଚର୍ଯ୍ୟ କରଣ ।
ଏହାକୁହିଁ ତହୁଁ ଅର୍ଜୁନ ଜ୍ଞାନ ବୋଲି କହି
ଏଥୁ ବିପରୀତ ହେଲେ ଅଜ୍ଞାନ ବୋଲଇ ।
ତାହା ଅବଗତ ହେଲେ ଲଭନ୍ତି ମୁକତି
ଏକମନେ ତାହା ଶୁଣ କୁନ୍ତିଭୋଜ ନାତି ।
ଅନାଦି ବ୍ରହ୍ମ ତାହାକୁ ବୋଲନ୍ତି ଜଗତେ
ଏ କଥା ନିଶ୍ଚୟ ଜାଣ ପାର୍ଥ ମହାମତେ ।
ସତ ଅସତରୁ ସେହୁ ଅଟନ୍ତି ବାହାର
ଯୋଗୀ ବିନା ନ ଜାଣନ୍ତି ଆଉ କେହି ନର
ସବୁ ଆଡ଼େ ପାଦ ହସ୍ତ ଆଦି ଚକ୍ଷୁ ମୁଖ
ତାହାଙ୍କର ଅଛି ଆହେ ଜାଣ ନରଶିଖ ।
ଇନ୍ଦ୍ରିୟଙ୍କର ଗୁଣରେ ହୁଅନ୍ତି ପ୍ରକାଶିତ
ପୁଣି ଇନ୍ଦ୍ରିୟରୁ ସେହୁ ଅଟଇ ବର୍ଜିତ ।
କାହିଁରେ ସେ ନ ଥାଇଣ ସବୁରେ ଅଛନ୍ତି
ଭଲରୂପେ ଜାଣିଥାଅ ଦ୍ରୌପଦୀଙ୍କ ପତି ।
ନିର୍ଗୁଣ ଗୁଣ ଭୋକତା ବୋଲଣ ତାହାଙ୍କୁ
ବ୍ୟାପିଥାନ୍ତି ପୁଣି ପ୍ରାଣୀ ହୃଦ ବାହାରକୁ ।
ଚରାଚରରେ ସେହୁ ତ ନ ହୁଅନ୍ତି ଜଣା
ସୂକ୍ଷ୍ମ ହେବା ହେତୁରୁ ସ୍ୱା ଘଟେ ମହାମନା ।
ଦୂରେ ଥିଲେହେଁ ପାଖରେ ଅଛନ୍ତିଟି ସେହି
ପ୍ରାଣୀଙ୍କର ଭିନ୍ନାଭିନ୍ନ ତାହାଙ୍କୁହିଁ କହି ।

ଅବିଭକ୍ତ ଯେ ବିଭକ୍ତ ତାହାଙ୍କୁ ବୋଲନ୍ତି
ସୃଜନ ସଂସାରସ୍ଥିତି ସେହି ତ କରନ୍ତି ।
ଚନ୍ଦ୍ର ସୂର୍ଯ୍ୟଙ୍କ ଅଟନ୍ତି ସେହି ପ୍ରକାଶକ
ଅଜ୍ଞାନରୁ ପର କରି ତାଙ୍କୁ ହେ ବିବେକ ।
ଜ୍ଞାନ ଗମ୍ୟ ଜ୍ଞେୟ ପୁଣି ସେହିଟି ବୋଲନ୍ତି
ସବୁ ପ୍ରାଣୀଙ୍କ ହୃଦରେ ସଞ୍ଚାର କରନ୍ତି ।
କ୍ଷେତ୍ରଜ୍ଞାନ ଜ୍ଞେୟ ମୋର ଦେହୀ ଭକ୍ତ ଜାଣ
ଏହି କଥାରେ ସନ୍ଦେହ ନ କର ଅର୍ଜୁନ ।
ଅନାଦି ପ୍ରକୃତି ଏହି ପୁରୁଷ ଯେ ଦୁଇ
ବିକାର ଗୁଣ ପ୍ରକୃତି ଜନମ ହୁଅଇ ।
କାର୍ଯ୍ୟକର୍ତ୍ତା କାରଣ ଯେ ପ୍ରକୃତି ହେ ବୀର
ସୁଖ ଦୁଃଖ ଭୋଗ ହେତୁ ମାତ୍ର ସେହି ନର ।
ପୁରୁଷ ତ ପ୍ରକୃତିର ବଶ ହୋଇଥାଏ
ପ୍ରକୃତିରୁ ଜାତ ଗୁଣମାନଙ୍କୁ ସେ ପାଏ ।
ଶୁଭ ଅଶୁଭ କରମ ସକାଶୁଁ ପୁରୁଷ
ଭଲ ମନ୍ଦ ଯୋନିରେ ସେ ହେଉଛି ପ୍ରକାଶ ।
ଶରୀର ମଧ୍ୟରେ ଯେଉଁ ପୁରୁଷ ରହିଛି
ପ୍ରକୃତିରୁ ଭିନ୍ନ ସେହି ବୋଲି ମୁଁ କହିଛି ।
ସେହି ଆହେ ଅରଜୁନ ଭୋକତା ଭରତା
ଈଶ୍ୱର ପରମଆତ୍ମା ଦ୍ରଷ୍ଟା ଅନୁମନ୍ତା ।
ପ୍ରକୃତି ପୁରୁଷକୁ ଯେ ମନୁଷ୍ୟ ଜାଣଇ
ହେ ପାର୍ଥ ତାହାର ଜନ୍ମ କେବେଁ ନ ହୁଅଇ
କେଉଁମାନେ ଧ୍ୟାନ କରି ଆତ୍ମାକୁ ଦେଖନ୍ତି
ଯେଉଁମାନେ ଅବା ସାଂଖ୍ୟଯୋଗରେ ଚହ୍ନନ୍ତି
ଯେଉଁମାନେ ଯୋଗମାର୍ଗେ ଆତ୍ମାକୁ ଚହ୍ନନ୍ତି
ଅଜ୍ଞାନୀ ତାଙ୍କଠୁ ଶୁଣି ଶୋକ ନ ପାଆନ୍ତି ।
ପ୍ରକୃତି ଆଉ ପୁରୁଷ ସଙ୍ଗମୁ ସ୍ଥାବର
ଜଙ୍ଗମ ହେଉଅଛନ୍ତି ମନରେ ବିଚାର ।
ସବୁଠାରେ ସମାନ ସେ ହୋଇଣ ଅଛନ୍ତି
ସବୁ ଗଲେ ତାହାଙ୍କର ନ ହୁଅଇ କ୍ଷତି ।
ଏ ରୂପେ ଆହେ ଅର୍ଜୁନ ବ୍ରହ୍ମକୁ ଯେ ଜାଣେ
ତାହାକୁ ଜ୍ଞାନୀ ବୋଲଣ ବଚନ ବଖାଣେ ।
ସବୁଠି ଈଶ୍ୱର ଅଛନ୍ତି ଯେ ଜାଣି ପାରଇ
ଅନାୟାସରେ ଜିଣଇ ଜଗତକୁ ସେହି ।
ପ୍ରକୃତି ସମସ୍ତ କର୍ମମାନ କରୁଅଛି
ଆତ୍ମା ସ୍ଥିର ହେଉ ସେହି ସବୁ ଜାଣୁଅଛି ।

ସେହି ଲୋକମାନେ ପାର୍ଥ ଜ୍ଞାନୀ ବୋଲାଅନ୍ତି
ମଲେ ମଧ୍ୟ ମୋର ପାଶେ ଯାଇଣ ମିଳନ୍ତି ।
ପ୍ରାଣୀଙ୍କର ଉଦ୍ଭବଅଛି ଭେଦ ପ୍ରକୃତିର
ପ୍ରକୃତିରୁ ଏ ଜଗତ ବଢ଼େ ନିରନ୍ତରେ ।
ଏମନ୍ତ ବୋଲି ଯେକାଳେ ଜାଣିପାରେ ନର
ବ୍ରହ୍ମ ସ୍ୱରୂପକୁ ତେବେ ଧରେ ସେ ହେ ବୀର
ଅନାଦି ନିର୍ଗୁଣ ହୋଇବାରୁ ପରମାତ୍ମା
କର୍ମଫଳରେ ନିର୍ଲିପ୍ତ ନୁହେ ହେ ମହାତ୍ମା ।
ଆକାଶ ବ୍ୟାପ୍ତ ହୋଇଣ ସବୁଦେହେ ଥାଇ
ଆତ୍ମା ଲୋପ ନୁହଇ ହେ ପାର୍ଥ ମୁଁ କହଇ ।
ସବୁ ପଦାର୍ଥ ପ୍ରକାଶ ସୂର୍ଯ୍ୟ କଲପର
ଆତ୍ମା ସେହିରୂପେ ଦେହ ପରକାଶ କର ।
ପ୍ରକୃତି ପୁରୁଷର ସେ ଅନ୍ତକୁ ଜାଣଇ
ପରମ ପଦ ତାହାକୁ ଅଲଭ୍ୟ ନୁହଇ ।

———

## ୧୪ (ଗୁଣତ୍ରୟ ବିଭାଗ ଯୋଗ)

ଏ ଅନ୍ତେ କୃଷ୍ଣ ବୋଇଲେ ଶୁଣ ଆହେ ପାର୍ଥ
କହିବା ଉତ୍ତମ ଜ୍ଞାନ ହୋଇବ କୃତାର୍ଥ ।
ଯେଉଁ ଜ୍ଞାନକୁ ଆଶ୍ରୟ କରି ଯୋଗୀଗଣ
ଜ୍ଞାନୀ ବୋଲାଇ ଅଛନ୍ତି ଶରୀର ଧାରଣ ।
ସେହି ଜ୍ଞାନକୁ ଆଶ୍ରୟ କରେ ଯାର କାୟ
ଜନ୍ମ ମରଣକୁ ତାର ନ ଥାଏଟି ଭୟ ।
ମୋହର ପ୍ରକୃତି ଅଟେ କର୍ତ୍ତା ଧାନ ସ୍ଥାନ
ତହିଁରେ ଗର୍ଭ କରାଏ ମୁହିଁ ଅର୍ଜୁନ ।
ଗର୍ଭାଧାନରୁ ଜାଣହେ ବ୍ରହ୍ମାଦି ଉତ୍ପତ୍ତି
ହୁଏ ବୋଲି ଜାଣ ଆହେ ଦ୍ରୌପଦୀର ପତି
ପ୍ରକୃତି ସେ ସବୁ ଯୋନି ଜନ୍ମ କରୁଅଛି
ମାତା ପିତା ରୂପେ ମୁହିଁ ଜଗତେ ରହିଛି ।
ସତ୍ତ୍ୱ ରଜ ତମ ସେହି ପ୍ରକୃତିରୁ ହୋଇ
ଦେହରେ ଦେହୀକୁ ବାନ୍ଧି ରଖିଛନ୍ତି ସେହି ।
ସେହି ଗୁଣ ମାନଙ୍କରେ ସତ୍ତ୍ୱ ରଜ ଗୁଣ
ଅନାମୟ ଅନାସକ୍ତ ବୋଲିକରି ଜାଣ ।
ସତ୍ତ୍ୱଗୁଣ ଜ୍ଞାନ ଲଭେ ହୋଇ ଅଶଙ୍କିତ
ଲୋକକୁ କରାଉଅଛି ଜାଣ ଦେଇ ଚିତ୍ତ ।
ରାଗରୂପ ରଜ ଗୁଣ ତୃଷ୍ଣା ସଙ୍ଗ ଦୁଇ
ଜନମାଉଅଛି ଆହେ ଜାଣ କହୁଥାଇ ।
ରଜଗୁଣେ ଲୋକମାନେ କର୍ମ କରୁଛନ୍ତି
ଏହା ଭଲରୂପେ ଜାଣ ପାର୍ଥ ମହାପତି ।
ଅଜ୍ଞାନରୁ ଦୂଷଣୀୟ ତମ ଜାତହୋଇ
ମୋହ ମଦରେ ଦେହୀଙ୍କୁ ଘୂର୍ଣ୍ଣାହିଁ କରଇ ।
ତମଗୁଣର ହେତୁରୁ ପ୍ରମାଦ ଆଳସ୍ୟ
ନିଦ୍ରା ହେଉଅଛି ଜାଣ ମହୀରେ ପ୍ରକାଶ ।
ରଜ ତମ ଏହି ଦୁଇ ଗୁଣ ଊଣାକରି
ସତ୍ତ୍ୱଗୁଣ ବୃଦ୍ଧିପାଏ ହେ ଗାଣ୍ଡିବଧାରୀ ।
ସେହିରୂପେ ରଜଗୁଣ ସତ୍ତ୍ୱ ତମ ଦୁଇ
ଊଣାକରି ଦେଇଣ ଯେ ଆପେ ବୃଦ୍ଧିହୋଇ ।
ସତ୍ତ୍ୱ ରଜକୁ ଯେପରି ତମ ଊଣା କରେ
ତାହାର ଅଧିକାରକୁ ଅଧିକେ ବିସ୍ତାରେ ।
ଦେହେ ଜ୍ଞାନ ପ୍ରକାଶନ୍ତେ ଯଦ୍ୟପି ସେ କରେ
ସତ୍ତ୍ୱଗୁଣ ବୃଦ୍ଧିହେଲା ବୋଲନ୍ତି ବାକ୍ୟରେ ।
ଲୋଭକର୍ମ ପ୍ରବୃତ୍ତି ଯେ ଆରମ୍ଭ ଅଶମ
ରଜଗୁଣରେ ବୃଦ୍ଧି ଯେ ହୁଏ ବୀରୋତ୍ତମ ।
ତମ ଗୁଣରେ ବଢ଼ଇ ଅପ୍ରବୃତ୍ତି ମୋହ
ତେଣୁ ପ୍ରମାଦ ଜନ୍ମଇ ଜାଣ ନିଃସନ୍ଦେହ ।
ସତ୍ତ୍ୱଗୁଣ ବୃଦ୍ଧି ବେଳେ ଯେଉଁ ଲୋକ ମରେ
ଭଲରୂପେ ବସେ ଯାଇ ଉତ୍ତମ ଲୋକରେ ।
ରଜଗୁଣ ବୃଦ୍ଧିବେଳେ ଯେ ଲୋକ ମରଇ
ପୁଣି ଆସି ନରଲୋକେ ଜନମ ଲଭଇ ।
ତମଗୁଣ ବଢ଼ିଥିବାବେଳେ ଯେ ମରଇ
ପଶ୍ୱାଦି ଯୋନିରେ ଯାଇ ଜନମ ଲଭଇ ।
ସାତ୍ତ୍ୱିକ କର୍ମକୁ କରେ ନିଯୁକ୍ତ ଯେ ଲୋକ
ଇହ ପରଲୋକେ ତାର ନ ହୁଅଇ ଶୋକ ।
ରଜଗୁଣେ କର୍ମ କଲେ ଦୁଃଖ ସାର ହୁଏ
ତମ ଗୁଣରେ କରିଲେ ଅଜ୍ଞାନକୁ ପାଏ ।
ସତ୍ତ୍ୱଗୁଣେ ଜ୍ଞାନଲଭ ରଜଗୁଣେ ଲୋଭ
ତମଗୁଣର ଅଜ୍ଞାନ ପ୍ରମାଦ ସୁଲଭ ।
ସତ୍ତ୍ୱଗୁଣୀ ଲୋକମାନେ ଯାଆନ୍ତି ସ୍ୱର୍ଗକୁ
ରଜଗୁଣୀ ଲୋକ କଥା ପାଆନ୍ତି ମଧ୍ୟକୁ ।
ତମଗୁଣୀ ଲୋକମାନେ ପାଆନ୍ତି ନରକ
ଜାଣ ଆହେ ପଣ୍ଡୁପୁତ୍ର ବୀରଙ୍କ ନାୟକ ।
ଜୀବ ଯେକାଳେ ଗୁଣକୁ ଜୟ ପରକରି
ଆତ୍ମାକୁ ଜାଣି ପାରଇ ଲଭେ ମୋର ପୁରୀ ।

ଦେହୀ ଏହି ଗୁଣଟିକୁ ଅତିକ୍ରମ କଲେ
ଜନ୍ମ ମୃତ୍ୟୁ ତ୍ୟାଗକରି ମୁକ୍ତ ଲଭେ ଭଲେ ।
ଅର୍ଜୁନ ବୋଇଲେ କିସ କଲେ ହେ ଅଚ୍ୟୁତ
ମାନବ ତିନଗୁଣଙ୍କୁ ଜିଣନ୍ତି ନିଶ୍ଚିତ ।
କେଉଁ ଚିହ୍ନ ଧରିଥିଲେ ଲୋକ ନିର୍ଗୁଣକୁ
ଅତିକ୍ରମି ଅଛି ବୋଲି ଜାଣିବା ମନକୁ ।
ଏହା ଜାଣିବାକୁ ମୋର ବଳଅଛି ମତି
ପ୍ରକାଶିଣ କହ ମୋତେ ଲକ୍ଷ୍ମୀଦେବୀ ପତି ।
ଶ୍ରୀକୃଷ୍ଣ ବୋଇଲେ ମୋହ ଉପସ୍ଥିତ ହେଲେ
ଯେଉଁ ଜନ ତାହାକୁଟି ପରିତ୍ୟାଗ କରେ ।
ଏମାନେ ନିବୃତ୍ତି ହେଲେ ଲୋଭ ନ କରନ୍ତି
ଦୁଃଖ ସୁଖାଦି ଗୁଣରେ ମତି ନ ରଖନ୍ତି ।
ଉଦାସୀନର ସଦୃଶ ଯାଏ ଲୀନ ହୋଇ
ବିଷୟ ପ୍ରକୃତିରେ ଯେ ଇନ୍ଦ୍ରିଦ୍ୱାର ଦେଇ ।
ଲୋଷ୍ଟ୍ର କାଞ୍ଚନକୁ ଯେହୁ ମଣଇ ସମାନ
ନିନ୍ଦା ସ୍ତୁତି ପ୍ରିୟାପ୍ରିୟ ମାନ ଅପମାନ ।
ଏହିରୂପେ ଯେଉଁଲୋକ ଅଛଇ ଅର୍ଜୁନ
ନିର୍ଲୋଭ ହୋଇଣ ଗୁଣାତୀତ ସେହି ଜନ ।
ମୋତେ ଯେ ଏକାନ୍ତ ଭକ୍ତିଭାବରେହିଁ ସେବେ
ତିନଗୁଣ ତାହାକୁହିଁ ନ ବାଧଇ ଲବେ ।
ବ୍ରହ୍ମ ସ୍ୱରୂପକୁ କହିବାର ଯୋଗ୍ୟ ସେହି
ହୁଅଇ ହେବାକୁ ମୁହିଁ ତୋତେ କହିଲଇଁ ।
ବ୍ରହ୍ମମୋକ୍ଷ ଧର୍ମ ଆଦି ସୁଖର ପ୍ରତିମ
ମୁହିଁ ବୋଲି ଜାଣ ଆହେ ଭାରତବରୋତ୍ତମ ।



## ୧୫ (ପୁରୁଷୋତ୍ତମ ଯୋଗ)

ଏଥୁଅନ୍ତେ ଅର୍ଜୁନଙ୍କୁ ଶ୍ରୀକୃଷ୍ଣ ବୁଝିଁଣ
ବୋଇଲେ କଥା ଏ କହେ ମନଦେଇ ଶୁଣ ।
ଏ ସଂସାରେ ବସ୍ତୁ ବୃକ୍ଷ ଅଶ୍ୱତ୍ଥର ମୂଳେ
ବ୍ରହ୍ମା ଶିବଆଦି ତଳ ବେଦମାନେ ଡାଳେ ।
ଏହାକୁ ଯେ ଲୋକଜାଣେ ଆହେ ଅରଜୁନ
ଜାଣଇ ସେ ଜନ ବେଦ ଅର୍ଥର ବିଧାନ ।
ବିଷୟ ରୂପେ ପଲ୍ଲବ ତାହାର ଅଟଇ
ତଳରେ ଉପରେ ଗୁଣ ଜଡ଼ ରହିଛଇଁ ।
ସବୁଆଡେ ମୂଳଆଦି ତାର ବ୍ୟାପିଅଛି
କର୍ମ ଅନୁବନ୍ଧନରେ ଜାତ ସେ ହୋଇଛି ।
ସେହି ଭବ ବୃକ୍ଷରୂପି ମଧ୍ୟ ଅନ୍ତ ଜାତ
ନ ଜାଣନ୍ତି ଲୋକମାନେ ଆହେ ପାଣ୍ଡୁସୁତ ।
ଅସଙ୍ଗ ଅସ୍ତ୍ରରେ ସେହି ବୃକ୍ଷକୁ କାଟିବ ।
ତା ମୂଳୀଭୂତ ପଦକୁ ବସିଣ ଖୋଜିବ ।
ଯେଉଁ ପଦ ପାଇଲେ ନ ନବର୍ତ୍ତଇ କେହି
ଏହି ସଂସାରର କର୍ତ୍ତା ଅଟେ ଜାଣ ସେହି ।
ଧନ ମୋହ କାମ ସଙ୍ଗ ଦୋଷ ଆଦି ତେଜି
କହନ୍ତି ଆତ୍ମଜ୍ଞାନରେ ଯେଉଁମାନେ ମଜ୍ଜି ।
ସୁଖ ଦୁଃଖ ଏହି ଦୁଇକାର୍ଯ୍ୟ ମୁକ୍ତ ହୋଇ
ଆହେ ପାର୍ଥ ସେ ପଦକୁ ପାଆନ୍ତି ସେହି ।
ସୂର୍ଯ୍ୟ ଚନ୍ଦ୍ର ଅଗ୍ନିରେହେଁ ନ ହୁଏ ପ୍ରକାଶ
ସେହି ମୋର ଧାମ ବୋଲି ଜାଣ ନରଈଶ ।
ମୋ ଧାମକୁ ଯିବା ଲୋକ ଜନ୍ମ ଲଭେ ନାହିଁ
ଏହି କଥା ଦୃଢ଼ଭେଦ ମନେ ଘେନ ତୁହି ।
ମୋର ଅଂଶ ଜୀବ ମନ ସଙ୍ଗେ ଇନ୍ଦ୍ରିୟଙ୍କୁ
ଘେନିଯାଅ ହେ ଅର୍ଜୁନ କହୁଛି ତୁମ୍ଭଙ୍କୁ ।
ଯେତେବେଳେ ଏ ଜୀବନ ଦେହ ଛାଡ଼ିଯାଏ
ଇନ୍ଦ୍ରିୟମାନଙ୍କୁ ସେହି ସଙ୍ଗେ ଘେନିଯାଏ ।
ପୁଷ୍ପର ଗନ୍ଧ ପବନ ଘେନିଗଲା ପରି
ଜୀବ ନଏ ଇନ୍ଦ୍ରିୟଙ୍କୁ ଆହେ ଧନୁର୍ଦ୍ଧାରୀ ।
ଆନ ଦେହେ ସେହି ଜୀବ ଇନ୍ଦ୍ରିୟ ରହଇ
ଆଶ୍ରୟ ନେଇଣ ତହିଁ ବିଷୟ ଭୁଞ୍ଜଇ ।
ଦେହ ଛାଡ଼ି ଆନ ଦେହେ ଯିବା ସମୟରେ
ଯୋଗୀଏ ଦେଖନ୍ତି ସେହି ଜୀବ ଯୋଗବଳେ
ଯତ୍ନହୀନା ଅଜ୍ଞାନୀଏ ଜୀବ ଯିବା କଥା
ଦେଖିବାକୁ ନ ପାଆନ୍ତି ଆହେ ମହାରଥୀ ।
ଦେଖିବାକୁ ଜ୍ଞାନହୀନ ଲୋକ ଯତ୍ନ କଲେ
କଦାଚିତରେ ନ ପାରଇ ଦେଖି ସେହୁ ଭଲେ ।
ସୂର୍ଯ୍ୟ ଚନ୍ଦ୍ର ବହ୍ନିରେ ଯେତେ ତେଜ ଅଛି
ମୋର ତେଜବୋଲି ଜାଣ କୁନ୍ତୀଦେବୀବତ୍ସ
ପୃଥିବୀ ମଧ୍ୟରେ ମୁହିଁ ଅଧିଷ୍ଠାନ କରି
ପ୍ରାଣୀମାନଙ୍କୁ ଧରିଛି ହେ ଗାଣ୍ଡିବଧାରୀ ।
ମୁହିଁ ଔଷଧି ସ୍ୱରୂପେ ଔଷଧ ପ୍ରଭାବ
ବଢ଼ାଇଣ ଥାଏ ଆହେ ଦ୍ରୌପଦୀଧବ ।
ଜଠରାଗ୍ନି ରୂପେ ମୁହିଁ ଚତୁର୍ବିଧ ଅନ୍ନ
ଜୀର୍ଣ୍ଣ କରୁଅଛି ଆହେ ବୀରଙ୍କ ଉତ୍ତମ ।

ସମସ୍ତଙ୍କ ହୃଦୟରେ ମୁହିଁ ରହିଛଇଁ
ମୋହଠାରୁ ଜ୍ଞାନ ସ୍ମୃତି ଉପୁଜ ଅଛଇ ।
ବେଦମାନଙ୍କରେ ଜାଣ ଅଟଇ ମୁଁ ଜ୍ଞେୟ
ମୁହିଁ କହିଅଛି ପାର୍ଥ ବେଦାନ୍ତ ନିର୍ଣ୍ଣୟ ।
ଲୋକ ମଧ୍ୟରେ ମୁଁ କ୍ଷର ଅକ୍ଷର ଦୁଇଟି
ପ୍ରବର୍ତ୍ତିଅଛି ଜାଣ ହେ ପାଣ୍ଡବ କିରୀଟି ।
ସକଳ ବେଦମାନେ ଯେ କୋଲ୍‌ଅଛନ୍ତି କ୍ଷର
ହେ ଅର୍ଜ୍ଜୁନ ପୁରୁଷଟି ଅଟଇ ଅକ୍ଷର ।
ଦେହ ଜୀବୁଁ ଭିନ୍ନ ଅଟେ ଯେଉଁ ପୁରୁଷଟି
ପରଂଆତ୍ମା ତାହାକୁହିଁ ଜାଣ ହେ କିରୀଟି ।
ସେହି ପରମ ଆତ୍ମାଟି ଥାଇ ତିନଲୋକେ
ବିଶ୍ୱକୁ ପାଳୁଅଛନ୍ତି ଅଧିକୁ ଅଧିକେ ।
ଅକ୍ଷର ସର୍ବ ପ୍ରକାରେ ବାଢ଼ି ଯେ ଅଟଇ
ସେହି ରୂପରେ କ୍ଷରକୁ ଜିଣିଅଛି ମୁହିଁ ।
ଏଥିପାଇଁ ଜାଣ ତୁମ୍ଭେ ଲୋକରେ ବେଦରେ
ପୁରୁଷୋତ୍ତମ ବୋଲନ୍ତି ମୋତେ ନିରନ୍ତରେ ।
ଯେ ଲୋକପୁରୁଷୋତ୍ତମ ବୋଲି ମୋତେ ଜାଣେ
ଅନ୍ୟ ସେହି କାହାକୁହିଁ ଭଜେନାହିଁ ମନେ ।
ଏହି ଗୋପନୀୟ ଶାସ୍ତ୍ର ଅର୍ଜ୍ଜୁନ ତୁମ୍ଭଙ୍କୁ
କହିଲଇଁ ସଖାଭାବେ ବୁଝ ହୋ ମନକୁ ।
ଏହିକଥା ଯେ ମାନବ ଅବଗତ ହୋଇ
ଆଉ ଥରେ ଅବନୀରେ ଜନ୍ମ ନ ଲଭଇ ।

---

## ୧୬ (ଦୈବାସୁର ସମ୍ପଦ୍‌ବିଭାଗ ଯୋଗ)

ପୁଣି ଶ୍ରୀକୃଷ୍ଣ ବୋଇଲେ ଶୁଣ ହେ ଅର୍ଜ୍ଜୁନ
ଦୈବୀ ସମ୍ପତ୍ତିରେ ଜନ୍ମ ହୁଏ ଯେଉଁ ଜନ ।
ତାହାର ଯେ ଜ୍ଞାନଯୋଗ ବ୍ୟବସ୍ଥିତ ଦାନ
ସତ୍ତ୍ୱ ଶୁଦ୍ଧ ଶଉଚ ଅଦ୍ରୋହ ଅପୈଶୁନ୍ୟ ।
ଦାନ ଯଜ୍ଞ ସତ୍ୟ ଆଉ ଅହିଂସା ଆର୍ଜବ
ଅକ୍ରୋଧ ଶାନ୍ତ ଦୟା ଯେ ତ୍ୟାଗ ମାର୍ଦ୍ଦବ ।
ତେଜ କ୍ଷମା ଆଲୋଲୁପ ଲଜ୍ଜା ଯେ ଅଭୟ
ଅଚପଳ ଅନଭିମାନତା ଯେ ସ୍ୱାଧ୍ୟାୟ ।
ଏମାନ ଜାତ ହୋଇଣ ଆହେ ଅରଜୁନ
କରୁଥାଆନ୍ତି ମୋହର ନାମକୁ ବିଧାନ ।
ଦମ୍ଭ ଦର୍ପ କ୍ରୋଧ ଆଉ ପୌରୁଷାଭିମାନ
ଅଜ୍ଞାନ ଆସୁରୀ ଜନ୍ମ ଲଭଇ ଯେ ଜାଣ ।

ଦୈବୀ ଚିତ୍ତରେ ମାନବ ନିଶ୍ଚେ ମୋକ୍ଷ ପାଏ
ଆସୁରୀ ସମ୍ପତ୍ତିରେ ଏ ସଂସାରରେ ଥାଏ ।
ଦୈବୀ ସମ୍ପତ୍ତିରେ ତୁମ୍ଭେ ହୋଇଅଛ ଜାତ
ଏଥିପାଇଁ କହୁଅଛି ନୁହ ଶୋକଚିତ୍ତ ।
ଆସୁରୀ ଗୁଣ କହିବୁ ଏବେ ବିସ୍ତାରଣ
ଆହେ ପାର୍ଥ ମନୋଯୋଗ କରି ତାହା ଶୁଣ ।
ଆସୁରୀ ଜନର ଯେ ସେ ଧର୍ମର ପ୍ରବୃତ୍ତି
ଅଧର୍ମରୁ ନିବୃତ୍ତି ଏ ଦୁଇ ନ ଜାଣନ୍ତି ।
ଅସୁର ମାନଙ୍କଠାରେ ଆଚାର ଶଉଚ
କଦାଚିତେ ନାହିଁ ଜାଣ ଆହେ ପଣ୍ଡୁବତ୍ସ ।
ଅସତ୍ୟ ଅପ୍ରତିଷ୍ଠିତ ଅନୀଶ୍ୱର ବୋଲି
ଅସୁରମାନେ ଥାଆନ୍ତି ଜଗତକୁ ଭାଳି ।
ସ୍ତ୍ରୀ ପୁରୁଷ ସଙ୍ଗମରୁ ସବୁ ହୋଏ ଜାତ
ଏହି କଥାଟି ଜାଣନ୍ତି ସମସ୍ତ ଜଗତ ।
ମଦନ ହୋଇଣ ଯେବେ କଥାଏ ନ ଥାନ୍ତା
ପୁଅ ଝିଅ କି ପ୍ରକାରେ ଜନମ ହୁଅନ୍ତା ।
ଏହି ବୁଦ୍ଧିକୁ ଆଶ୍ରୟ କରି ଲୋକମାନେ
ଜଗତେ କ୍ଷୟ ନିମନ୍ତେ ଜନ୍ମନ୍ତି ଆପଣେ ।
କାମ ଦମ୍ଭ ମାନ ମଦ ଆଶ୍ରୟ କରିଣ
ଅଶୁଚି ବ୍ରତ କରନ୍ତି ଆମୋଦ ବହିଣ ।
ସମ୍ପଦ ପାଇବାପାଇଁ କ୍ଷୁଦ୍ର ମନ୍ତ୍ରଣାକୁ
ଆଗ୍ରହେ ସେବା କରନ୍ତି ବହିଣ ମୋହକୁ ।
ମୃତ୍ୟୁକୁ ଲଭିବାଯାଏ କାମ ଉପଭୋଗ
ଭାବନା କରୁଥାଆନ୍ତି ବହିଣ ସରାଗ ।
କାମଭୋଗ ଚରିତାର୍ଥ କରିବାର ପାଇଁ
ଅନ୍ୟାୟେ ଅର୍ଥ ସଞ୍ଚନ୍ତି ଆନନ୍ଦିତ ହୋଇ ।
କାମୀଲୋକମାନେ ଧନପାଇଁ ପ୍ରତିଦିନ
କହୁଥାନ୍ତି ମନୋରଥ ହୋଇବ ସମ୍ପୂର୍ଣ୍ଣ ।
ମୁଁ ଈଶ୍ୱର ଭୋଗୀ ସିଦ୍ଧ ଆଢ଼୍ୟ ସୁଖୀ ବଳୀ
ଅସୁରଜନମ ଲୋକେ ଭାବନ୍ତି ଏଭଳି ।
ମୋ ସମାନ ଜାତି ଧନ ଏ ମହୀ ଭିତରେ
କାହାର ନାହିଁ ବୋଲିଣ ଭାବନ୍ତି ମନରେ ।
ଅଜ୍ଞାନ ଭାବରେ ଅତି ଅସକତ ହୋଇ
ମନ କରୁଥାନ୍ତି ଯାଗ କରିବାର ପାଇଁ ।
ଦେବାପାଇଁ ପ୍ରତିଦିନ କରୁଥାନ୍ତି ମନ
ଦେବାକୁ ସତ୍ତ ନ ହେଲେ ଆହେ ଅରଜୁନ ।

ଏରୂପେ ଅସୁର ଲୋକମାନେ ଭାବନାରେ
ଦିନ କଟାଇ ରହନ୍ତି ସେହୁ ଯାତନାରେ ।
ଆତ୍ମା ସମ୍ଭାବିତ ଯେ ଅନମ୍ର ଧନୀ ମାନୀ
ଲୋକଙ୍କର ଅଭିମାନ ହୃଦୟରେ ଘେନ ।
ଶିକ୍ଷିତ ସୋମଯାଜକ କୋଲାଇବ ବୋଲି
ଅବିଧି କପଟ ଯାଗ କରେ ମନେ ଭାଳ ।
ଅହଙ୍କାର ବଳ ଆଉ ଦର୍ପ କାମକ୍ରୋଧ
ଆଶାକରି ଅହର୍ନିଶି ଲୋକ କରେ ସଧ ।
ଆପଣାର ଦେହ ମୋତେ ବିଦ୍ୱେଷ କରିଣ
ଯାଗ କରନ୍ତି ବିସ୍ତର ଆହେ ଅରଜୁନ ।
ଏରୂପ ଅଧମ ନରମାନଙ୍କୁ ଅସୁର
ଯୋନିରେ ଜନ୍ମ କରାଏ ମୁଁ ଥରକୁ ଥର ।
ଅସୁର ଯୋନି ସକାଶୁ ସେହି ମୂଢ଼ ହୋଇ
ନ ପାଇ ମୋତେ ନରକେ ଯାଆନ୍ତି ସେ ଧାଇଁ
ଯେତେଥର ଜନ୍ମ ହୋନ୍ତି ହୋଇକରି କୀଟ
କାଷ୍ଠ ପାଷାଣ ଗୈବାନ୍ତ କରି ରଟମଟ ।
କାମ କ୍ରୋଧଲୋଭ ଆଦି ନରକର ଦ୍ୱାର
ଜାଣିଥିବା ଲୋକମାନେ କରନ୍ତି ଅନ୍ତର ।
କାମ କ୍ରୋଧ ଲୋଭାଦିରୁ ମୁକ୍ତ ସେ ହୁଅଇ
ମୋତେ ଭଜିଣ ମୁକତି ପୁଣି ସେ ଲଭଇ ।
ସେ ଲୋକ ବେଦବିହିତ କର୍ମମାନ ଛାଡ଼ି
ସ୍ୱେଚ୍ଛା ପ୍ରବୃତ୍ତି ହେବାରୁ ନରକରେ ପଡ଼ି ।
କାର୍ଯ୍ୟାକାର୍ଯ୍ୟ ସକାଶରେ ଅଟେ ଧର୍ମଶାସ୍ତ୍ର
ଏହା ପ୍ରମାଣ ବୋଲିଣ ଜାଣ କୁନ୍ତୀସୁତ ।
ଏଥିପାଇଁ ଏହା ଅଟେ ଶାସ୍ତ୍ର ବିଧି କର୍ମ
ଏହା ବିସ୍ତର କରିଣ ପାଳ ହେ ସ୍ୱଧର୍ମ ।

## ୧୭ (ଶ୍ରଦ୍ଧାତ୍ରୟ ବିଭାଗ ଯୋଗ)

ପୁଣି ଶ୍ରୀ କୃଷ୍ଣଙ୍କୁ ଚାହିଁ ବୋଲଇ ଅର୍ଜୁନ
କଥାଏ କହନ୍ତୁ ମୋତେ ହେ ମଧୁସୂଦନ ।
ଶାସ୍ତ୍ରର ବିଧି ଛାଡ଼ିଣ ଯେ ପୂଜା କରଇ
ସତ୍ତ୍ୱ କିବା ରଜ ତମ ଗୁଣ ସେ ଅଟଇ ।
ଶ୍ରୀକୃଷ୍ଣ ବୋଇଲେ ଶ୍ରଦ୍ଧା ପ୍ରାଣୀମାନଙ୍କର
ସତ୍ତ୍ୱ ରଜ ତମ ଅଟେ ତ୍ରିବିଧ ପ୍ରକାର ।
ସମସ୍ତଙ୍କର ସତ୍ତ୍ୱକୁ ଅନୁରୂପ ହୋଇ
ଶ୍ରଦ୍ଧା ହେଉଅଛି ଆହେ ପାର୍ଥ କହୁଥାଇ ।
ପୁରୁଷ ଅଟଇ ପାର୍ଥ ଶ୍ରଦ୍ଧାମାନ ଜାଣ
ତାଙ୍କୁ ଶରଧା କରିବା ଅଟେ ଆଚରଣ ।
ସାତ୍ତ୍ୱିକ ଶ୍ରଦ୍ଧାରେ ଯେହୁ ନିଯୁକ୍ତ ହୁଅଇ
ଦେବତା ପୂଜାରେ ତାଙ୍କୁ ଚିତ୍ତ ଯେ ବଳଇ ।
ରଜୋଗୁଣେ ଶ୍ରଦ୍ଧା ଯାର ସେହୁ ରକ୍ଷ ଯକ୍ଷ
ପୂଜା କରଇଟି ସେହୁ ବହି ମନେ ସୁଖ ।
ତାମସ ଶ୍ରଦ୍ଧାରେ ଯେହୁ ଯୁକ୍ତ ହୋଇଥାଇ
ଭୂତ ପ୍ରେତମାନଙ୍କୁ ସେ ଶ୍ରଦ୍ଧାରେ ପୂଜଇ ।
ଦମ୍ଭ ଅହଙ୍କାରରେ ସେ ନିଯୁକ୍ତ ହୋଇଣ
ଶାସ୍ତ୍ରେ ଥିବା ତପସ୍ୟାକୁ କଟେ ଆଚରଣ ।
କାମରାଗର ବଳରେ ହୋଇଣ ସେ ରତ
ନ ଖାଇଣ କରେ କୃଶି ପଞ୍ଚମହାଭୂତ ।
ମୁହିଁ ତାହା ଦେଖିକରି ମନେ ହୋଇ ଦୁଃଖୀ
ଅସୁର ବୋଲିଣ ପାର୍ଥ ତାହାକୁଟି ଲେଖି ।
ଯାଗ ତପସ୍ୟା ଆହାର ଦାନ ତ୍ରିପ୍ରକାର
ଯେଉଁରୂପେ ହୁଏ ତାହା ଶୁଣ ବୀରବର ।
ଆୟୁ ସତ୍ତ୍ୱ ବଳାରୋଗ୍ୟ ପୁଣି ସୁଖ୍ୟ ପ୍ରୀତି
ଏହିମାନଙ୍କୁ ସାତ୍ତ୍ୱିକ ଆହାରେ ବଢ଼ାନ୍ତି ।
ସେହି ଆହାର ସୁସ୍ୱାଦୁ ସିଦ୍ଧ ମନୋହର
ହୋଇ ଯେ ଥିଲେ ସାତ୍ତ୍ୱିକ ନାମ ହୁଏ ତାର
ଅତି ପିତା ଉଷ୍ଣ ଆଉ ରାଗ ଅମ୍ଳ ରୁକ୍ଷ
ଅତି ଲବଣ ରାଜସ ନାମରେ ସେ ଭକ୍ଷ୍ୟ ।
ଯାତଯାମ ଗତରସ ପୁଣି ପର୍ଯ୍ୟୁଷିତ
ଉଚ୍ଛିଷ୍ଟାଦି ଭୋଜନରେ ତାମସର ପ୍ରୀତ ।
ବିଧିମାନ ଫଳାକାଂକ୍ଷା ଯେହୁ ନ କରଇ
ସେହି ଯାଗର ନାମଟି ସାତ୍ତ୍ୱିକ ଅଟଇ ।
ଫଳ ଉଦ୍ଦେଶ୍ୟ କ୍ଷିତରେ ହୁଏ ଯେଉଁ ଯାଗ
ତା ନାମ ଅଟେ ରାଜସ ଶୁଣ ମହାଭାଗ ।
ବିଧିମନ୍ତ୍ର ଦକ୍ଷିଣା ଯେ ଅନ୍ନହୀନ ମୁଖ
ତାମସ ନାମେ କଥିତ ଜାଣ ବୀରଶିଖ ।
ଦେବ ଦ୍ୱିଜ ଗୁରୁ ପୂଜ୍ୟ ଆଉ ଆରଜବ
ଶୌଚ ବ୍ରହ୍ମଚର୍ଯ୍ୟ ପୁଣି ହିଂସାର ଅଭାବ ।
ଯାହାରଟି ହୁଏ ଜାଣ ତାହାର ଶରୀର
ତପ ବୋଲି ବୋଲାଏ ହେ ଜାଣ ବୀରବର ।
ଅନୁଦ୍ୱେଗ ଆଉ ସତ୍ୟ ପ୍ରିୟହିତ କହି
ବେଦାଭ୍ୟାସର ବାଙ୍ମୟ ତପେ ସଦା ରହି ।

ଚିତ୍ତ ପରସାଦ ସମତ୍ୱକ ଶୁଦ୍ଧ ମୌନ
ଆତ୍ମା ନିଗ୍ରହ ମାନସ ତପ ବୋଲି ଜାଣ ।
ଫଳ ଆକାଂକ୍ଷା ନ କରି କାୟିକ ବାଚକ
ମନେ ମନେ ତପ କଲେ ସାତ୍ତ୍ୱିକ ସେ ଲୋକ
ସତ୍କାର ମାନ ପୂଜାକୁ ଯେହୁ ମନେକରି
ତପ କଲେ ରାଜସ ସେ ତାପ ନାମ ତାର ।
ମୂର୍ଖପଣରେ ଦେହକୁ ପୀଡ଼ା ଦେଇ ପର
ଉତ୍କର୍ଷ ସାଧନେ ଯେହୁ କରେ ତପ ଘୋର ।
ତାହାକୁ ସିନା ତାମସ ତପ ବୋଲି କହି
ହେ ଅର୍ଜୁନ ଜାଣିଥାଅ ସତ୍ୟ କହୁଥାଇଁ ।
ଅନୁପକାରୀ ଲୋକକୁ ଦେବାର ଯେ ଦାନ
ସାତ୍ତ୍ୱିକ ଦାନ ବୋଲିଣ ତାହାକୁଟି ଘେନ ।
ଦେଶକାଳ ପାତ୍ର ଜାଣି ସୁପାତ୍ରେ ଯେ ଦିଏ
ସେହି ମଧ୍ୟ ଅର୍ଜୁନ ହେ ସାତ୍ତ୍ୱିକ ବୋଲାଏ ।
ଉପକାର ଫଳୋଦ୍ଦେଶ୍ୟ ଅଟେ ଯେଉଁ ଦାନ
ରାଜସ ବୋଲି ତାହାକୁ କହନ୍ତି ଅର୍ଜୁନ ।
ଅକାଳେ ଆଦେଶ ଅପାତ୍ରରେ ଯେଉଁ ଦାନ
ତା ନାମ ତାମସ ଦାନ ଜାଣ ହେ ଅର୍ଜୁନ ।
ପ୍ରଣବ ତତ୍‌ସତ୍ ଏହି ତିନିବ୍ରହ୍ମ ନାମ
ଏହି ତିନିଙ୍କୁ ଘେନିଣ ହୁଏ ସତ୍କର୍ମ ।
ଅଦ୍ୟାପି ପ୍ରଣବ ବୋଲିକରି ବ୍ରହ୍ମବାଦୀ
ଯାଗ ଆଦି ପ୍ରାରମ୍ଭରେଟି ହୁଅଇ ସମ୍ବାଦ ।
ସେ ଫଳକୁ ମୋକ୍ଷାକାଂକ୍ଷୀମାନେ ଅନୁଦେଖି
ତତ୍‌ଶବ୍ଦ ବୋଲି ମୁଖରେ ଉଚ୍ଚାରନ୍ତି ବସି ।
ସ୍ୱଭାବେ ସାଧୁଭାବରେ ପ୍ରଶସ୍ତ କର୍ମରେ
ସତ ଶବ୍ଦକୁ କହନ୍ତି ପଣ୍ଡିତେ ମୁଖରେ ।
ଯଜ୍ଞ ତପ ଦାନରେ ହେ ସ୍ଥିତ ହୋଇବାକୁ
ସତ ବୋଲିଣ ଅର୍ଜୁନ କହନ୍ତିଟି ତାକୁ ।
ଭକତ କର୍ମେ ପ୍ରବୃତ୍ତ ହୋଇବା କଥାଟି
ସତ ଶବ୍ଦକୁ ପ୍ରୟୋଗ କରନ୍ତି କର୍ମଟି ।
ଏଥି ନିମନ୍ତେ ଜାଣ ହେ ପ୍ରଣବ ତତ୍‌ସତ
କର୍ମଶୁଦ୍ଧ ହେବାପାଇଁ ବୋଲିବ ହେ ପାର୍ଥ ।
ଅଶ୍ରଦ୍ଧାରେ ହୋମ ଦାନ ତପ ଆଦି ଯେତେ
କରିଲେ ଅସତ ତାହା ହୁଏ ମହାମତେ ।

———

## ୧୮ (ମୋକ୍ଷ ଯୋଗ)

ଏଥୁ ଅନ୍ତରେ ଅର୍ଜୁନ କହିଲେ କୃଷ୍ଣଙ୍କୁ
ସନ୍ନ୍ୟାସର ତ୍ୟାଗତତ୍ତ୍ୱ କହ ହେ ଆମ୍ଭଙ୍କୁ ।
ଶ୍ରୀକୃଷ୍ଣ ବୋଇଲେ ଆହେ କାମ୍ୟ କର୍ମନ୍ୟାସ
କରିଲେ ପଣ୍ଡିତେ କହିଛନ୍ତି ସେ ସନ୍ନ୍ୟାସ ।
ସବୁ କର୍ମମାନଙ୍କରେ ଫଳତ୍ୟାଗ କଲେ
ତ୍ୟାଗୀ ବୋଲିଣ ବୋଲନ୍ତି ଜାଣିଥାଅ ଭଲେ ।
ମନୀଷୀଏ ମୁକ୍ତକଣ୍ଠେ କହି ଯାଇଛନ୍ତି
ଦୋଷମଣି କରମକୁ ଛାଡ଼ିବ ଝଟତି ।
ଯଜ୍ଞ ଦାନ ତପ ଆଦି ନୁହେଁ ପରିତ୍ୟଜ୍ୟ
ଏହି କଥା କହିଛନ୍ତି ପଣ୍ଡିତ ସମାଜ ।
ତ୍ୟାଗର ନିଶ୍ଚୟ କଥା କହିବଇଁ ମୁହିଁ
ଶୁଣ ମୋହଠାରୁ ପାର୍ଥ ତୁମ୍ଭେ ମନଦେଇ ।
ସତ୍ତ୍ୱ ରଜ ତମ ଏହି ଗୁଣ ତ୍ରିପ୍ରକାର
ତ୍ୟାଗ ହୁଅଇଟି ଜାଣ ଆହେ ମହାବୀର ।
ଯଜ୍ଞ ତପ ଦାନ ନିସ୍ତାରକ ହୋଇ ନିତି
ପବନକୁ ସୁଧୀଗଣ ଇଚ୍ଛା କରୁଥାନ୍ତି ।
ଫଳ ଆସକ୍ତି ଦୁହିଙ୍କୁ ମନୁ ଛାଡ଼ିଦେଇ
କର୍ମ କରୁଥିବା ମୋର ସତ୍ୟ ଅଟେ ଏହି ।
ମୋହେ ପଡ଼ି ନିତ୍ୟକର୍ମ ଛାଡ଼େ ଯେଉଁ ନର
ତାମସ ବୋଲାଏ ସେହି ପାର୍ଥ ମନେକର ।
ଏହା ଘେନି ନିତ୍ୟକର୍ମ ମାନ ତ୍ୟାଗକଲେ
ମହାବ୍ୟଥା ଦେଉଥିବ ହୃଦୟରେ ଭଲେ ।
କର୍ମକୁ ଦୁଃଖ ବୋଲିଣ କାୟକ୍ଳେଶ ଭୟେ
ଛାଡ଼ି ଦିଅଇ ରାଜନ ତ୍ୟାଗ ସେ ବୋଲାଏ ।
ଆସକ୍ତି ଫଳକୁ ଛାଡ଼ି ଯେହୁ କରେ କର୍ମ
ତାହାର ହୁଅଇ ପାର୍ଥ ସାତ୍ତ୍ୱିକରେ ଧର୍ମ ।
ସତ୍ତ୍ୱବନ୍ତ ଜନମାନେ କର୍ମକୁ ଦୁଃଖରେ
କରୁଥାନ୍ତି ସବୁ ଦୁଃଖ ସହିଣ ମନରେ ।
ସୁଖଜନକ କର୍ମରେ ନୋହି ହୃଷ୍ଟଚିତ୍ତ
ଯେହୁ ତାକୁ ତ୍ୟାଗୀ ବୋଲି ଜାଣ ପଣ୍ଡୁସୁତ ।
ଦେହୀ ହୋଇଣ କର୍ମକୁ ଛାଡ଼ି ନ ପାରଇ
କର୍ମର ଫଳ ଯେ ତ୍ୟାଗେ ତାକୁ ତ୍ୟାଗୀ କହି
କର୍ମର ଫଳ ସକଳ ଯେମାନେ ଛାଡ଼ନ୍ତି
ଇଷ୍ଟ ଅନିଷ୍ଟ ମିଶ୍ରିତ ଫଳ ପ୍ରାପ୍ତ ହୁନ୍ତି ।

ଫଳ ତ୍ୟାଗ କରିଥିବା ସନ୍ନ୍ୟାସୀ ଜନର
ଫଳ କିଛି ନ ହୁଅଇ ମନେ କର ସାର ।
ବେଦାନ୍ତ ଶାସ୍ତ୍ରରେ କର୍ମ ସିଦ୍ଧି ହେବାପାଇଁ
ପାଞ୍ଚଟି କାରଣ କହିଛନ୍ତି କହିବଇଁ ।
ଅଧିଷ୍ଠାନ କରତା ଯେ ଦଇବ କାରଣ
ଚେଷ୍ଟା ମିଶି ପାଞ୍ଚଗୋଟି କାରଣ ଏ ଜାଣ ।
କାୟ ବାକ୍ୟ ମାନସରେ ଧର୍ମାଧର୍ମ କର୍ମ
ଏହି ପାଞ୍ଚହେତୁ ତାର ଜାଣ ସାଧୋତମ ।
ମୁହିଁ କର୍ମ କରୁଅଛି ଏହା ଯେ ବୋଲଇ
ତାହାଠାରୁ ଜ୍ଞାନହୀନ ଲୋକ ଆଉ ନାହିଁ ।
ଆତ୍ମ ଅଭିମାନ ପୁଣି ଇଷ୍ଟ ନଷ୍ଟ କଥା
କର୍ମ ଆସକ୍ତିକୁ ଲୋକ ମଣୁଥାଏ ବ୍ୟଥା
ସେ ଲୋକ ଯଦ୍ୟପି ଅନ୍ୟ ଲୋକ କରେ ନାଶ
ନ ଲାଗଇ ତାକୁ ଦୋଷ ଜାଣ ହେ ସୁରେଶ
ଜ୍ଞାନ ଜ୍ଞେୟ ଜ୍ଞାତା ଏହି ତିନ କରମର
ପ୍ରବର୍ତ୍ତକ ଅଟନ୍ତି ଏ ମନେକର ସାର ।
କର୍ତ୍ତା କାରଣ ଯେ କର୍ମ ତିନହେଁ ସଂଗ୍ରହ
କର୍ମରଟି ବୋଲଏ ହେ ପାର୍ଥ ଛାଡ଼ ମୋହ ।
ଜ୍ଞାନ କରମ କରତା ସାତ୍ତ୍ୱିକ ରାଜସ
ତାମସ ହୁଅନ୍ତି ଆହେ ଶୁଣ ସୁରଈଶ ।
ଯେହୁ ଜ୍ଞାନର ସବୁଙ୍କୁ ସମାନ ଦେଖଇ
ସେହିଜ୍ଞାନ ସିନା ଜାଣ ସାତ୍ତ୍ୱିକ ଅଟଇ ।
ଯେଉଁ ଜ୍ଞାନେ ହୁଏ ନାନା ଆତ୍ମାର ଭାବନା
ରାଜସ ସେହୁ ବୋଲଏ ସେହୁ ମହାମନା ।
ଗୋଟିଏ କାର୍ଯ୍ୟରେ ଯାର ହୁଅଇ ଆଶକ୍ତି
ତାମସ ଜ୍ଞାନୀ ବୋଲିଣ ତାହାକୁ କହନ୍ତି ।
ଫଳ ଇଚ୍ଛା ନ କରିଣ କରେ ଯେହୁ କର୍ମ
ସାତ୍ତ୍ୱିକ ବୋଲି ତାହାକୁ କହନ୍ତି ଅର୍ଜ୍ଜୁନ ।
ଫଳର ଆକାଂକ୍ଷା କରି ଅହଂକାରୀ ହୋଇ
ଯେଉଁ କର୍ମକରେ ତାହା ରାଜସ ବୋଲଇ ।
ଭାବୀ ଶୁଭାଶୁଭ ପୁଣି ଧନ କ୍ଷୟ ହିଂସା
ସାମର୍ଥ୍ୟାଦ୍ଧ ନ ବିଚାରି କର୍ମେ କରେ ଆଶା ।
ମୋହବଶତଃ ଯେ କର୍ମ ଆରମ୍ଭ କରଇ ।
ତାହାକୁ ତାମସ କର୍ମ ବୋଲି ଜାଣ କହି
କରମର ଆଶକ୍ତିରେ ହିଂସା ଛାଡ଼ିକରି
ଧୃତି ଉତ୍ସାହକୁ ମନେ ସଦା ଥାଏ ଧରି ।

ସିଦ୍ଧି ଅସିଦ୍ଧିରେ ଯେହୁ ହୁଏ ନିର୍ବିକାର
ସାତ୍ତ୍ୱିକ ବୋଲି ତାହାକୁ ମନରେ ବିଚାର ।
କର୍ମଫଳକୁ ଆକାଂକ୍ଷା କରୁଥିବ କର୍ତ୍ତା
ରାଜସ ବୋଲଏ ଆହେ ଜାଣ ଧନୁର୍ବେତ୍ତା ।
ଶଠ ନୈଷ୍କୃତିକ ପୁଣି ଅଳସ ପ୍ରାକୃତ
ବିଷାଦୀ ଦୀର୍ଘସୂତ୍ରୀ ଯେ ସ୍ତବଧ ଅଯୁକ୍ତ ।
ସମସ୍ତେ ଏହି କଥାକୁ ତାମସ ବୋଲନ୍ତି
ଦୃଢ଼େ ସ୍ୱା ଜାଣ ଭରତବର୍ଯ୍ୟଙ୍କର ନାତି ।
ବୁଦ୍ଧି ଧୃତିର ଅଟଇ ତିନରୂପ ଭେଦ
ତାହା ଶୁଣିଲେ ତୁମ୍ଭର ଜନମିବ ମୋଦ ।
କାର୍ଯ୍ୟାକାର୍ଯ୍ୟ ଆଉ ଭୟ ଅଭୟର ବିଧି
ବୃଦ୍ଧି ମୋକ୍ଷ ପ୍ରବୃତ୍ତି ଯେ ନିବୃତ୍ତିକା ବୁଦ୍ଧି ।
ଜାଣିଥାଅ ସେହି ବୁଦ୍ଧି ବୋଲଏ ସାତ୍ତ୍ୱିକ
ମୋ କହିବା କଥା ଜାଣ କାରଣ ବିବେକ ।
ଧର୍ମାଧର୍ମ ପୁଣି କାର୍ଯ୍ୟ ଆବର ଅକାର୍ଯ୍ୟ
ରାଜସ ତାକୁ କହନ୍ତି ଜାଣ ବୀରରାଜ ।
ଅଧର୍ମକୁ ଧର୍ମ ବୋଲି ଯେ ମନରେ କରେ
ତାହାର ବୁଦ୍ଧି ଗଣନା ହୁଏ ତାମସରେ ।
ମନ ପରାଣ ଇନ୍ଦ୍ରିୟ କ୍ରିୟା ଯେଉଁ ଧୃତି
ଧନଞ୍ଜୟ ସାତ୍ତ୍ୱିକ ଯେ ତାହାକୁ ବୋଲନ୍ତି ।
ଧର୍ମ ଅର୍ଥ କାମାଦର ଫଳାକାଂକ୍ଷୀ ହୋଇ
ଯେଉଁ ଧୃତି ଧରଇ ସେ ରାଜସୀ ଅଟଇ ।
ସ୍ୱପ୍ନ ଭୟ ଦୁଃଖ ଶୋକ ଯେବେ ଏହି ଧୃତି
ନ ଛାଡ଼ଇ ତେବେ ତାକୁ ତାମସୀ କହନ୍ତି ।
ଏବେ ତିନ ପ୍ରକାରର ସୁଖ ଆହେ ବାବୁ
କହିବୁ ଏକ ଚିତ୍ତରେ ଶୁଣ ତାହା ସବୁ ।
ଯେଉଁ ସୁଖ ଅଭ୍ୟାସରୁ ଆସକ୍ତି ଜନ୍ମଇ
ଅଳପ କାଳରେ ଦୁଃଖ ଅନ୍ତର ହୁଅଇ ।
ସେହି ସୁଖକୁ ସାତ୍ତ୍ୱିକ ବୁଝ ଧନୁର୍ଦ୍ଧାରୀ
ଆଗେ ବିଷ ପଛେ ହୁଏ ଅମୃତର ପରି ।
ଶାସ୍ତ୍ରକୁ ଲଙ୍ଘି ସ୍ତ୍ରୀ ଅଙ୍ଗେ ଯେହୁ ପ୍ରବର୍ତ୍ତଇ
ଆଗ ସୁଖ ଲଭି ପଛେ ଦୁଃଖକୁ ଭୋଗଇ ।
ତାହାର ସୁଖ ରାକ୍ଷସ ଅଟଇ ଅର୍ଜ୍ଜୁନ
ଭାବନାରେ କହିଛନ୍ତି ଏହା ତପୋଧନ ।
ନିଦ୍ରାଳସ୍ୟ ପ୍ରମାଦରୁ ଯେ ସୁଖ ଜନ୍ମଇ
ଆଦ୍ୟ ପ୍ରାନ୍ତ ଉଭୟରେ ମୋହକୁ ବଢ଼ାଇ ।

ତାମସ ବୋଲିଣ ତାକୁ ବୋଲନ୍ତି ଜଗତେ
ମୋର କହିବା କଥାରୁ ବୁଝ ମହାମତେ ।
ନିଷେଧ ଗୁଣ ବର୍ଜ୍ଜିଣ କଉଣସି ପ୍ରାଣୀ
ତିନିଲୋକରେ ନାହାନ୍ତି ଜାଣ ବୀରମଣି ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ସୃଷ୍ଟିଜାତି
କର୍ମକୁ ଭାଗ କରିଣ ଧାତା କରଛନ୍ତି ।
ସମ ଦମ ତପ ଶୌଚ ପୁଣି କ୍ଷମା ଦାନ
ଆସ୍ତିକ ଯେ ଅରଜବ ସହିତ ବିଜ୍ଞାନ ।
ବ୍ରାହ୍ମଣର ସ୍ୱାଭାବିକ ଏହି ଗୁଣ ଅଟେ
ଏହା କଲେ ଜାଣ ସେ ନ ପଡ଼ନ୍ତି ସଙ୍କଟେ ।
ଶୌର୍ଯ୍ୟ ତେଜ ଦକ୍ଷ ଯୁଦ୍ଧ କର୍ମରୁ ନିବୃତ୍ତ
ନ ହୋଇ ଈଶ୍ୱର ଭାବ ଦାନରେ ପ୍ରବୃତ୍ତ ।
ହୁଏ ତାହାକୁ କ୍ଷତ୍ରିୟ ବୋଲି ପାର୍ଥ କହି
ସ୍ୱାଭାବିକ ତାହାଙ୍କର ଗୁଣ ଏ ଅଟଇ ।
କୃଷି ଗୋରକ୍ଷା ବାଣିଜ୍ୟ ବୈଶ୍ୟର ଯେ କର୍ମ
ତାଙ୍କ ସ୍ୱାଭାବିକ ଗୁଣ ଜାଣ ବୀରୋତ୍ତମ ।
ତିନି ବର୍ଣ୍ଣରେ ସେବା ଯେ ଶୂଦ୍ରର ସ୍ୱଭାବ
କର୍ମ ବୋଲିଣ ଜାଣ ହେ ଧାନୁଷ୍କ ପାଣ୍ଡବ ।
ଆପଣା ଆପଣା କର୍ମେ ରତ ଯେଉଁ ଲୋକ
ଜାଣିଥାଅ ସେହି ଲୋକ ଜ୍ଞାନୀ ସୁବିବେକ ।
ସେ ଜ୍ଞାନରେ ରତ ହେଲେ ଯେଉଁ କର୍ମସିଦ୍ଧି
ଲଭନ୍ତି ଜ୍ଞାନୀଏ ତାହା ଶୁଣ ଦେଇ ବୁଦ୍ଧି ।
ଯେହୁ ସମସ୍ତ ପ୍ରାଣୀଙ୍କୁ ସୃଷ୍ଟି କରିଛନ୍ତି
ସର୍ବବ୍ୟାପି ହୋଇକରି ସର୍ବେ କହିଥାନ୍ତି ।
ଯେଉଁ ଲୋକ ତାଙ୍କୁ ନିଜ କର୍ମରେ ପୂଜଇ
ଅଲଭ୍ୟ ମହାସିଦ୍ଧିକୁ ସେ ଲୋକ ଲଭଇ ।
ପରର ଧର୍ମ ଅପେକ୍ଷା ସ୍ୱଧର୍ମ ଅଧିକ
ଶ୍ରେଷ୍ଠ ବୋଲି କହିଥାନ୍ତି ଆହେ ବୀରଶିଖ ।
ଆପଣା ସ୍ୱଭାବ କର୍ମ ଯେ ଜନ କରଇ
କଳୁଷ ତାହା ପାଖରେ ରହି ନ ପାରଇ ।
ସ୍ୱାଭାବିକ କର୍ମେ ଯେବେ ହୋଇବଟି ଦୋଷ
କେବେ ତାକୁ ନ ଛାଡ଼ିବ ଆହେ ବୀରଈଶ ।
ଅସକ୍ତ ନ ହୋଇଣ ଫଳ ଯେ ଛାଡ଼ଇ
ସିଦ୍ଧି ବୋଲି ଅରଜୁନ ତାହାକୁହିଁ କହି ।
ନିଷ୍କାମ ସିଦ୍ଧି ପାଇଣ ଯେରୂପେ ବ୍ରହ୍ମକୁ
ପାଏ ସଂକ୍ଷେପରେ ଏବେ କହିବା ତୁମ୍ଭଙ୍କୁ ।

ଧ୍ୟାନଯୋଗ ପରାୟଣ ଶୁଦ୍ଧ ବୁଦ୍ଧିଯୁକ୍ତ
ଶୁଦ୍ଧ ସ୍ଥାନରେ ଥାଇଣ ବୈରାଗୀ ଆଶ୍ରିତ ।
ଶବଦ ଆଦି ବିଷୟ ରାଗ ଦ୍ୱେଷ ତ୍ୟାଗୀ
ଅଳ୍ପଭୋଗୀ କାମ କ୍ରୋଧେ ଯେହୁ ବଇରାଗୀ
ସେ ଜନ ବ୍ରହ୍ମକୁ ସିନା ଜାଣିଟି ପାରଇ
ଏ କଥାରେ ସନ୍ଦେହ ଯେ କିଛିମାତ୍ର ନାହିଁ ।
ବ୍ରହ୍ମଙ୍କୁ ଯେ ଚିହ୍ନେ ତାର ନାହିଁ ସୁଖ ଦୁଃଖ
ମୋହର ଭକ୍ତିରେ ଯେବେ ନୁହେ ସେ ବିମୁଖ
ଭକତିରେ ମୋତେ ଯେବେ ଚିହ୍ନି ସେ ପାରଇ
ମୋତେ ଲଭିବାକୁ ତାର କଷ୍ଟ ନ ହୁଅଇ ।
ସବୁକର୍ମ କରି ମୋର ପାଦେ ଆଶ୍ରେ କଲେ
ମୁକତି ପଦକୁ ପାଏ ଜାଣ ତୁମ୍ଭେ ଭଲେ ।
ସବୁକର୍ମ ମୋରଠାରେ ସମର୍ପି ଅର୍ଜୁନ
ମୋରଠାରେ ଚିତ୍ତଦେଇ କାଟ ତୁମ୍ଭେ ଦିନ
ମୋର ନିକଟରେ ଯେବେ ହୋଇଥିବ ଚିତ୍ତ
ମୋ ପ୍ରସାଦ ଲଭିକରି ନ ହୋଇବ ଖିତ ।
ଅହଙ୍କାରେ ଯେବେ ମୋର କଥା ନ ଶୁଣିବ
ହେ ଅର୍ଜୁନ ନିକଟରେ ସର୍ବନାଶ ଯିବ ।
ଅହଙ୍କାର ଆଶ୍ରେକରି ଯେବେ ନ ଯୁଝିବ
ମିଥ୍ୟାବାଦୀଙ୍କ ମଧ୍ୟରେ ଗଣମାନ୍ୟ ହେବ ।
ପ୍ରକୃତି ବଳରେ ତୁମ୍ଭେ ହୋଇଣ ଆବଦ୍ଧ
ଜାଣିଛି ଧନୁ ଧରିଣ କରିବଟି ଯୁଦ୍ଧ ।
ଆତ୍ମର କରମେ ତୁମ୍ଭେ ହୋଇଛ ଆବଦ୍ଧ
ନ ଯୁଝିବ କେଉଁରୂପେ ବୋଲ ଆହେ ଯୋଧ
ସମସ୍ତଙ୍କର ହୃଦରେ ଅଛନ୍ତି ଈଶ୍ୱର
ଭ୍ରମାଇ ଅନନ୍ତ ଯନ୍ତ୍ରାରୂଢ଼ରୂପେ କରି ।
ସବୁ ଛାଡ଼ି ଈଶଠାରେ ପଶ ହୋ ଶରଣ
ନିଃସନ୍ଦେହେ ପ୍ରାପ୍ତି ହେବ ତୁମ୍ଭେ ଉଚ୍ଚସ୍ଥାନ ।
ତୁମ୍ଭଙ୍କୁ ତ ସବୁକଥା କହିଲୁ ବୁଝାଇ
ଯାହା ଇଚ୍ଛା ହେଉଅଛି କର ତାହା ଯାଇ ।
ସବୁଠାରୁ ଗୋପନୀୟ ଅଟେ ଯେଉଁ କଥା
ତାହା କହିବା ଶୁଣ ହେ ପାର୍ଥ ମହାରଥୀ ।
ସବୁବେଳେ ତୁମ୍ଭେ ଯେଣୁ ଅଟ ମୋର ପ୍ରିୟ
ତେଣୁ କହୁଅଛୁ ମୁହିଁ ହୋଇଣ ସଦୟ ।
ମୋରଠାରେ ମନ ଦିଅ ମୋତେ ପୂଜା କର
ମୋର ଭକ୍ତ ହୋଇ ମୋତେ କର ନମସ୍କାର ।

ଏମନ୍ତ ହୋଇଲେ ମୋତେ ପାଇବ ହେ ପାର୍ଥ
ନ ହୋଇବ ଲୋଡ଼ା ଆଉ ବେଦଶାସ୍ତ୍ର ଅର୍ଥ ।
ସବୁଧର୍ମ ତେଜି ପଶ ମୋ ପାଦେ ଶରଣ
ସବୁପାପୁଁ ତାରିବି ମୁଁ ଆହେ ଅରଜୁନ ।
ବୃଥା ଶୋକ କରିବାର ଉଚିତ ନୁହଇ
ମୋ ଆଗରେ ବଳି ଆଉ କିଛି କହ ନାହିଁ ।
ନିଜ ଧର୍ମ ବିବର୍ଜିତ ଭକ୍ତ ଯାର ନାହିଁ
ସେମାନଙ୍କୁ ଏହି ଶାସ୍ତ୍ର ଶୁଣାଇବ ନାହିଁ ।
ଯେଉଁ ପାପୀ ଗୁରୁଜନ ସେବା ନ କରଇ
ଏ ଶାସ୍ତ୍ର ଶୁଣିବାପାଇଁ ଯୋଗ୍ୟ ସେ ନୁହଇ ।
ମୋଠାରେ ମନୁଷ୍ୟ ବୁଦ୍ଧି ଯାହାର ହୋ ଥିବ
ଏ ଶାସ୍ତ୍ର କଦାପି ତାର ହାତରେ ନ ଦେବ ।
ଯେଉଁ ଲୋକ ମୋ ଭକ୍ତକୁ ଏହା ଦିଏ ଶିକ୍ଷା
ତାହାକୁ କରଇ ମୁହିଁ ଅବଶ୍ୟହିଁ ରକ୍ଷା ।
ମୋ ଗୀତାକୁ ଆନନ୍ଦରେ ମୁଖେ ଯେହୁ ଗାଇ
ଜଗତରେ ମୋର ଅତିପ୍ରିୟ ଅଟେ ସେହି ।
ତୁମ୍ଭ ଆମ୍ଭର ସମ୍ବାଦ ନିତ୍ୟ ଯେ ପଢ଼ିବ
ଜ୍ଞାନଯଜ୍ଞରେ ପୂଜିଲା ମୋତେ ସେ ଜାଣିବ ।
ଗୀତା ଅର୍ଥ ନ ଜାଣିଣ ପଢ଼ିଲେହେଁ ଲୋକ
ତେବେ ତାର ନାଶ କରେ ମୁହିଁ ସର୍ବଶୋକ
ଦୋଷଯୁକ୍ତେ ପଢୁଥିଲେ ତାହାର ଅସୂୟା
ଛାଡ଼ି ଯେଣୁ ଶୁଣେ ତାକୁ ନ ଲାଗେ ମୋ ମାୟା ।
ମୋର କହିବାର ଗୀତା ଏକମନେ ଶୁଣି
ଅଜ୍ଞାନ ନାଶିଲା କି ହୋ କହ ଧୀରମଣି ।
ତହୁଁ ଅର୍ଜୁନ କହିଲେ ତୁମ୍ଭ ବଚନରେ
ମୋହ ନ ରହିଲା ପ୍ରଭୁ କିଛି ମୋ ମନରେ ।
ଆତ୍ମ ର ଅନୁସନ୍ଧାନ ପାଇଲଇଁ ମୁହିଁ
ଆଜ ଯାହା ବୋଲୁଅଛ ଆଜ କରିବଇଁ ।
ଏରୂପେ ଶ୍ରୀକୃଷ୍ଣଙ୍କର ଅର୍ଜୁନ ସମ୍ବାଦ
ଶୁଣିକରି ଜ୍ଞାନପ୍ରାପ୍ତ ହୋଇଲା ମୋ ହୃଦ ।
ବ୍ୟାସଙ୍କର ପ୍ରସାଦରେ ଆହେ ନୃପଈଶ
ସମସ୍ତ କଥା ମୋ ହୃଦେ ହୁଅଇ ପ୍ରବେଶ ।
କୃଷ୍ଣ ଅର୍ଜୁନ ସମ୍ବାଦ ମୋହର ମନରେ
ଉଦିତ ହୋଇଲେ ରୋମ ଟାଙ୍କୁରେ ଶରୀରେ
କୃଷ୍ଣଙ୍କର ବିଶ୍ୱରୂପ ମୁହିଁ ଦେଖିଅଛି
ଏବେ ମଧ୍ୟ ମୋର ଆଖି ବୁଜି ହେଉଅଛି ।
ଯେଉଁ ପକ୍ଷରେ ଶ୍ରୀକୃଷ୍ଣ ଅର୍ଜୁନ ଅଛନ୍ତି
ବିଜୟ ଲକ୍ଷ୍ମୀ ସେ ପକ୍ଷ ଛାଡ଼ିବେ କେମନ୍ତ ।
ନବ ଦୁର୍ବାଦଳ ଶ୍ୟାମ ତମାଳର ବର୍ଣ୍ଣ
ଯଶୋବନ୍ତଙ୍କର ଯେହୁ ପ୍ରାଣାଧିକ ଧନ ।
ଅର୍ଜୁନଙ୍କ ଜ୍ଞାନଗୁରୁ ନନ୍ଦଙ୍କର ସୁତ
ସେ ବିଷ୍ଣୁଙ୍କ ପାଦେ ମୋର ଦଇମା ନୟତ
ଏଠାରେ ଭଗବଦ୍ ଗୀତା ହୋଇଲା ନିଃଶେଷ
ଏଥୁଅନ୍ତେ ବୁଧଜନେ ଶୁଣ ଆନରସ ।

---

## ରଣକ୍ଷେତ୍ରେ ଯୁଧିଷ୍ଠିର ପଡ଼ା ମାଗିବା ନିମନ୍ତେ ପୁନର୍ବାର ଗମନ ଓ ଦୁର୍ଦ୍ଧଷର ଶରଣ

ମନୁରାଜା ପୃଚ୍ଛା କଲେ ପୁଣି ଅଗସ୍ତିଙ୍କି
ଧର୍ମନନ୍ଦନ ଗଲେ ତ କୌରବ ତହିଁକି ।
ରାଜା ଦୁର୍ଯ୍ୟୋଧନ ସଙ୍ଗେ ହେଲା କେଉଁ କଥା
ସେ କଥା କହି ମୋହର ହର ମନୁ ବ୍ୟଥା ।
ଅଗସ୍ତି କହିଲେ ରାଜା କହୁଅଛୁ ଶୁଣ
ତୋପରି ଶ୍ରୋତାକୁ ଯେବେ ନ କହିବା ପୁଣ
ଆଉ କା ଆଗେ କହିବା ଆହେ ନରନାଥ
ତୁହି ଶ୍ରୋତା ମଧ୍ୟେ ଶ୍ରେଷ୍ଠ ଜାଣିଲି ତୋ ଚିତ୍ତ
ଏଥୁ ଅନନ୍ତରେ ହେଲା ଯେଉଁ ସମାଚାର
ତାହା ବୃତ୍ତାନ୍ତ କହୁଛି ଶୁଣ ନୃପବର ।
ସଞ୍ଜୟ ମୁଖରୁ ସବୁ ଧୃତରାଷ୍ଟ୍ର ଶୁଣି
କିଛିକ୍ଷଣ ବସି ଏହା ମନେ ମନେ ଗୁଣି ।
ବୋଇଲା ସଞ୍ଜୟ ଶୁଣ ଆହେ ମନ୍ତ୍ରୀବର
ଦୁର୍ଯ୍ୟୋଧନ ଯାଇଅଛି କରିବ ସମର ।
ପାଣ୍ଡବମାନଙ୍କୁ ଜିଣି ନ ପାରିବ ଜୟ
ଏଥିପାଇଁ ମନେ ମୋର ହେଉଅଛି ଭୟ ।
ଚାଲ ମନ୍ତ୍ରି ଏ ସମୟେ ସମର କ୍ଷେତ୍ରକୁ
ଆଉ ବାରେ ବୋଧି କହେ ସେ ଦୁର୍ଯ୍ୟୋଧନକୁ
ଭାଇ ଭାଇରେ କପାଇଁ ସମର କରିବେ
ଗ୍ରାମେକ ଦେଲେ ପାଣ୍ଡବେ ସନ୍ତୋଷହୋଇବେ
ଏହା ଶୁଣିଣ ସଞ୍ଜୟ ଆନନ୍ଦିତ ହେଲା
ଯା କଲେ ଅବଶ୍ୟ ଭଲ ହୋଇବ ବୋଇଲା
ଏଉତ୍ତରେ କହନ୍ତେ ରଥ ଆଣିଲା ସାରଥି
ତହିଁରେ ବସିଲେ ଅନ୍ଧ ନରପତି ମନ୍ତ୍ରୀ ।

ନିମିଷକେ ଉକ୍ଷଣେକେ ହେଲେ ଉପସ୍ଥିତ
ଧୃତରାଷ୍ଟ୍ର ମିଳେ ଯହିଁ ଅଛୁ ତାର ସୁତ ।
ହେ ରାଜା ଆସୁଥିଲେ ତ ଧର୍ମ ନରପତ
ଆସୁ ଆସୁ ମନେ ଧର୍ମ ଧର୍ମ ସୁମରନ୍ତ ।
ହେ ଧର୍ମ ଆମ୍ଭଙ୍କୁ ଯୁଦ୍ଧେ ନ କରାଅ ଭ୍ରମ
ସନ୍ଧି କରାଅ ଯେରୂପେ ନ ହେଉ ସଂଗ୍ରାମ ।
ତେଣେ ଦୁର୍ଯ୍ୟୋଧନ ଆଗେ କହଇ ଶକୁନି
ଶରଣ ନେବାକୁ ଆସେ ଧର୍ମ ନୃପମଣି ।
ଶୁଣିଣ ହରଷ ହେଲ ମାନଚକ୍ରବର୍ତ୍ତୀ
ଶରଣ ପଶି ମାଗିବ ଯେବେ ମୋତେ ପୃଥ୍ୱୀ ।
ଆବର ସେହି ମୋହର ଭୁଜ ତଳେ ଗଳି
ମାଗିଲେ ଛାଡ଼ିବ ରାଜ୍ୟ ଭୁଞ୍ଜୁ ମହୀସ୍ଥଳ ।
ସୁଖେ ଭୋଗ କରୁ ରାଜ୍ୟ ସିଂହାସନେ ବସି
ଭାଇଙ୍କୁ ଘେନିଣ ମୁହିଁ ହେବି ବନବାସୀ ।
ଦନ୍ତେ ତୃଣ ଗଳାରେ କୁଠାରକୁ ଧରି
ନ ମାଗିଲେ ନ ଦଅଇ ରାଜ୍ୟକୁ ମୋହର ।
ଏହିବେଳେ ଆଜ୍ଞାଦେଲ ଦୁର୍ଯ୍ୟୋଧନ ବୀର
ଦୁନ୍ଦୁଭି ପ୍ରଭୃତି ବାଦ୍ୟ ନିଶବଦ କର ।
ଉଭୟ ଥାଟର ସୈନ୍ୟ ସ୍ତବଧ ହୋଇଲେ
ପବନହୀନେ ପାଦପ ପରାଏ ରହିଲେ ।
ଏ ସମୟେ ଯୁଧିଷ୍ଠିର ବୃତ୍ତାନ୍ତ ଗୃହାଣି
ଜନମନମୋହନ ଜନ୍ମସିଂହ ଠାଣି ।
କରେ ଧରିଛନ୍ତି ସେହି ଜୟମାଳ ଗୋଟି
ପ୍ରଥମରେ ମହାରଥୀ ଭୀଷ୍ମ ପାଶେ ଭେଟି
ଜାହ୍ନବୀତନୟଙ୍କୁ ସେ ପାଦ୍ୟଅର୍ଘ୍ୟ ଦେଇ
ପ୍ରଣମିଲେ ଯୁଧିଷ୍ଠିର ହୋଇଣ ବିନୟୀ ।
ଭୀଷ୍ମ ବୋଇଲେକ ତୋର ବାଞ୍ଛାସିଦ୍ଧ ହେଉ
ଆମ୍ଭ ଆୟୁ ଘେନ ବର୍ତ୍ତି ଚନ୍ଦ୍ରସୂର୍ଯ୍ୟ ଯାଉ ।
ହସ୍ତିନା ବାରୁଣା ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ
ଜଇନ୍ତା ଏ ପଞ୍ଚରାଜ୍ୟ ହେଉ ପରାପତ ।
ଗାଙ୍ଗେୟଙ୍କଠାରୁ ଏହି ଆଶୀର୍ବାଦ ଘେନି
ଧର୍ମନନ୍ଦନ ବିନୟେ କହିଲେ ଏ ବାଣୀ ।
ଦିନକର ନାଥ ଯେବେ ଉଇଁବେ ପଶ୍ଚିମେ
ସମୁଦ୍ର ଶୁଖିବ ଯଦି ନଦନଦୀ ଭ୍ରମେ ।
ଯେବେ ଗଙ୍ଗାରେ ପାଷାଣ ହୋଇବଟି ଭେଳା
ପର୍ବତ ପରେ ଫୁଟିବ ଯେବେ ପଦ୍ମମାଳା ।

ସତ୍ୟଯୁଗେ କଳଯୁଗ ଯେବେ କ ଭେଟଇ
ତଥାପି ସଜ୍ଜନ ବାକ୍ୟ ଅନ୍ୟଥା ନୁହଇ ।
ଶତ୍ରୁମାରି ପଞ୍ଚରାଜ୍ୟେ ହେବ ଚକ୍ରବର୍ତ୍ତୀ
ତୋ'ର ବଚନ ଅନ୍ୟଥା ନ ହେଉ ମୋପ୍ରତି ।
ମୋର ଶତ୍ରୁ ଦୁର୍ଯ୍ୟୋଧନ ହସ୍ତିନାର ପତି
ତାଙ୍କୁ ଆବୋର ପ୍ରଥମେ ହେଲୁ ସେନାପତି ।
ଦଳେ ପର୍ଶୁରାମ ଜିଣି ସମର୍ଥ ଅଛୁ ତୁ
ଏ ପୃଥ୍ୱୀରେ କେହି କର ନ ପାରେ ତୋ ମୃତ୍ୟୁ
ନ ହୋଇବୁ ଯୁଦ୍ଧେ ଯେବେ ତୁହି ସେନାପତି
ତେବେ ଶତ୍ରୁ ଜୟ ମୋତେ ରାଜ୍ୟ ହେବ ପ୍ରାପ୍ତି
ହେ ଦେବ ପରମମାନ୍ୟ ତୁମ୍ଭେ ଅଜାଗୁରୁ
ବାସବ ଶଙ୍କା କରଇ କରେ ଧନୁ ଧରୁ ।
କୌରବବଳଙ୍କ ତୁମ୍ଭେ ରକ୍ଷାକାରୀ ହେବ
ତୋତେ ନ ଜିଣି କପର ବାଞ୍ଛାସିଦ୍ଧ ହେବ ।
ସ୍ୱାମୀ କୁରୁନାଥ ଯେହ୍ନେ ଅଟନ୍ତି ଶାନ୍ତନୁ
ସନ୍ତୋଷେ ହେଲେ ତୁମ୍ଭଙ୍କୁ ଆର୍ଦ୍ରାବଳ ଧନୁ
ତ୍ରୈଲୋକ୍ୟକମ୍ପାଇ ଦେବ ତୋରକୋପାନଳେ
ତୋତେ କେ ନାଶ କରିବ ଯୁଝି ବାହୁବଳେ
ମାନଗୋବିନ୍ଦକୁ ତୁହି ଛାଡ଼ି ତ ନ ଦେବୁ
ଶତ୍ରୁ ନ ଜିଣିଲେ ରାଜ୍ୟ କପର ଲଭିବୁ ।
ଗାଙ୍ଗେୟ ବୋଇଲେ ଏହା ନୁହେଁ କଦାଚିତେ
ଏତେବେଳେ ଦୁର୍ଯ୍ୟୋଧନେ ଛାଡ଼ିବ କେମନ୍ତେ
ଆଦ୍ୟହୁଁ ସେ ମୋ ଭୁଜକୁ ଆଶ୍ରେ କରିଛଇଁ
ଏତେବେଳେ ଛାଡ଼ିଲେ ମୁଁ ଧର୍ମ ଲଙ୍ଘିବଇଁ ।
ଯୁଧିଷ୍ଠି ବୋଇଲେ ଯେବେ ନ ଛାଡ଼ିବୁ ତାଙ୍କୁ
ମୁଁ ତ ସାମରଥ ନୁହେଁ ତୋତେ ଜିଣିବାକୁ
କି ପ୍ରକାରେ ରାଜ୍ୟ ମୋତେ ହୋଇବ ପ୍ରାପତ
ତୋତେ କରୂପେ ଜିଣିବ ସ୍ୱରୂପ କହତ ।
ଯୁଧିଷ୍ଠିରଙ୍କ ବଚନେ ଗାଙ୍ଗେୟ କହିଲେ
ଆମ୍ଭ ବଚନ ଅନ୍ୟଥା ହୋଇବ କି ଭଲେ ।
ଆମ୍ଭେ ଯେ ମୁକୁଟ ବାନ୍ଧି ହେଲୁ ସେନାପତି
ଦିନେକ ମାରିବୁ ଆମ୍ଭେ ଦଶସହସ୍ର ରଥୀ
ଦଶଦିନ ଯାଏ ଆମ୍ଭେ ଥିବୁ ହୋ ନରେଧି
ସେ ପର୍ଯ୍ୟନ୍ତ ରକ୍ଷାକର ତୁମ୍ଭର ସମୃଦ୍ଧି ।
ଦଶ ଦିବସାନ୍ତେ ମୋର ଆଗେ ଶିଖଣ୍ଡୀକୁ
ଦେଖାଇଲେ ସତ୍ୟ କଲି ଛାଡ଼ିବି ଅସ୍ତ୍ରକୁ ।

ପ୍ରଥମରୁ ଦଶଦିନ ତୁ ରକ୍ଷା ପାଇଲେ
କି ଲୋକେ ତୁମ୍ଭଙ୍କୁ କେହି ନ ଜିଣିବ ଭଲେ ।
ତୋର ନିମନ୍ତେ କରିବୁ ଶରଶଯ୍ୟା ଆମ୍ଭେ
ମୋର ପରେ ସେନାପତି ଦ୍ରୋଣାଚାର୍ଯ୍ୟହେବେ
ପ୍ରଥମ ଦିନେ ମାରିବ ସେହି ବାହୁରାୟ
ପାଞ୍ଚଦିନ ଯୁଝିବ ସେ ଭରଦ୍ୱାଜ ପୁଅ ।
ଭୀଷ୍ମଙ୍କର ଦୃଢ଼ବାକ୍ୟ ଶୁଣି ଧର୍ମରାୟ
ଆନନ୍ଦରେ ତହୁଁ ବେଦ କରିଲେ ବିଜୟ
ଭୀଷ୍ମଙ୍କ ଦକ୍ଷିଣ ପାର୍ଶ୍ୱେ ଭୂରିଶ୍ରବା ଥିଲେ
ଧର୍ମ ନନ୍ଦନ ତାହାଙ୍କୁ ନମସ୍କାର କଲେ ।
ପାଦାର୍ଘ୍ୟ ଦେଇଣ ଶତସହସ୍ରପ୍ରଣାମି
କଲ୍ୟାଣ ବାଞ୍ଛିଲେ କଉରବକୁଳ ସ୍ୱାମୀ ।
ବାବୁ ବାଞ୍ଛା ସିଦ୍ଧ ହେଉ ଆମ୍ଭ ଆଯୁଷରେ
ଶତ୍ରୁ ମାରି ରାଜା ହୁଅ ଦଣ୍ଡକଣ୍ଟକରେ ।
ଯୁଧିଷ୍ଠି ବୋଇଲେ ଅଜା ଅଟ ତୁମ୍ଭେ ଗୁରୁ
ଇନ୍ଦ୍ର ଶଙ୍କା କରେ ତୁମ୍ଭ ଧନୁ ଧରୁ ଧରୁ ।
କୁରୁରାଜ ପକ୍ଷ ତୁମ୍ଭେ ସୋଦର ଶତେନ୍ନ
ଗର୍ବ କଲେଟି ତୋତେ ଆଦ୍ରାବିଲ ଧନୁ
କି ଲୋକ କମ୍ପଇ ଦେବ ତୁମ୍ଭ କୋପକଲେ
ତୋତେ ବିନାଶ କରିବୁ ଆମ୍ଭେ କାହା ବଳେ
ତୁମ୍ଭ ଯେ ନିଶ୍ଚୟେ ଦୁର୍ଯ୍ୟୋଧନେ ନ ଛାଡ଼ିବୁ
କପରି ହେ ଶତ୍ରୁ ମାରି ଆମ୍ଭେ ରାଜା ହେବୁ ।
ଭୂରିଶ୍ରବା ବୋଲେ ଦଶଦିନର ସମର
ଆମ୍ଭେ ନୋହୁ ଏଥି ମଧ୍ୟେ ଛନ୍ତି ଭୀଷ୍ମବୀର ।
ତୋର ନିମନ୍ତେ କରିବେ ସେହୁ ଶରଶଯ୍ୟା
ସେନାପତି ହେବେ ଭରଦ୍ୱାଜଙ୍କ ତନୁଜା ।
କହୁଛି ଯୋଦ୍ଧା ପ୍ରଥମ ସମରେ ମାରିବେ
ଦ୍ୱିତୀୟେ ଶକଟ ବ୍ୟୂହେ ସିନ୍ଧୁରାଜା ଯିବେ ।
ଶକଟବ୍ୟୂହେ ପ୍ରଥମ ଦ୍ୱାରେ ଆମ୍ଭେ ଥିବୁ
ସାତ୍ୟକିର ହସ୍ତେ ଶିରଚ୍ଛେଦେ ନାଶହେବୁ ।
ଭୂରିଶ୍ରବାଙ୍କରଠାରୁ ଏହି ବାକ୍ୟ ଶୁଣି
ଯୁଧିଷ୍ଠିରଙ୍କର ନେତ୍ରେ ନେତ୍ରୁ ବହେ ପାଣି ।
ଦେଖି ଭୂରିଶ୍ରବା ତାଙ୍କୁ ଧରି କୋଳକରି
ବୋଇଲେ ଶୋକ ନକର ନ କାନ୍ଦ ଏପରି
ବାବୁ ଆକାଶରେ ମେଘ ସରେ ଯେତେବେଳେ
ମାନବ ଜନ୍ମ ଲଭଇ ପ୍ରାଣୀ ଋଷିଦଳେ ।

ରାଗ ମୋହ ହିଂସା ଅପବାଦ ଆଦିକରି
ମର୍ତ୍ତ୍ୟମଣ୍ଡଳେ ଜନ୍ମିଲେ ଅବଶ୍ୟଟି ମରି ।
ପୂର୍ବେ ବଞ୍ଚିଥିଲି ଶତସହସ୍ର ବରଷ
ବର୍ତ୍ତମାନ ମୋର ମୃତ୍ୟୁ ହୋଇବ ଅବଶ୍ୟ ।
ଭୂରିଶ୍ରବା ବୋଲେ ଆମ୍ଭେ ନିଶ୍ଚୟ ମରିବୁ
କୁରୁଯୁଦ୍ଧଠାରୁ ଭଲସ୍ଥାନ କି ପାଇବୁ ।
ଭୂରିଶ୍ରବାଙ୍କର ତହୁଁ ଏହି ଦୃଢ଼ ଶୁଣି
ସେଠାରୁ ବିଜୟ କଲେ ଧର୍ମ ନୃପମଣି ।
ଯାନ୍ତେଣ ଦେଖିଲେ ଆଗେ ରାୟଗୁରୁ ଶଲ୍ୟ
ମହାଭାରତ ଯୁଦ୍ଧରେ ସେହୁ ମହାମଲ୍ଲ ।
ଶାକଲ୍ୟ ମଣ୍ଡଳରେ ସେ ଅଟେ ଅଧିପତି
ତାଙ୍କ ଚରଣେ ଯୁଧିଷ୍ଠି କରିଲେ ପ୍ରଣତି ।
ଶଲ୍ୟ ବୋଇଲେ କଲ୍ୟାଣ ହେଉ ମୋର ବାବୁ
ଶତ୍ରୁଙ୍କୁ ମାରି ତୁ ରାଜ୍ୟ ଅବଶ୍ୟ ଭୁଞ୍ଜିବୁ ।
ଶଲ୍ୟଙ୍କ ବଚନ ଶୁଣି ଉଠି ଯୁଧିଷ୍ଠିର
କରପଦ୍ମ ଯୋଡ଼ି କହେ ବଚନ ମଧୁର ।
ତୁମ୍ଭେ ଯେ ଅଟ ଆମ୍ଭର ସୋଦର ମଉଳା
ମାଦ୍ରୀଙ୍କ ଭାଇ ଅଶ୍ୱିନୀକୁମାରଙ୍କ ଶଳା
କ୍ଷତ୍ରିୟେ ବଳବନ୍ତ କେ ନାହିଁ ତୋତେ ସରି
ତୁ ଧନୁ ଧରନ୍ତେ ତୋତେ ହାସନ୍ତି ଶ୍ରୀହରି ।
ରୁଦ୍ରଇନ୍ଦ୍ରାଦି ସରି କେ ନୁହେ ତୋତେ ଯୁଦ୍ଧେ
କେମନ୍ତେ ଜିଣିବି ମୁହିଁ ତୋତେ ରଣ ମଧ୍ୟେ ।
କଲ୍ୟାଣ ଖାଇଁବାକୁ ବାଞ୍ଛା କଲୁ ଦେବ ତୁହି
ତୁମ୍ଭଙ୍କୁ ଜିଣିବା ଶକ୍ତି ମୋର ଅଛି କାହିଁ ।
ଗଜ ପରାୟେ କୁରୁ ତୁମ୍ଭ ଅଟୁ ସିଂହ
ତାହାଙ୍କୁ ଯେ ରକ୍ଷାକରୁ ତୁମ୍ଭ ମତ୍ତବ୍ୟାଘ୍ର ।
ତୁମ୍ଭେ ମୋହର ମାଉଳ ମୁଁ ତୁମ୍ଭ ଭଣଜା
ମୋର ଥାଟ ରକ୍ଷାକର ଦେବ ଗୁରୁରାଜା ।
ଶଲ୍ୟ ବୋଇଲେ ରେ ବାବୁ ନୁହଇ ଏମନ୍ତ
ଅସମୟେ ଦୁର୍ଯ୍ୟୋଧନ ଛାଡ଼ିବି କେମନ୍ତ ।
କୌରବଙ୍କୁ ଛାଡ଼ିବି ମୁଁ ଯେବେ ଏତେବେଳେ
ଧର୍ମ କପା ରହିବଟି ଏ ମହୀମଣ୍ଡଳେ ।
ହେ ଯୁଧିଷ୍ଠିର ଭାଳ ତୁ ମନେ ଅନ୍ୟ କଥା
ଶୁଣ ମୋହର ବାଳ୍ପତ କାଳର ବାରତା ।
କାଳେ ଚନ୍ଦ୍ରଭାଗା ନଦୀ ଉତ୍ତରର କୂଳେ
ତହିଁ ଆମ୍ଭେ ନିତି ଯାଉ ଖେଳ କୁତୂହଳେ ।

ଫିମ୍ପି ମାର ତପୋପୃକା ନଦୀ କରୁ ପାର
ନଦୀ ପାର ହୋଇ ଫୁଟେ ତପୋପୃକା ଗିର ।
ଏସନ ସାଧନା ମୋର ଅଛୁ ବାଳକାଳୁ
ଏମନ୍ତେଣ ଫିମ୍ପି ମାରୁ ଶିକ୍ଷା ବେକ୍ତ ବେକ୍ତ
ହନକର ତପୋପୃକାଗିର ପୂର୍ବ ଆଡ଼େ
ଅନୁଷ୍ଟପ ଋଷି ତପ କରୁଥିଲେ ଦୃଢ଼େ ।
ପଶ୍ଚିମ ଆଡ଼କୁ ଫିମ୍ପି ମାଇଲ ମୁଁ ଥାଇ
ପର୍ବତ ଫୁଟି ନକଳେ ଋଷି ହୃଦେ ଯାଇ ।
ଉତ୍ସନଶାସ୍ତ୍ରୀ ହୋଇଣ ପଡ଼ି ବ୍ରହ୍ମଋଷି
ଋଷିର ରୁଧିରେ ନଦୀ ଗଲା ତହିଁ ପୂର ।
ଆଚମ୍ବିତେ ତପୋପୃକା ନଦୀ ମୁଁ ଦେଖିଲ
ତକ୍ଷଣେ ଋଷିଙ୍କ ପାଶେ ଯାଇ ମୁଁ ମିଳିଲି ।
ଅନେକ ବ୍ୟାକୁଳ ଋଷି ହେଲେ ମୋତେ ଗୁହିଁ
ବୋଇଲେ ମୋହର ବ୍ରତ ପୂର୍ଣ୍ଣହେଲ ନାହିଁ
ମୁଁ ବୋଇଲ ମୁଁ ହୋଇଲି ବ୍ରହ୍ମହତ୍ୟା ଦୋଷୀ
ଏଥିରୁ ମୁକତ ମୋତେ କର ବ୍ରହ୍ମଋଷି ।
ଅନୁଷ୍ଟପ ବୋଇଲେ ତୁ ଭାରତ ସମରେ
ସେନାପତି ହୋଇବୁଟି କୌରବ ଥାଟରେ ।
ଅଷ୍ଟାଦଶ ଦିନ ତହିଁ ହୋଇବ ଯେ ଯୁଦ୍ଧ
ଯୁଧିଷ୍ଠିଙ୍କ କୋପାନଳେ ହେବୁ ତୁ ଦଗଧ ।
ବ୍ରହ୍ମହତ୍ୟା ଦୋଷୁ ତୁହି ଯେବେ ହେବୁ ପାର
ଭାରତ ଯୁଦ୍ଧରେ ତୋର ହେବ ପ୍ରତିକାର ।
ଏଥିକୁ ମନେ କରୁ ନ ଭାଳ ମହୀପାଳ
ମୋର କାର୍ଯ୍ୟ ମୁହିଁ ଇଚ୍ଛାକରେ ମହାଭୋଳ ।
ସମରରେ ମୁହିଁ ନାଶଯିବ ମୋହ ଯୋଗେ
ହତ୍ୟାଦୋଷୁପାରହୋଇ ବସିବ ମୁଁ ସ୍ୱର୍ଗେ ।
କରୁଚିନ୍ତା ମନେ ତୁହି ନକର ଯୁଧିଷ୍ଠି
ଭାରତ ଯୁଦ୍ଧରେ ତୋତେ ନାହିଁଟି ଅରିଷ୍ଟି ।
ଶୁଣି ଯୁଧିଷ୍ଠି ସାନନ୍ଦ ଶଲ୍ୟଙ୍କ ବଚନେ
ତହୁଁ ବିଜେକଲେ ଦ୍ରୋଣଗୁରୁ ସନ୍ନିଧାନେ ।
ଭରଦ୍ୱାଜଙ୍କ ନନ୍ଦନ କକ୍ଷା ଜଗତ୍ ଶ୍ରେଷ୍ଠୀ
ପାଦାର୍ଘ୍ୟ ଦେଇ ବନ୍ଦିଲେ ତାହାଙ୍କୁ ଯୁଧିଷ୍ଠି ।
କରଯୋଡ଼ିଣ ସ୍ତୁତିଲେ ପୁଣି ଦଣ୍ଡଧାରୀ
ପରମ ସାନନ୍ଦ ଗୁରୁ ଧର୍ମେ ଦେଖିକରି ।
ବୋଇଲେ ଆମ୍ଭ କଲ୍ୟାଣ ତୋତେ ପ୍ରାପ୍ତହେଉ
ଆମ୍ଭ ଆୟୁ ଯେନ ବର୍ତ୍ତି ଶତ୍ରୁ କ୍ଷୟ ଯାଉ ।

ଯୁଧିଷ୍ଠି ବୋଇଲେ ତୁମ୍ଭ ଆମ୍ଭ ମାନ୍ୟ ଗୁରୁ
ଏସନ କଲ୍ୟାଣ ଯତ ବାହାରେ ମୁଖରୁ ।
ତୋତେ ଜିଣିବାକୁ ମୁହିଁ କାହିଁ ସାମରଥା
ତୋହର ବିଦ୍ୟାରେ ସିନା ମୁଁ ଅଟେ ସକତା
ତୁମ୍ଭ ରହିଲୁ ଆବୋର କୌରବ ମାନଙ୍କୁ
ତୋତେ ନ ଜିଣିଲେ ରାଜ୍ୟ ପ୍ରାପ୍ତନ ଆମ୍ଭଙ୍କୁ ।
କେମନ୍ତେ ଜିଣିବୁ ତୋତେ କହ ସେ କାରଣ
ତେବେ ସେ ପ୍ରାପତ ସିନା ହୋଇବ କଲ୍ୟାଣ ।
ଦ୍ରୋଣ ବୋଇଲେ ନାରାଚଥିଲେ ମୋର କରେ
ଜିଣିବାକୁ ପାର କେହି ନାହିଁ ଏ ମହୀରେ ।
ଯୁଧିଷ୍ଠି ବୋଇଲେ ତୁମ୍ଭେ ଛାଡ଼ି କେବେ ଶର
ଧନୁ ଶର ସର୍ବଦା ତ ଥାଏ ତୁମ୍ଭ କର ।
ଦ୍ରୋଣ ବୋଇଲେକ ସ୍ନାନ ଭୋଜନର ବେଳେ
ଧନୁ ଶର ନ ଥାଏ ଯେ ମୋର କରସ୍ଥଳେ ।
ସେ ଧର୍ମଜ ଅଶ୍ୱଥାମା ଏକଇ ତନୟ
ତା ମୃତ୍ୟୁ ଶୁଣିଲେ ଅସ୍ତ୍ର ଛାଡ଼ିବ ନିଶ୍ଚୟ ।
ମୋହର ଶିରକୁ ଛେଦପାର ତେତେବେଳେ
ଆନେ ମୋର ମୃତ୍ୟୁ ନାହିଁ ଜାଣ ଧର୍ମବାଳେ
ବାବୁ ସ୍ନାନକାଳେ ଯେତ୍ତ ମାରଇ ବ୍ରାହ୍ମଣ
ରୌରବ ନରକେ ତାକୁ ହୁଅଇ ପତନ ।
ଭୋଜନ ବେଳେ ମାଇଲେ ହୁଏ ମହାଦୋଷ
ଛତିଶ ପ୍ରମାଣେ ଯମ କାଟେ ତାର ମାଂସ ।
ଅଶ୍ୱଥାମା ଚିରଜୀବୀ କେବେ ନ ମରିବ
ମହୀମଣ୍ଡଳରେ କିଏ ତାହାକୁ ଜିଣିବ ।
ଯୁଧିଷ୍ଠିର ହର୍ଷ ହେଲେ ଶୁଣି ମୃତ୍ୟୁଭେଦ
ଅଶ୍ୱଥାମା ମୃତ୍ୟୁ ଯୋଗ ଘଟିବ ପ୍ରମାଦ ।
ଏଥୁଅନ୍ତେ ଯୁଧିଷ୍ଠିର ତହୁଁ ଚଳିଗଲେ
ଅଶ୍ୱଥାମାଙ୍କପାଶରେ ଯାଇଣ ମିଳିଲେ ।
ତାଙ୍କ ପାଦତଳେ ଯହୁଁ ଧର୍ମ ପ୍ରଣମିଲେ
ଅଶ୍ୱଥାମା ଦେବ ସ୍ୱାମି କଲ୍ୟାଣ ବାଞ୍ଛିଲେ ।
ଆମ୍ଭ ଏ କଲ୍ୟାଣ ତୋତେ ସରପତ ହେଉ
ଶତ୍ରୁ ଜିଣି ରାଜା ହୁଅ ଜନ୍ମା କେ ନୋହୁ ।
ବାବୁ ଶତ୍ରୁ ମାର ପଞ୍ଚରାଜ୍ୟେ ହୁଅ ରାଜା
ପୃଥିବୀରେ ଶ୍ରେଷ୍ଠ ହୁଅ ରଞ୍ଜୁ ତପ୍ରଜା ।
ଯୁଧିଷ୍ଠି ବୋଇଲେ ଦୟାକଲୁ ଯେବେ ମୋତେ
ଏ କୁରୁ ସାଗର ମୁହିଁ ଜିଣିବି କେମନ୍ତେ ।

କଲ୍ପସିଦ୍ଧି କର ତୁମ୍ଭେ ଅଟ ଚିରଜୀବୀ
ତୋତେ ନ ଜିଣି କପର ଏକଛତ୍ର ହେବ ।
ଦ୍ରୋଣୀ ବୋଇଲେ ଶ୍ରୀକୃଷ୍ଣ ତୋତେଛନ୍ତି ସାହା ।
ଯେଉରୂପେ ତୁମ୍ଭେ ଜିଣିବ କରିବେ ସେ ତାହା ।
ଦୁର୍ଯ୍ୟୋଧନ ସେନାପତି କରିନାହିଁ ମୋତେ
କରିଥିଲେ କେ ତୁମ୍ଭଙ୍କୁ ରଖନ୍ତା ଜଗତେ ।
ବାନ୍ଧିଥାନ୍ତା ଶିରେ ଯେବେ ମୁକୁଟ ସେ ମୋର
କୃଷ୍ଣାଦି ତୁମ୍ଭଙ୍କୁ ପେଷିଥାନ୍ତି ଯମଘର ।
ଦୁର୍ଯ୍ୟୋଧନ ବୋଇଲା ତୁ ମରଣେ ଡରିଲୁ
କ୍ଷତ୍ରୀ ହୋଇଣ ଚିରଜୀବୀ ବର ତୁ ମାଗିଲୁ ।
କକ୍ଷାବନ୍ତ ରାଜା ଅଟେ ସେ ମାନଗୋବିନ୍ଦ
ସେନାପତି ନ କରିଲା ମୋତେ ଦୁଷ୍ଟ ମନ୍ଦ ।
ଥିଲେ ଥିଲି ଗଲେ ଗଲି ମୋହର ଯେ ଇଚ୍ଛା
ପଞ୍ଚକଟକ ଭୋଗ ତୁ ପୂରୁ ମନୋବାଞ୍ଛା ।
ଅଶ୍ୱତ୍ଥାମା ନିକଟରେ ଥିଲେ କୃପାଚାର୍ଯ୍ୟ
ତାଙ୍କୁ ନମସ୍କାର କଲେ ଧର୍ମଙ୍କ ଆତ୍ମଜ ।
କୃପାଚାର୍ଯ୍ୟ ବୋଇଲେ ତୋ ପୂରୁ ମନୋବାଞ୍ଛା ।
ଶତ୍ରୁ ମାରି ରାଜ୍ୟ ଭୋଗ ଯେ ତୋହର ଇଚ୍ଛା
ଯୁଧିଷ୍ଠି ବୋଇଲେ ତୁମ୍ଭେ ବ୍ରାହ୍ମଣ ଯେ ହୋଇ
ସଂଗ୍ରାମେ ପଶ ଶ୍ରୀବତ୍ସଲାଞ୍ଛନକୁ ବନ୍ଧ ।
ବିଶେଷେ ଦ୍ରୋଣଙ୍କ ଶଳା ଆମ୍ଭର ମଉଳା
ଚାରିବେଦ ପଢ଼ି ତୁମ୍ଭ ତେଜ ଅନର୍ଗଳା ।
ଶସ୍ତ୍ର ଘେନ ପଶ ଏଥେ ହେବ ତୁମ୍ଭ ଦୋଷ
ତୁମ୍ଭଙ୍କୁ ବଧିଲେ ଉବେ ହେବ ଅପଯଶ ।
ଯୁଧିଷ୍ଠିରଙ୍କୁ ବୋଇଲେ ସେ ଆଚାର୍ଯ୍ୟ କୃପ
ଆମ୍ଭଙ୍କୁ ଘାତ ବାଦେ ନ କର ଆହେ ନୃପ ।
ବାବୁ ସମର ଭୂମି ଏ ଅଟେ ଯଜ୍ଞସ୍ଥାନ
ଏଥକୁ ଆଚାର୍ଯ୍ୟପଣେ ହୋଇବୁ ବରଣ ।
ଆମ୍ଭେ କି କରିବୁ ତୋର ଆହେ ଧର୍ମ ରାୟ
ତୋର ସହାୟ କରତା ଛନ୍ତି ଦୟାମୟ ।
କୃପାଚାର୍ଯ୍ୟଙ୍କ ନିକଟୁ ଚଳିଲେ ଯୁଧିଷ୍ଠି
ଶୀଘ୍ରେ ଅର୍ଘ୍ୟ ଘେନିଣ କର୍ଣ୍ଣଙ୍କୁ ଯେ ଭେଟି ।
ପାଦାର୍ଘ୍ୟ ଦେଇ ସ୍ତୁତିଲେ ବିନୟେ ଯୁକତେ
କର୍ଣ୍ଣ ବୋଲେ ମନୋବାଞ୍ଛା ଫଳ ମିଳୁ ତୋତେ
ତାହାଙ୍କୁ ବାକ୍ୟେ ଉତ୍ତର କଲେ ଦେବଧର୍ମ
କୁନ୍ତୀ ଜ୍ୟେଷ୍ଠ ପୁତ୍ର ତୁମ୍ଭେ ଆମ୍ଭ ପିତାସମ ।
ଆମ୍ଭର ଆଟକୁ ତୁମ୍ଭେ ଚାଲ ଦେବସ୍ୱାମୀ
ପାଞ୍ଚଭାଇ ଥିବୁ ତୁମ୍ଭ ଆଜ୍ଞା ଶିରମାଣି ।
ଆମ୍ଭର ଥାଟରେ ତୁମ୍ଭେ ହୁଅ ଦେବରାଜା
ଲକ୍ଷେ ନୃପ ସହ ଆମ୍ଭେ କରୁଥିବୁ ପୂଜା ।
କୃଷ୍ଣ ଅନୁଗ୍ରହେ ଭୋଗ କରିବ ସମ୍ପଦ
କୌରବ ଥାଟରେ ଥିଲେ ପଡ଼ିବ ପ୍ରମାଦ ।
କର୍ଣ୍ଣ ବୋଇଲେ ରେ ବାବୁ ଜାଣଇ ଏମାନ
କୌରବ ନୋହିବେ କେବେ ତୁମ୍ଭର ସମାନ ।
ରାଧା ପାଳିଛି ଅଜ୍ଞାନ ବାଳକାଳୁ ମୋତେ
ସେକାଳୁ ମାନଗୋବିନ୍ଦ ମିତ୍ର ମୋ ସଙ୍ଗତେ ।
ବାବୁ ଜନ୍ମହୋଇ ପିତା ମାତା ନ ଜାଣିଲି
ମାନଗୋବିନ୍ଦର ତୁଲେ ପୀରତି କରିଲି ।
ଆଦ୍ୟରୁ ଆଶା କରିଛି ସେ ମୋର ବାହାକୁ
ଅଧର୍ମୀ ହେବି ଏକାଳେ ଛାଡ଼ିଗଲେ ତାକୁ ।
ବ୍ରାହ୍ମଣ ହୋଇଣ ଯେବେ ଜଳେ କରେ ଭୟ
ସ୍ୱାମୀ ଚିତାରେ ନଢଏ ଯେବେ ସ୍ତିରୀ କାୟ ।
କ୍ଷତ୍ରିୟ ହୋଇ ଡରଇ ଯେବେ ସମରକୁ
କେବେ ଧର୍ମ ପାର ନୁହେଁ ଏ ତିନି ଲୋକଙ୍କୁ ।
ଯୁଧିଷ୍ଠି ଦେବ କହିଲେ ଆକାଶକୁ ଚାହିଁ
ହେ ଧର୍ମ ଦେବତା ତୁମ୍ଭେ ସାକ୍ଷୀଥାଅ ରହି ।
ନ ମାନିଲା ମୋର କଥା ସହୋଦର କର୍ଣ୍ଣ
ସମରେ ପଶିଲେ ନିଶ୍ଚେ ହୋଇବ ନିଧନ ।
କର୍ଣ୍ଣର ଯହୁଁ ଶୁଣିଲେ ନରେଶ ବଚନ
ମାନଗୋବିନ୍ଦ ନିକଟେ ମିଳିଲେ ବହନ ।
ଧୃତରାଷ୍ଟ୍ର ଶତପୁତ୍ର ସହିତେ ଶକୁନି
ବସିଛନ୍ତି ଯୁଧିଷ୍ଠିର ଅର୍ଘ୍ୟ କରେ ଘେନ ।
ଧୃତରାଷ୍ଟ୍ରଙ୍କର ପାଦେ ଅର୍ଘ୍ୟଦେଲେ ନେଇ
ପ୍ରଣାମ କରିଲେ ତାଙ୍କ ପାଦତଳେ ଶୋଇ ।
ସଞ୍ଜୟ ବୋଇଲେ ଆହେ କୁରୁ ନରନାଥ
ଯୁଧିଷ୍ଠିର ତୁମ୍ଭ ପାଦେ କଲେ ପ୍ରଣିପାତ ।
ଶୁଣିଣ ଅନ୍ଧ ପରମ କଲ୍ୟାଣ ବାଞ୍ଛିଲେ
ମନୋବାଞ୍ଛା ସିଦ୍ଧ ହେଉ ଅପ୍ରମାଦେ ଭଲେ ।
ବଦସ୍ୱନ୍ତି ଯୁଧିଷ୍ଠିର ଶୁଣ ଆହେ ତାତ
ମୁହିଁ ତୋହର ନନ୍ଦନ ସର୍ବଦା ଭକତ ।
ଅନେକ ଦୁଃଖ ଭୋ ତାତ ପାଇଲି ମୁଁ ବନେ
ଦୁର୍ଗତିରୁ ତରିଲି ମୁଁ ତୁମ୍ଭର ପ୍ରସନ୍ନେ ।

ଅନ୍ତଅନ୍ତ କଷ୍ଟ ଦେବ ପାଇଲ ବଣଠେ
ପୁଣି ଚରଣ ସେବକେ ଅଇଲ ନଗଠେ ।
ଏ ତୋର ଜ୍ୟେଷ୍ଠ କୁମର ଯେ ମାନଗୋବିନ୍ଦ
ସୋଦର ନ ପାଳ ଏହୁ ଭିଆଇଛୁ ଦ୍ୱନ୍ଦ୍ୱ ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ହସ୍ତିନା ବାରୁଣା
ଜଇନ୍ତା ଏ ପଞ୍ଚ ଜମ୍ବୁଦ୍ୱୀପକୁ ଧାରଣା ।
ଏଥକୁ ମାଗିଲ ଦେବ ପାଞ୍ଚଖଣ୍ଡି ପଡ଼ା
ନବଶ କଲ ନ ଦେଇ କହି ବାକ୍ୟ ଚଡ଼ା ।
ଗଲେ ଧୌମ୍ୟ ପୁରୋହିତ ବିଦୁର ସଞ୍ଜୟ
ଏ ଉତ୍ତରୁ ପେଷିଥିଲ ପୁଣି ଦେବବ୍ରସ୍ଥ ।
ଏହାଙ୍କ ବାକ୍ୟେ କର୍ଣ୍ଣିଲ ଏ ମାନଗୋବିନ୍ଦ
ଧର୍ମ ତ୍ୟାଗକର ଦେବ ଆଶ୍ରେକଲ ଦ୍ୱନ୍ଦ୍ୱ ।
ହେ ତାତ ସୋମବଂଶକୁ ଗୁଡ଼ଲଟି ଧର୍ମ
ନଷ୍ଟିନ୍ତ ବେଳକୁ ଆସି ହୋଇଲ ସଂଗ୍ରାମ ।
ବଂଶ ନାଶ କଥାରେ ସେ ପଶିଲଟି ତାତ
ତୋହର ଥାଆନ୍ତେ ଦେବ ଘଟୁଛି ଅନର୍ଥ ।
ଏ ସମୟେ ଆହେ ତାତ କହ କସ ବୁଦ୍ଧି
ପ୍ରମାଦ ନ ପଡ଼ୁ ତାତ ଯୁଦ୍ଧେ କର ସନ୍ଧି ।
ଏହା ଶୁଣି ଯୁଧିଷ୍ଠିରେ କହେ ଧୃତରାଷ୍ଟ୍ର
ଆଦ୍ୟହୁଁ ଯେତେ କହିଲ ନ ମାନିଲ ଦୁଷ୍ଟ ।
ବାବୁ ତୁହିରେ ପଣ୍ଡିତ ସମ୍ଭାଳିଲୁ ରାଗ
ବହୁ ତୀର୍ଥ ବ୍ରତ କରି କଲୁ ଋଷିସଙ୍ଗ ।
ଯୁଧିଷ୍ଠି ବୋଇଲେ ତାତ ତୋର ପରସାଦେ
ବହୁତୀର୍ଥ ବ୍ରତ କଲି ବୁଲି ଅପ୍ରମାଦେ ।
ଧର୍ମରେ କୀର୍ତ୍ତି ପାଇଲି ସବୁକଥା ଭଲେ
ଦୁର୍ଗତିରୁ ତରିଲି ମୁଁ ଭାଇସହ ଭଲେ ।
ଏବେ ମୋର ପାଞ୍ଚପଡ଼ା ଦିଅ ଆହେ ତାତ
ଭାଇମାନଙ୍କୁ ଘେନଣ ରହିବି ନିଶ୍ଚିନ୍ତ ।
ଏହା ଶୁଣି ଧୃତରାଷ୍ଟ୍ର ଦୁର୍ଯ୍ୟୋଧନେ ଚାହିଁ
ବୋଇଲ ଏବେ ମୋ ବୋଲ କର ବାବୁ ତୁହି
ଭାଇ ଭାଇରେ କପାଇଁ ଦ୍ୱନ୍ଦ୍ୱ ଆରମ୍ଭିବ
ପାଣ୍ଡବେ ପଡ଼ାଏ ଦିଅ କଳହ ତୁଟିବ ।
ଏହା ଶୁଣି ରାଗେ ବୋଲେ ମାନଚକ୍ରବର୍ତ୍ତୀ
ବିନାଯୁଦ୍ଧେ ନ ଦେବି ମୁଁ ସୂଚିମୁନେ କ୍ଷିତି ।
ପୁତ୍ରବାକ୍ୟେ ଧୃତରାଷ୍ଟ୍ର ବିଷାଦିତ ହେଲ
ସଞ୍ଜୟ ମନ୍ତ୍ରୀକି ଘେନି ଘରକୁ ଅଇଲ ।

ଏଥୁ ଅନନ୍ତରେ ଶୁଣ ବଳଙ୍କ ରାଜନ
ଯୁଧିଷ୍ଠି ବୋଇଲେ ତହୁଁ ଶୁଣ ଦୁର୍ଯ୍ୟୋଧନ
ପଣ୍ଡିତ ହୋଇ ଦୁଷ୍ଟଙ୍କ ସଙ୍ଗେ କଲୁ ପ୍ରୀତ
ତସ୍କରେ ନାଶ କଲେ କି ସେ ଦେବେ ସବୁନ୍ତ
ସୁପୁତ୍ର ହୋଇ ରାଗକୁ ନ ଚେତିଲୁ ବାବୁ
ବସ୍ତ୍ର ଶୃଗାଳକୁ ତୁହି ଏକକରି ଭାବୁ ।
ମୋର କଥା ଏକ ଶୁଣ ମାନଚକ୍ରବର୍ତ୍ତୀ
ତୁ ମୋର ସୋଦରଯେଣୁ ବୋଲେହୋଇପ୍ରାର୍ଥୀ
ପାଞ୍ଚଖଣ୍ଡି ପଡ଼ା ମୋତେ ଦିଅ କୁରୁପତି
ଭାଇଙ୍କି ଘେନି ରହିବି ଏହି ମୋର ମତି ।
କୋଣକେ ପଡ଼ିବ ପାଞ୍ଚପଡ଼ା ମୁଁ ପାଇଲେ
ତୋର ମୋର ପ୍ରୀତି ଥିବ ସବୁଦିନେ ଭଲେ ।
ଦୁର୍ଯ୍ୟୋଧନ ବୋଲେ ମୋତେ ନ ବୁଝା ଏମାନ
ବିନା ଯୁଦ୍ଧରେ କି ଦେବି ଏକଗୋଟି ଗ୍ରାମ ।
ପୁଣି ପୁଣି ଯୁଧିଷ୍ଠିର ଏହା ପ୍ରକାଶନ୍ତି
ଚାରିଖଣ୍ଡ ପଡ଼ା ମୋତେ ଦିଅ କୁରୁପତି ।
ବୋଇଲ ମାନଗୋବିନ୍ଦ ଶୁଣ ରେ ଯୁଧିଷ୍ଠି
ବିନା ସମରେ ନ ଦେବି ଘର ଏକଗୋଟି ।
ପୁଣି ଯୁଧିଷ୍ଠିର ହେବ କରିଲେ ପ୍ରକାଶ
ତିନିଖଣ୍ଡ ଗ୍ରାମ ମୋତେ ଦିଅ କୁରୁଈଶ ।
ତୋର ଅପଚୟେ ଦେବ ମୋର ବଡ଼ବ୍ୟଥା
ମୋ ପରାଜୟ ନୁହେଁ କି ତୋର ଲଜ୍ଜାକଥା
ମାନଗୋବିନ୍ଦ ବୋଇଲ ସମର ନୋହିଲେ
ଅର୍ଦ୍ଧଘର ନ ଦିଅଇ ଜାଣ ଧର୍ମବାଳେ ।
ଯୁଧିଷ୍ଠି ବୋଇଲେ ମୁହିଁ ତୋହର ସୋଦର
ବେନିଖଣ୍ଡ ପଡ଼ା ଦିଅ କଥା ମାନ ମୋର ।
ମାନଗୋବିନ୍ଦ ବୋଇଲ ସମର ନ କଲେ
ଘରକରୁ ତଳଠେ ମୁଁ ନ ଦିଅଇ ଭଲେ ।
ଯୁଧିଷ୍ଠିର ହେବ ପୁଣି କଥନ ପ୍ରକାଶି
ସୋଦର ଚଳିବା ପାଇଁ ପଡ଼ାଏ ଦିଅସି ।
ମାନଗୋବିନ୍ଦ ବୋଇଲ ସୂଚିମୁନେ ସ୍ଥାନ
ବିନା ସମରରେ ମୁହିଁ ନ ଦେବଟି ଜାଣ ।
ଯୁଧିଷ୍ଠି ବୋଇଲେ କର ବଂଶରକ୍ଷା ବୁଦ୍ଧି
ଗ୍ରାମେକ ଦେଇ ସଂଗ୍ରାମ କଥା କର ସନ୍ଧି ।
ଦୁର୍ଯ୍ୟୋଧନ ବୋଲେ ଯୁଦ୍ଧେ ହେଲେ ଅସମର୍ଥ
ଭରଣଦନ୍ତେ ଶରଣ ପଶ ପଞ୍ଚଭ୍ରାତ ।

ଏ ପଞ୍ଚକଣ୍ଟକେ ତୁମ୍ଭେ ହୁଅ ନୃପମଣି
ବନକୁ ଯିବ ମୁଁ ଘେନେ ଶତଭ୍ରାତ ଘେନ ।
ଯୁଧିଷ୍ଠି ବୋଇଲେ ପୃଥ୍ୱୀ କରିଛୁ ଧାରଣ
ମୁହିଁ ଶରଣାଗତକୁ କରିବ କାରଣ
ତୁହି ଯେ ମଧୁପିଙ୍ଗଳ କର୍କଶ ତୋ ମତ
କୁଳକ୍ଷୟ ମନ୍ତ୍ରୀ ବାକ୍ୟେ ହେଉଛୁ ଅପ୍ରୀତ ।
ମାନଗୋବିନ୍ଦ ବୋଇଲା ଶୁଣ ଯୁଧିଷ୍ଠିର
ଏ କଥାମାନ ନ କହ ଆଗରେ ମୋହର ।
ମଧୁପାଶେ ଆସିଥିଲେ ହରି ଯେତେବେଳେ
ଦୃଢ଼ବାକ୍ୟେ କହିଥିଲି ମୁହିଁ ସଭାସ୍ଥଳେ ।
ବିନାଯୁଦ୍ଧେ ନ ଦେବ ମୁଁ ସୂଚୀମୂନେ ପୃଥ୍ୱୀ
ତହିଁକି ସାକ୍ଷୀ ଅଛନ୍ତି ଦେବ ଶିଖିପତି ।
ଶୁଣି ଯୁଧିଷ୍ଠିର କଲେ ବଚନ ପ୍ରକାଶ
ଯୁଦ୍ଧେ ଆଶା ବଳାଇଲୁ ହେବୁ ନିଶ୍ଚେଁ ନାଶ
ଦୁର୍ଯ୍ୟୋଧନବୋଲେ ଯେବେଜଣିବୁତୁମୋତେ
ଏ ପଞ୍ଚକଣ୍ଟକେ ରାଜା ହୋଇବୁ ନିଶ୍ଚିନ୍ତେ ।
ମୁଁ ଯେବେ ତୁମ୍ଭ ପାଞ୍ଚଙ୍କୁ ପାରେ ଯୁଦ୍ଧେ ମାରି
ତେବେ ତ ପଞ୍ଚକଣ୍ଟକ ହୋଇବ ମୋହର ।
ଯୁଧିଷ୍ଠି ବୋଇଲେ ହେଲା ତୋର ମୋର ସତ୍ୟ
ରାଜାଦି ତୋର ସୈନ୍ୟଙ୍କୁ କରିଦିଅ ତ୍ୟକ୍ତ ।
ଆପଣା ଆପଣା ମଧ୍ୟେ ହୋଇଲୁ ବିବାଦୀ
ଅଦୋଷୀ ଲୋକ କିପାଇଁ ପକାଇବା ଛେଦି ।
ତୁ ଶତଭ୍ରାତାଙ୍କୁ ନେଇ ରହ ଆଡ଼କରେ
ମୁଁ ପାଞ୍ଚଭାଇଙ୍କୁ ଘେନି ରହେ ପାଖକରେ ।
ଆବର ବନ୍ଧୁ କୁଟୁମ୍ବ ନାଶିବା କି ଅର୍ଥେ
ସେମାନେ ବୃଥା ବିନାଶ ହେବେ କି ନିମନ୍ତେ
ତୋରମୋର ବେନିଙ୍କରଯେଜଣି ପାରେ ବଳେ
ଜାଣିବା ପୁଣ୍ୟ ଉଦିତ ତାର ଧର୍ମବଳେ ।
ମାନଗୋବିନ୍ଦ ବୋଇଲା ନ କହ ଏମନ୍ତ
ବିନା ସୈନ୍ୟ ସାମନ୍ତରେ ଯୁଦ୍ଧ ଅବିହିତ ।
ଦୁର୍ଯ୍ୟୋଧନ ମୁଖୁ ଏହା ଶୁଣି ଯୁଧିଷ୍ଠିର
କୌରବ ସୈନ୍ୟଙ୍କୁ ଚାହିଁ କଲେ ସେ ଉତ୍ତର
ଆହେ କୁରୁକ୍ଷେତ୍ର ମଧ୍ୟେ ଅଛ ଯେତେ ଯୋଧି
ମୁହିଁ କଥାଏ ପୁଚ୍ଛିବି ଦିଅ ମୋତେ ବୁଦ୍ଧି ।
ଏକ ମାତାପିତା ପାଣ୍ଡୁ ଧୃତରାଷ୍ଟ୍ରଙ୍କର
ଆମ୍ଭେମାନେ ତାହାଙ୍କର ଅଟୁ ଯେ କୁମର ।
ଯୁକତେ ଭାଗ ମୋହର ଅଛି ପଞ୍ଚସ୍ଥଳ
ନ ଦେଇଣ ଦୁର୍ଯ୍ୟୋଧନ କରୁଅଛି କଳି ।
ବହୁ ଯୋଦ୍ଧା ପଡ଼ିବେ ଏ ରଣକ୍ଷେତ୍ର ମଧ୍ୟେ
ବ୍ରାହ୍ମଣ କ୍ଷତ୍ରିୟ ଆଦି ପଡ଼ିବେ ଏ ଯୁଦ୍ଧେ ।
ଦୋଷୀ ଅଦୋଷୀ ଏଠାରେ ବହୁ ନାଶହେବ
ଏହି ହତ୍ୟାଦୋଷମାନ କାହାକୁ ଲାଗିବ ।
ଯ୍ୱା ଶୁଣି କୌରବ ଥାଟେ କଲେ ଧନ୍ୟ ଧନ୍ୟ
ସୋଦର ଭାଗ ନ ଦେଇ ହୁଅ ଅନ୍ୟୋଅନ୍ୟ ।
ଅହୋବଳ ଥାଟ ମଧ୍ୟେ ନାହିଁ ତୋ ବାଞ୍ଛଣା
ଯେଉଁ କଥା କହିଲୁ ତୁ ଏ ପ୍ରମାଣ ସିନା ।
ଆହେ ଧର୍ମରାଜ ଦୋଷ ନାହିଁ ଯେ ତୁମ୍ଭର
ଧର୍ମ ହେତୁରୁ ଜିଣିବ ତୁମ୍ଭେ ଏ ସଂସାର ।
ଆକାଶୁଁ ବାଣୀ ଶୁଭିଲା ଏସନ ପ୍ରକାର
ଯାହା କହିଲ ସେ କଥା ଅଟେ ନିରାଧାର ।
ଦୁଇଥାଟ ମଧ୍ୟେ ରହି ଟେକି ଦୁଇଭୁଜ
ପୁଣ ଏପରି କହିଲେ ପାଣ୍ଡବ ଅଗ୍ରଜ ।
ମାନଗୋବିନ୍ଦର ତୁଳେ ଅଛ ଯେତେ ସାହା
ଅନେକ ଦେଶର ଯୋଦ୍ଧା ଆଉ ନରନାହା ।
ଦୁର୍ଯ୍ୟୋଧନ ନରପତି ଉପେକ୍ଷିଲା ଧର୍ମ
ଭାଇଙ୍କୁ ଭାଗ ନ ଦେଇ କରିବ ସଂଗ୍ରାମ ।
ଦୁଇବଳ ମଧ୍ୟେ ମୁହିଁ ଏପରି କହୁଛି
ଅପଖ୍ୟାତି ଦୋଷ ମୋତେ ନ ଦେବଟି କିଛି ।
କୁରୁଥାଟ ଜୀବନକୁ ଯାର ଅଛି ଆଶ
ଧର୍ମ ଆଶ୍ରା କରି ମୋର ବାହୁତଳେ ପଶ ।
ଦୁର୍ଦ୍ଧର୍ଷ ବୋଲିଣ ସାନ ଦୁର୍ଯ୍ୟୋଧନ ଭ୍ରାତ
ତିନସସ୍ର ଯୋଦ୍ଧା ତୁଲେ ଗଜ ଅଇବ୍ରତ ।
ଦୁର୍ଯ୍ୟୋଧନ ଥାଟେ ଥିଲା ସେହି ଆଗୁଆଣି
ଯୁଧିଷ୍ଠିଠାରେ ଶରଣ ପଶିଲା ସେକ୍ଷଣି ।
ଧର୍ମପୁତ୍ର ଦେଖି ତାକୁ ହେଲେ କୃତକୃତ୍ୟ
ତା ମସ୍ତକେ ଯୁଧିଷ୍ଠିର ଦେଲେ ନିଜ ହସ୍ତ ।
ବୋଇଲେ ତୋ ନିଜ ବାଞ୍ଛା ପୂରୁ ଆରେବାବୁ
ଧୃତରାଷ୍ଟ୍ର ବଂଶ ତୁହି ରକ୍ଷା ଯେ କରିବୁ ।
ଯେତେଦିନଯାଏ ମୋର ପିଣ୍ଡେ ଥିବ ପ୍ରାଣ
ଚିରଜୀବୀ ହେବୁ ମୋର ବଳମଧ୍ୟେ ଜାଣ ।
ଦୂରରେ ଥାଇ ଦେଖିଲେ ପାଣ୍ଡବଙ୍କ ସେନା
ଶରଣପଞ୍ଜର ବୋଲି ଉଡ଼ାଇଣ ବାନା ।

ଦର୍ପ ମଳନ ହୋଇଲା କୁରୁସୈନ୍ୟଙ୍କର
ସର୍ବେ ସାଧୁ ସାଧୁ କଲେ ପଣ୍ଡୁ ପୁତ୍ରଙ୍କର ।
ଧନ୍ୟ କହି କରିଲେକ ଚହୁଁ ଶଙ୍ଖଧ୍ୱନି
ଧର୍ମେ ଆବୋରି ରହିଲେ ଦୁର୍ଦ୍ଧର୍ଷ ସଇନ ।
ଚହୁଁ ଶକୁନି ବୋଇଲା ଆହେ ଚକ୍ରବର୍ତ୍ତୀ
କେମନ୍ତ ପ୍ରାପ୍ତ ମଣୁଛ ଦୁର୍ଦ୍ଧର୍ଷର ଗତି ।
ତୁମ୍ଭ ଶତଭ୍ରାତାଙ୍କର ଆତ୍ମା ଯେ ଏକଇ
ଦେଖ ଯୁଧିଷ୍ଠିରେ ଯାଇ ଦୁର୍ଦ୍ଧର୍ଷ ଖଟଇ ।
ଆଠ ମଧ୍ୟରେ ସେହି ଯେ ଆଗୁଆଣି ଥିଲା
ଏବେ ଯାଇ ଯୁଧିଷ୍ଠିରେ ଶରଣ ପଶିଲା ।
କୁରୁପତି ଏହା ଶୁଣି କୁପିତ ହୋଇଲା
ଦୁର୍ଦ୍ଧର୍ଷଙ୍କୁ ଧରିବାକୁ ବେଗେ ଆଜ୍ଞାଦେଲା ।
ତାହା ଶୁଣି ଦୁଃଶାସନ ଧାଏଁ ବାହୁଡୋଳି
ରଡ ରଡ ରେ ଦୁର୍ଦ୍ଧର୍ଷ କହୁଣ ଓଗାଳି ।
ନାରାଚ କୁନ୍ତ ମୂଷଳ ଅସିପତ୍ର ଯଷ୍ଟି
ଘେନ ସବୁ ଯୋଦ୍ଧାମାନେ ଘେନଗଲେ ଉଠି ।
ଦୁର୍ଦ୍ଧର୍ଷକୁ ମାରିବାକୁ ସମସ୍ତେ ଅଇଲେ
କହୁ କହୁ ଲକ୍ଷ ଲକ୍ଷ ଯୋଦ୍ଧାଏ ବେଢ଼ିଲେ ।
ଦୁର୍ଦ୍ଧର୍ଷ ସଙ୍ଗରେ ଥିଲେ ଧର୍ମଙ୍କ ନନ୍ଦନ
ତାଙ୍କ ଚଉପାଶେ ବେଢ଼ିଗଲେ କୁରୁସୈନ୍ୟ ।
ଏହିପରି ସମୟରେ ମାନଚକ୍ରବର୍ତ୍ତୀ
ଯୁଧିଷ୍ଠିରେ ମାରିବାକୁ ବୋଇଲା ଝଟତି ।
ଏହା ଦେଖି ଯୁଧିଷ୍ଠିର ମନେ ବିଚାରିଲେ
ଆପଦ ପଡ଼ଇ ନଷ୍ଟେ ମନା ନ ମାନିଲେ ।
ସାଧୁ ସାଧୁ ଆରେ ଖିମା ବାଟିଲୁ ଆସନ୍ତେ
ମୂର୍ଖ ଅବିବେକ ବୋଲି ଭାବିଲି ମୁଁ ଚିତ୍ତେ ।
ସାନ ବଡ଼ ଲୋକ କଥା ଯେହୁ ନ ମାନଇଁ
ନିଷ୍ଟୟ ନିଷ୍ଟୟ ତାକୁ ପ୍ରମାଦ ପଡ଼ଇ ।
ଯୁଧିଷ୍ଠିର ବାକ୍ୟ ଶୁଣି ଦୁର୍ଦ୍ଧର୍ଷ କହଇ
ମୋହର ଥାଆନ୍ତେ ପ୍ରଭୁ କିଛି ଭୟ ନାହିଁ ।
ଗାନ୍ଧାରୀନନ୍ଦନ ଚହୁଁ କରେ ଅସ୍ତ୍ର ଧରି
କୌରବ ସେନାମାନଙ୍କୁ ଆଗରେ ଆବୋରି ।
ତାହାର ସଙ୍ଗେ ଅଛନ୍ତି ଅଇବ୍ରତ ଯୋଧୀ
ଦୁର୍ଦ୍ଧର୍ଷ ସହ ସମସ୍ତେ ଅସ୍ତ୍ରମାନ ବିନ୍ଧି ।
ଯୁଧିଷ୍ଠିର ସୁମରନ୍ତି ଶ୍ରୀ ସର୍ବମଙ୍ଗଳେ
ତୁହି ମାତ ରକ୍ଷାକର ଏ ସଙ୍କଟବେଳେ ।

ଶତ୍ରୁନିସୂଦନ ଜୟକାରୀ ଗୋ କାମାକ୍ଷି
ଦୁର୍ଗତିତାରିଣୀ ତୁହି ଅଟୁ ସର୍ବସାକ୍ଷୀ ।
ତୁହି ମାତ ମାହେଶ୍ୱରୀ ପରମମଙ୍ଗଳା
ସର୍ବକାର୍ଯ୍ୟ ସିଦ୍ଧି ହୁଏ ସ୍ମରନ୍ତେ ହିଙ୍ଗୁଳା ।
ଜଗତଜନମୋହିନୀ ହରୁ ବିଘ୍ନ ଭୟ
ସଙ୍କଟେ ଡାକିଲେ ମାତ ଦେଉ ତୁ ଅଭୟ ।
ଦୁରନ୍ତ ଦଳନ କରି ପାଳୁ ତୁ ନିଜନେ
ଭକ୍ତେ ଜପୁଥାନ୍ତି ନିତି ତୋ ନାମକୁ ଧ୍ୟାନେ ।
ସମରସଂହାରିଣୀ ଗୋ ମାତଙ୍ଗି ଅଭୟେ
ଶସ୍ୟଳଜନତାରଣୀ ଅଟୁ ମହାମାୟେ ।
ଶ୍ରୀଚଣ୍ଡୀ ଶାରଳା ମାଗୋ ଝଙ୍କଡ଼ବାସିନୀ
ମୋର କାଳପାଶୀ ଫେଡ଼ ଦୁର୍ଗତିନାଶିନୀ ।
ବୃଦ୍ଧକାଳରେ କହଇ ଶ୍ରୀ ଶାରଳା ଦାସ
ଜନ୍ମେ ଜନ୍ମେ ତୋର ପାଦେ ରହୁ ମୋର ଆଶ

---

## ଦୁର୍ଦ୍ଧର୍ଷ ସହିତ କୌରବମାନଙ୍କର ଯୁଦ୍ଧ ଓ ତାରାକ୍ଷି ଡମ୍ବୁ ଘଣ୍ଟି ଦ୍ୱାରା ରକ୍ଷା

ଶୁଣ ବୈବସ୍ୱତ ମନୁ କହନ୍ତି ଅଗସ୍ତି
ମଙ୍ଗଳାଙ୍କୁ ଧ୍ୟାନକଲେ ଧର୍ମ ନରପତି ।
ମଙ୍ଗଳାଙ୍କ ନାମ ହୃଦେ କରନ୍ତେ ଅଭ୍ୟାସ
ଜୟ ଜୟ ବାଣୀ କଲେ ଆକାଶେ ତ୍ରିଦଶ ।
ଅଦଭୁତ ଶୁଭିଲା ଶୁଦ୍ଧ ହୁଳହୁଳି
ଦେବେ ଦେବଣ ଅଇଲେ ଶୂନ୍ୟେ ଅର୍ଘ୍ୟଥାଳ
ଶୂନ୍ୟେ ଉଡୁଥିଲା ଭଦଭଦଳିଆ ପକ୍ଷୀ
ଉତ୍ତର ଦିଗେ ଦେଖିଲେ ଦେବୀ ଯେ କାମାକ୍ଷୀ
ଉଭୟ ଆଠ ମଧ୍ୟରେ ହେଲା ଶଙ୍ଖଧ୍ୱନି
ଯୁଧିଷ୍ଠି ବିଣି ଦୁର୍ଦ୍ଧର୍ଷ ଉଠି ଆଠ ସେନ ।
ଧର୍ମଙ୍କର ବଚନରେ ଧୃତରାଷ୍ଟ୍ରସୁତ
ସଭୁରବଳ ଧନୁକୁ ଧରି ବଳବନ୍ତ ।
ହୋଣୁ ଶଙ୍ଖଚିଲ ପକ୍ଷ ଶର ତୀକ୍ଷ୍ଣମୁନା
ବିନ୍ଧନ୍ତେ ଗିରିବରର ଫୁଟେ ବଜ୍ରସେହ୍ନା ।
ଅଶୀ ସହସ୍ର ନାରାଚ ଭରି ବେନି ହୋଣେ
କୌରବ ଆଠ ଆବୋରି ରହେ ଏକା ଜଣେ
ଅଇବ୍ରତ ପିଠିକି ଯୋଦ୍ଧା ଅଛନ୍ତି ତାହାର
ପ୍ରଚଣ୍ଡ ବଳୀର ସମ ଗାନ୍ଧାରୀ କୁମର ।

ମଦାନ୍ଧକା ବାଦେ ଯେହ୍ନେ ଇନ୍ଦ୍ର ତେଜ ଦିଶେ
ଦୁର୍ଦ୍ଧଷର ମହିମା ଯେ ତେସନ ପ୍ରକାଶେ ।
ବିନ୍ଧିଲେ ନାରାଚମାନେ ଏକମୁଖ ହୋଇ
ଯୋଦ୍ଧାଙ୍କର ତେଜ ସୂର୍ଯ୍ୟ ସମାନ ଦିଶଇ ।
କନାଉଜରାଜା ଯେ କର୍ଣ୍ଣମାଧବସେନ
ତାହାର କୁଳେ ମଇତ୍ର ରାଜା ଦୁର୍ଯ୍ୟୋଧନ ।
ମଇତ୍ରୀ ବାନ୍ଧିଲା ସେହି ପ୍ରୟାଗ ତୀର୍ଥରେ
ଆଗୁଆଣି ହେଲା ସେହୁ ମଇତ୍ର ପକ୍ଷରେ
ମର୍ତ୍ତ ତେକ ଯୋଦ୍ଧା ଚଢ଼ି ମତ୍ତନାଗ ପିଠି
ଗଜ ଧୁଆଁଇଲେ ଧରି ଧନୁଶର ମୁଷ୍ଟି ।
ଜଳଧାରରେ ଯେସନେ ଝଟକେ ବିଜୁଳି
ତେସନେ ଅସ୍ତ୍ର ବିନ୍ଧିଲେ ସେହି ସର୍ବବଳୀ ।
ଆଗୁଆଣୀ ଥାଟେ ଥିଲା ମାଧବ ନୃପତି
ଦୁର୍ଦ୍ଧଷ ସମ୍ମୁଖରେ ଯାଇ ମିଳିଲା ଝଟତି ।
ରେ ରେ କରିଣ ଦୁର୍ଦ୍ଧଷ କୁମର ଉଠିଲା
ମାଧବ ନୃପତି ପରେ ଗଦା ପ୍ରହାରିଲା ।
ମାଧବ ଆରୋହିଥିଲା ନୀଳକଣ୍ଠ ଗଜେ
ତାହା ଦେହରେ ତାଳମ୍ବା ରତ୍ନମଣି ସାଜେ ।
ସେହି ଗଜକୁ ବିନ୍ଧିଲା ଶର ତୀକ୍ଷ୍ଣମୁନା
ଏକା ପ୍ରହାରେ ଫୁଟିଲା ଗଜବର ସେହ୍ନା ।
ଦୁର୍ଦ୍ଧଷ ସେହି ଗଜକୁ ଧରିଣ ପ୍ରତ୍ୟକ୍ଷେ
ବୁଲାଇ ଗୁଡ଼ି ଦିଅନ୍ତେ ଗଲା ଅନ୍ତରୀକ୍ଷେ ।
ଉଭୟ ଦଳ ଦେଖିଲେ ଦୁର୍ଦ୍ଧଷ ମହିମା
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଦ୍ରୋଣ କୃପବର୍ମା ।
ଅନ୍ତରୀକ୍ଷକୁ ଉଠନ୍ତେ ହସ୍ତୀ ଗଳଗାଜ
ଦେଖିକରି ଯୋଦ୍ଧାମାନେ ପଳାଇଲେ ଭାଜ ।
ବୁଲାଇ ଫିଙ୍ଗିଲା ଗଜ ନୃପତି ସହିତେ
ସେ ଯାଇ ପଡ଼ିଲେ ମାନଗୋବିନ୍ଦ ଅଗ୍ରତେ ।
ଦୁର୍ଦ୍ଧଷର ବୀରପଣ ଦେଖିଲେ ସାକ୍ଷାତେ
ବିସ୍ମୟ ହୋଇଣ ରାଜା ଶକୁନି ସହିତେ ।
ପୁଣି ତାର ସୈନ୍ୟମାନେ ଉଠନ୍ତେ ଗଳଗାଜ
ମାଧବସେନର ସୈନ୍ୟ ପଳାଇଲେ ଭାଜ ।
ସିଂହ ଦେଖି ପଳାବନ୍ତି ଯେହ୍ନେ ଗଜଯୂଥେ
ତେହ୍ନେ ପଳାନ୍ତି ଦୁର୍ଦ୍ଧଷ ପ୍ରହାରର ଘାତେ ।
ଅସମ୍ଭାଳେ ପଳାବନ୍ତି ରାଜାର ସଇନ
ପୁଣି ପ୍ରହାରେ ଦୁର୍ଦ୍ଧଷ ସେନାପତି ତିନ ।
ମାଧବର ସେନାପତି ଜୟ ଯେ ବିଜୟ
ହରି ହର ବୋଲି ତାର ଦୁଇଟି ତନୟ ।
ଏହି ଚାରିଜଣ ଯହୁଁ ଅତ୍ୟନ୍ତ ଅଭିଜ୍ଞ
ଦୁର୍ଦ୍ଧଷର ତୁଲେ ଯାଇଁ କଲେକ ସଂଗ୍ରାମ ।
ଦୁର୍ଦ୍ଧଷର ମହିମା ହୋ ବନେ କେହ୍ନୁ କହି
କେଶରୀ ଆଗରେ ଗଜଯୂଥ କି ରହଇ ।
ବୁଲାଇଣ ବେନି ଗଦା ଧରି ବେନିକରେ
ଦୁହିଙ୍କ ଉପରେ ନେଇ ପିଟେ ଧାଡିକାରେ ।
ଗଦା ଘାତେ ଦୁହିଁଙ୍କ ଦେହ ଗଲା ଫୁଟି
ଗଜ ଯୋଦ୍ଧା ରଉତାଦି ପଡ଼ିଲେ ଭୁଲେଟି ।
ପୁନଶ୍ଚ ବଜ୍ର ପ୍ରହାରେ ମଲେ ହରିହର
ତାଙ୍କ ସଙ୍ଗେ ମଲେ କେତେଶତ ଯୋଦ୍ଧା ତାର ।
ରୁଧିରରେ ଜର ଜର ହେଲା ତାଙ୍କ କାୟେ
ଟେଶର ଦିଶେ ମନ୍ଦାର-କୁସୁମର ପ୍ରାୟେ ।
ବହୁତ ବିପଦ ହେଲା ଯେ କୌରବ ଭ୍ରାତା
ଦେବଙ୍କୁ ଦୁର୍ଲ୍ଲଭ ଏହୁ ସମର ବାରତା
ପବନଗତିରେ ଶର ବିନ୍ଧନ୍ତି ଯୋଦ୍ଧାଏ
ପଡ଼ିଲେ ତହିଁ ଅନେକ ଦେଶ ନୃପରାୟେ ।
ସୈନ୍ୟଙ୍କ ଭଙ୍ଗ ଦେଖିଣ ସେ ମାନଗୋବିନ୍ଦ
ଘିଲେ କର ମାରି ବୋଲେ ମୋ କରମ ମନ୍ଦ
ଅଧର୍ମରେ ଅପଚୟ ହେଲା ମୋର ଆଜ
ପ୍ରଥମ ରଣରେ ନାଶହେଲା ସର୍ବ କାର୍ଯ୍ୟ ।
ଏତେ ବିଚାରି କୁପିତ ହୋଇ କୁରୁଗଣ
ଅଶୀଲକ୍ଷ ଯୋଦ୍ଧା ଘେନି ଉଠିଣ ଆପଣ ।
ଦୁର୍ଦ୍ଧଷ ସମ୍ମୁଖରେ ମିଳି ମାନଚକ୍ରବର୍ତ୍ତୀ
ବୋଇଲାରେ ସହୋଦରେ କଲୁ ତୁ ଅକୀର୍ତ୍ତି
ଆଜ ମୁଁ ତୋତେ ପେଷିବି ସଂଯମନୀ ପୁର
ଇଷ୍ଟଦେବତାଙ୍କୁ ତୋର ସୁମରଣ କର ।
ଦୁର୍ଦ୍ଧଷ ବୋଇଲା ତୁମ୍ଭେ ଦେବ ସ୍ୱାମୀ ଶୁଣ
ସୋମବଂଶୀ ଉଦ୍ଧାରଣ ଅତ୍ୟନ୍ତ ଆପଣ ।
ଯାବତ ଜୀବଙ୍କ ମଧ୍ୟେ ଜଗନ୍ନାଥ ମୂଳ
ତାହାଙ୍କର ପ୍ରସାଦରେ ବର୍ତ୍ତନ୍ତି ସକଳ ।
ପାଣ୍ଡବକଳ ଶ୍ରୀକୃଷ୍ଣ ଆଡବୋରିବେ ସବୁ
ଶୂରବନ୍ତ ହୋଇ ତୁମ୍ଭେ କି କରିବ ବାବୁ ।
କାଳଯବନ ନରକ କଂସ ଅଷ୍ଟମଲ୍ଲ
ଯାହାର ହସ୍ତରେ ମରି ଗଲେ ସ୍ୱର୍ଗଆଳ ।

ଅର୍ଜ୍ଜୁନର ରଥେ ଦେଖ ଶଙ୍ଖ ଚକ୍ରଚିହ୍ନ
ଯେଉଁ ରଥେ ଧ୍ୱଜେ ଦେଖ ସେ କପିକେତନ
ଆହେ ଭ୍ରାତ ଏହି କଥା ନ ବିଚାର ତତ୍ତ୍ୱେ
ତେତିଶକୋଟି ଦେବତା ଛନ୍ତି ଯାର ରଥେ ।
ହେ ସ୍ୱାମି ତୁମ୍ଭଙ୍କୁ ମୁହିଁ କରଇ ଦର୍ଶିମା
ଅର୍ଦ୍ଧରାଜ୍ୟ ଦେଇ ତାଙ୍କୁ କର ସମାଧାନ ।
ନଷ୍ଟସ୍ୱେ ପାଣ୍ଡବେ ଯେବେ ହୋଇବ ବିବାଧ
ବହୁ ହତ୍ୟାଦୋଷ ତୁମ୍ଭେ ପାଇବ ଅବଧି ।
ଦୁର୍ଦ୍ଧର୍ଷ କହନ୍ତେ କୋପି ଉଠେ ମହାବୀର
ରାଗରେ ଗର୍ଜ୍ଜିଲା ଯେହ୍ନେ କାଳସର୍ପ ପ୍ରାୟ ।
ଦୁର୍ଯ୍ୟୋଧନ ସଙ୍ଗେ ଥିଲେ ଦଶସହସ୍ର ରଥୀ
ଧର୍ମ ତେଜ ଦୁର୍ଦ୍ଧର୍ଷକୁ ଶର ସେ ବିନ୍ଧନ୍ତି ।
ତାହା ଦେଖି ଦୁର୍ଦ୍ଧର୍ଷ ଯେ କହଇ ଏମନ୍ତ
ଦଶଲକ୍ଷ ଯୋଦ୍ଧା ତୁମ୍ଭେ ମୁହିଁ ଏକାମାତ୍ର ।
ଦୁର୍ଦ୍ଧର୍ଷ ଆଧାନ କଲା ବହୁତର ଶର
ବା ଜଲ୍ଲ ସେ ରଣଗୋଳ ହୋଇଲା ଧନ୍ଦୋଳ
ପାଦଶତ ଯୁଧିଷ୍ଠିର ଉଭା ହୋଇଛନ୍ତି
କୁରୁସୈନ୍ୟମାନେ ତାଙ୍କୁ ବେଢ଼ି ରହିଛନ୍ତି ।
ସମର କରନ୍ତେ ତହିଁ ପଡ଼ିଲା ଚହଳ
କୃଷ୍ଣ ପଚାରିଲେ ପାର୍ଥ ଏହା କେଉଁ ଗୋଳ ।
ହରି ବୋଲେ ଯାଇଥିଲେ ସେଠାକୁ ଯୁଧିଷ୍ଠି
ଥାଟ ଘେନ ବେଢ଼ିଅଛୁ ତାଙ୍କୁ ଧାର୍ତ୍ତରାଷ୍ଟ୍ରି ।
ଯୁଧିଷ୍ଠିଙ୍କ ସଙ୍ଗେ ଦେବ ଆରମ୍ଭିଲେ ଗୋଳ
ସେ ହେତୁରୁ ମାର ମାର ଶୁଭଇ ଚହଳ ।
ଅର୍ଜ୍ଜୁନ ବୋଇଲେ ଦେବ ଶୁଣିମା ଗୋବିନ୍ଦ
ସଦା ଯୁଧିଷ୍ଠିଙ୍କୁ ସେହୁ ଚିନ୍ତୁଥାଇ ମନ୍ଦ ।
ଏହା ଶୁଣିଣ ମନରେ ହେଉଛି ବିଷାଦ
ନଷ୍ଟସ୍ୱେ ଯୁଧିଷ୍ଠିରଙ୍କୁ ପଡ଼ିଲା ପ୍ରମାଦ ।
ସ୍ୱାମି ସର୍ବଦା ଆମ୍ଭଙ୍କୁ ତୁମ୍ଭେ ଥାଅ ରଖି
ତୁମ୍ଭେ ଥାଉଁ ଥାଉଁ ଆମ୍ଭେ ହେବୁ କି ନିର୍ମାକ୍ଷୀ
ତୁ ଆମ୍ଭ ସୋଦର ପ୍ରଭୁ ଜଗତର ନାହା
ବହନ କୁରୁଥାଟକୁ ରଥ ମୋର ବାହା ।
ସଂସାରତାରଣ ନାଥ ତୁହି ଯେ ଅନାଦି
ତୋ ପରି ପ୍ରଭୁ ଥାଉଁ କି ଭ୍ରାତା ହେବ ବନ୍ଦୀ ।
ଗୋବିନ୍ଦ ବୋଇଲେ ପାର୍ଥ ନ ବୋଲ ଏମନ୍ତ
ସେମାନେ ତୁମ୍ଭ ସୋଦର ଅଭିନ୍ନ ନୁହନ୍ତ ।

ଭୀଷ୍ମ ତୁମ୍ଭ ଅଜା ଦ୍ରୋଣ ଅଟେ ତୁମ୍ଭ ଗୁରୁ
ଏମାନେ ଅଛନ୍ତି ମନେ ଚିନ୍ତା କିମ୍ପା କରୁ ।
ଶଲ୍ୟ ଅଟନ୍ତି ତୁମ୍ଭର ସୋଦର ମଉଳା
ଦ୍ରୋଣି ତ ଅଭଙ୍ଗ କୃପ ଗୁରୁଙ୍କର ଶଳା ।
ତୁମ୍ଭେ ସବୁ ଏକା ଅଟ କେହି ନୁହ ଭିନ୍ନ
ଏକ ପିତାଠାରୁ ତୁମ୍ଭେ ସମସ୍ତେ ଜନମ ।
ସେ କିମ୍ପାଁ କରିବେ ଯୁଧିଷ୍ଠିରଙ୍କୁ ଅପଚୟେ
ମିଛ କଥାରେ ଚିନ୍ତା ନ କର ଧନଞ୍ଜୟେ ।
ପାର୍ଥ ବୋଇଲେ ଶୁଣିମା ଦେବ ହୃଷୀକେଶ
ସକଳ ଜାଣ କପାଇଁ କର ଉପହାସ ।
ନ ନେଉ ଯୁଧିଷ୍ଠିରଙ୍କୁ ସେହି ବନ୍ଦୀକରି
ବେଗକର ମୋର ରଥ ବାହା ଦେବହରି ।
ମୁହିଁ ତୋତେ କହୁଛି କି ଦେବ ନ ବିଚାର
କୁରୁଏ ଚଳନ୍ତି ମନ୍ଦ ଧର୍ମ ଲଙ୍ଘି କରି ।
ଚଳନ୍ତୁ ଆଜ ସମର କରିବ ଯେ ମୁହିଁ
ମାରିବ ଯେ କୁରୁବଳ ରଖିବ ଯେ ନାହିଁ ।
କୁରୁସାଗର ମଧ୍ୟକୁ ବାହା ମୋର ରଥ
ତୁମ୍ଭ ପ୍ରସାଦେ ଆଜରେ କରିବ ଅନର୍ଥ ।
ଅର୍ଜ୍ଜୁନଙ୍କ ମୁଖରୁ ଏ ବଚନ ଶୁଣି
ପାଞ୍ଚଜନ୍ୟ ଶଙ୍ଖନାଦ କଲେ ଚକ୍ରପାଣି ।
ଯାଅ ଯା କହି ଅଶ୍ୱକୁ ଚାଳିଲେ ଶ୍ରୀରଙ୍ଗ
ରଥକୁ ଘେନି ଉଠିଲେ ଗଗନେ ତୁରଙ୍ଗ ।
କୁରୁବଳ ସୈନ୍ୟଙ୍କୁ ଯେ ସାଗର ବୋଲନ୍ତି
ସେ ସାଗରେ ଏହି ଅଶ୍ୱ ହେଲେ ହଂସପନ୍ତି ।
ନାରାୟଣ ବଚନରେ ଉଡ଼ ହୟବର
ମହାନଳ ଜାଣି କୃଷ୍ଣ ପୁଣି ପାର୍ଥବୀର ।
ଗଜ ହୟବୀର କଉରବେ ଥାଟେ ପଶି
ସେ ନନ୍ଦଘୋଷକୁ ଭୀଷ୍ମ ଉଗାଳିଲେ ଆସି ।
ଗୋବିନ୍ଦ ବୋଇଲେ ତୁହେ ବୃକୋଦର ଯାଅ
ଯୁଧିଷ୍ଠିର ଦେବଙ୍କୁ ତୁ ସାହାପକ୍ଷ ହୁଅ ।
ଶ୍ରୀକୃଷ୍ଣଙ୍କ ବଚନରେ ଚଳେ ବୀରମଣି
ଯୋଜନ ବାହୁ ସମାନ ଟେକିଅଛି ପାଣି ।
ବାଉନ ବାଉନ ଭାର ଗଦା ଘେନି ହସ୍ତେ
ମନ୍ଦର ଗିରି ଆସିଲା ପ୍ରାୟେ ହୁଏ ପ୍ରତେ ।
ଯେହ୍ନେ ନାଶ କରେ କାଳଦଣ୍ଡ ଘେନିକରେ
ଭୀମ ମୂରତି ଦିଶଇ ତେମନ୍ତ ପ୍ରକାରେ ।

କୌରବ ଥାଟ ମଧ୍ୟରେ ପଶି ଭୀମସେନ
ଦୂରୁ ତାଙ୍କେ କାଢ଼ିଗଲ୍ୟରେ କଳଙ୍ଗସେନ ।
ମହାକୋପେ ଧାଏଁ ଭୀମ ଧରି ବିଶ୍ୱରୂପ
ସେ ରୂପ ଦେଖି ଭାଙ୍ଗିଲା କୌରବଙ୍କ ଦର୍ପ ।
ଚକ୍ଷୁଭ୍ରାନ୍ତେ ବୁଲୁଅଛନ୍ତି ତାରି ବେନି ଆଖି
ତ୍ରାସେ ଭାଜିଲେ ସମସ୍ତେ ଭୀମରୂପ ଦେଖି ।
ଅନେକ ବୀରଦମାଳ୍ୟ ଭେଷ ଭୂଷା ବାଜେ
କୌରବ ଥାଟକୁ କବା ଯମକଲା ବଜେ ।
ଧାମଇଁ ମାରୁତି ରାଗେ ସମରେ ଅଭୟେ
ରଣଗୋଳ ଧନ୍ଦୋଳ ସେ କରିଲା ଏକାଏ ।
ଉଭୟ ଦଳ ସଇନ ମଧ୍ୟେ ସେ ଶକତି
ମନ ମଧ୍ୟରେ କାହାକୁ ନ କରେ ଗଣିତି ।
ରଣରଙ୍ଗରେ ଯୋଦ୍ଧା କକ୍ଷା ଜଗଜ୍ଜେତି
ଗଦାବର ବୁଲାଇଣ କୁରୁସୈନ୍ୟ ପିଟି ।
ଭାଜନ୍ତି ରଥ ପଡ଼ନ୍ତି ବହୁ ମହାମତ୍ତ
ସେ ସୈନ୍ୟ ସିନ୍ଧୁ ମନ୍ଥନେ ଭୀମହିଁ ସକତି ।
କାଉଁଶ ଦେଶର କାମପାଳ ନରପତି
ତାହାର ଭୂଲେ ଯେ ଥିଲେ ତିନସହସ୍ର ରଥୀ ।
ଏତେ ଯୋଦ୍ଧା ଘେନି ସେହି ନୃପ କାମପାଳ
ଭୀମସେନକୁ ଆବୋରି ଆରମ୍ଭିଲା ଗୋଳ ।
ଯେଉଁ ଭୀମସେନ ଅଟେ ଶତ୍ରୁ ସଂହାରନ୍ତା
ତା ସମ୍ମୁଖକୁ କାମପାଳ କି ହେବ ଶକତା ।
ଧାମଇଁ ପାଣ୍ଡବ ତାଙ୍କ ଦଳ ମଧ୍ୟ ଆସି
ଭୀମଯୁଦ୍ଧେ କାମପାଳ ନ ପାରେ ଭରସି ।
ଧାଇଁ ଭୀମ କାମପାଳେ ଗଦାବର ପିଟି
ଚନ୍ଦ୍ରମାକୁ ଯେସନେକ ରାହୁ ଅଛି ଘୋଟି ।
ପୁଣ ଗଦାବର ପିଟେ ହସ୍ତୀ ମାହୁନ୍ତକୁ
ସେ ଘାତେ ସେ ଦୁହେଁ ଗଲେ ଶମନ ପୁରକୁ
ରଥେକ ଧରି ଆରେକ ରଥରେ କଚାଡ଼ି
ଭୟେ ଯୋଦ୍ଧା ପଳାଇଲେ ସେହି ସ୍ଥାନ ଛାଡ଼ି
ସମରରେ ଅଦ୍ଭୁତ ଯେବଣ ପାଣ୍ଡବ
ସର୍ବଦା ନିର୍ଦ୍ଦୟ ଅଟେ ଯାହାର ସ୍ୱଭାବ ।
କୌରବ ଯୋଦ୍ଧା ମଧ୍ୟରେ ଯେତେ ମହାବଳୀ
ଭୀମ ଉପରେ ପିଟନ୍ତି ଗଦାବର ତୋଳି ।
ବିଶେଷ ଭୀମର ବଜ୍ର ଅଟେ ବାମ ଅଙ୍ଗ
ପଡ଼ିଣ ଗଦା ଗୁଣ୍ଡିକ ହୋଇଯାଏ ଭଙ୍ଗ ।

ପାଦଘାତ କରି ଭୀମ ଯାକୁ ମାରେ ମୁଥେ
ସେ ଘାତେ ଚୂର୍ଣ୍ଣ ହୁଅଇ ରଥାଦି ସହିତେ ।
ବିକଟ ଦଶନ ଯହୁଁ ଅଧର ବିକାଶି
ନରସିଂହ ରୂପ ପ୍ରାୟ ଭୀମସେନ ଦିଶି ।
ଶୂରସିଦ୍ଧ ଦେଶ ରାଜା ଅଟେ ଚିତ୍ରପାଳ ।
ପାଞ୍ଚସହସ୍ର ଭୂଲେ ନବକ୍ଷୌଣୀ ଅଙ୍ଗବଳ ।
ବହୁତ ପ୍ରତିଜ୍ଞା କରି ବଳବନ୍ତମାନେ
ଉଗାଳିଲେ ବହୁଯୋଦ୍ଧା ଘେନି ଭୀମସେନେ ।
ବହୁତ ସଇନ୍ୟ ତାର ନ ହୁଏ କଳନା
ପୃଥ୍ୱୀ ଘୋଟି ପାରନ୍ତି ସେ ରଣେ ମହାମନା ।
ଚଳି ଆସୁଅଛନ୍ତି କି ଯେସନ୍ତେ ଗିରିମାଳ
ସେହିପରି ଦିଶଇ ଯେ ତା ରଥ ସକଳ ।
ଗହଳ ମହାଧନ୍ଦୋଳେ ନ ଦିଶେ ମାର୍ଗଣ
ଏକାକେ ଆବୋରିଲେକ ଭୀମ ସେହି ସୈନ୍ୟ
ବହୁତ ସଇନ୍ୟ ଦେଖି ବୀର ବୃକୋଦର
ଭୀତ ନୋହି କମ୍ପାଇଲା ଆପଣା ଶରୀର ।
କୋପେ ବିକାଶିଲା ବୀର ବୃକୋଦର ମୂର୍ତ୍ତି
ଏକା ପ୍ରହାରେ ପଡ଼ନ୍ତି ପାଞ୍ଚସହସ୍ର ରଥୀ
ପୁଣ ପୁଣ ପ୍ରହାରଇ ବୀର ଗଦା ତୋଳି
ଉଡ଼ନ୍ତି ଅନେକ ରଥ ଗଜ ହୋଇ ଧୂଳି ।
କଲିକ ରଣ ଧନ୍ଦୋଳ ଭୀମ ବଳବନ୍ତା
ସମ୍ମୁଖରେ କେ ରହିବାକୁ ନୋହିଲେ ଶକତା ।
ଉଠି ପଡ଼ନ୍ତି ଗର୍ଜ୍ଜନ୍ତି ରଣେ ମହାଯୋଧି
ଏକମୁଖ ହୋଇ ସର୍ବେ ନାରାଚକୁ ବିନ୍ଧି ।
ବିନ୍ଧୁଛନ୍ତି ଶରମାନ ଅନ୍ୱେଷଣ ରୋଷେ
ଜୁଳୁଜୁଳା ପୋକ ଯେସନ୍ତେ ଉଡ଼ନ୍ତି ଆକାଶେ
ବଜ୍ର ପ୍ରାୟେ ଅଟଇ ଯାହାର ଶରୀର
ତା ଦେହେ ଛୁରି ନାରାଚ ପଡ଼ି ହୁଏ ଚୂରି
ଚିତ୍ରପାଳ ରାଜାବଳ ହୋଇଲା ନରେଖ
ଭାଜିଲେ ଦୁରନ୍ତବଳ ପାଇ ମହାଦୁଃଖ ।
କେହି ନ ରହିଲେ ଭୀମସେନର ଆଗରି
ଦୁଇଭାଗ ହୋଇଗଲା ସେ କୁରୁସାଗର ।
କାଳରୁଦ୍ର ସମ ଭୀମ ସୈନ୍ୟ ପିଟି ପିଟି
ଧାମନ୍ତେ ଭେଟିଲା ଯାଇ ଧରମ ଯୁଧିଷ୍ଠି ।
ଦୁର୍ଦ୍ଦକ୍ଷ ରଥରେ ଛନ୍ତି ଧର୍ମଙ୍କର ବାଳ
ଧୃତରାଷ୍ଟ୍ରସୁତ ଯୁଦ୍ଧ କରେ ମହାଗୋଳ ।

ଉଜାଣି ଦେଶର ରାଜା ନାମ କେତୁମାଳ
ଦଶସହସ୍ର ଯୋଦ୍ଧା ଘେନି ଯୁଧିଷ୍ଠି ଉଗାଳ ।
ତାହାର ଭୁଟଲେ ଦୁର୍ଦ୍ଧକ୍ଷ ସମର କରଇ
ଯୁଧିଷ୍ଠିଙ୍କୁ ମାର ବୋଲି ମୁଖରବ ହୋଇ ।
ଦୂରରୁ ଶୁଣି ଭିତରେ ପଶିଲ ମାରୁତି
ସୈନ୍ୟ ଭିତରେ ପଶିଣ ଧରି ଭସ୍ମମୂର୍ତ୍ତି ।
କାଳାନ୍ତକ ମୂର୍ତ୍ତି ଯହୁଁ ଦେଖିଲେ ସଇନ୍ୟ
ମହାଭୟେ ରାଜ ତହୁଁ କଲେ ପଳାୟନ ।
ଉଜାଣି ନୃପତି ଧର୍ମସୁତେ ବେଢ଼ିଥିଲ
ଭୀମସେନ ଗଦାଘାତେ ତହୁଁ ପଳାଇଲ ।
ଉଭୟ ବଳ ମଧ୍ୟରେ ଖଳଗାଜ ଭୀମ
ଯୁଧିଷ୍ଠି ଦେବଙ୍କ ପାଦେ କଲାକ ପ୍ରଣାମ ।
ବୋଇଲ ଧର୍ମ ଆଶ୍ରିତେ ଅଇଲ ହେ ସ୍ୱାମି
ବଧିର ଶୁଣଣ କ କାହିଁ ସୁଶ୍ରାବ୍ୟ ରାଗିଣୀ ।
ତସ୍କରେ କହ୍ନି ଆସିଲ ଧରମ ପୁରାଣ
ବୋଲି ନ ମାନ ଅଇଲ ପଡ଼ିଲ କଷଣ ।
ପାଦରେ ଏଡ଼ି ଅଇଲ କାଞ୍ଚନ ରତନ
ଉପଘାତ କାଳେ ବୁଦ୍ଧି ହୁଅଇ ଏସନ ।
କର୍କଶ ମଧୁପିଙ୍ଗଳ ଯାହାର ପ୍ରକୃତି
କର୍ଣ୍ଣ ଶକୁନିର ଭୁଟଲେ ଦୁଃଶା ମୂଢ଼ମତି ।
ଭାଗ୍ୟେ ତୁମ୍ଭର ଅନିଷ୍ଟ ନ କରିଲେ ଯାହା
ପୁଣ୍ୟବଳରେ ଦୁର୍ଦ୍ଧକ୍ଷ ହେଲ ତୁମ୍ଭ ସାହା ।
ବୁଡ଼ାଇଣ ଥିଲ ଆମ୍ଭମାନଙ୍କ ସମ୍ପତ୍ତି
ଏକା ଦୁର୍ଦ୍ଧକ୍ଷ ରଖିଲ ଆମ୍ଭର ବିଭୂତି ।
ନ ସମ୍ଭାଳି ହୋଧେ ତୁମ୍ଭେ ଆସିଲ ଏଠାକୁ
କାଳେ ମନ ଅଇବ ସେ ପଡ଼ିଲ ତୁମ୍ଭଙ୍କୁ ।
ଭୀମସେନ ପାଦତଳେ ଦୁର୍ଦ୍ଧକ୍ଷ ପ୍ରଣମି
ବୋଇଲ ମୋତେ ଶରଣ ରଖ ଦେବସ୍ୱାମି ।
ଭୀମସେନ କୋଳକର ଧରି ଦୁର୍ଦ୍ଧକ୍ଷକୁ
ବୋଇଲ ଉଦ୍ଧରିଲୁ ତୁ ତୋହର ବଂଶକୁ ।
ତୁ ଯେ ସୋଦର ଆମ୍ଭର ଅଟୁ ହିତକାରୀ
ଭାଇଙ୍କୁ ରଖିଲୁ ଧନ୍ୟ ତପଦେ ଆମ୍ଭର ।
ବାବୁ ଆମ୍ଭ ଦେହେ ପ୍ରାଣ ଥିବା ପରଯନ୍ତେ
ଦେବ ଦାନବ ମାନବେ କଷ୍ଟ ନାହିଁ ତୋତେ
ଦୁର୍ଦ୍ଧକ୍ଷ ବୋଇଲ ମାଡ଼ ପଡ଼ିଛନ୍ତି ଥାଟ
ଭାଙ୍ଗିବା ଉପାୟ କର ନ ପାଇବା ବାଟ ।

ନାରାୟଣଙ୍କ ଅଗ୍ରତେ କହନ୍ତି ଫାଲ୍‌ଗୁନି
ସ୍ୱାମି ମୋହର ତଅଇଁ କପାଁ ଚକ୍ଷୁ ଦେନି ।
ଯୁଧିଷ୍ଠିର ମାର ବୋଲି ଶୁଭିଲ ଚହଳ
ସମସ୍ତେ ସ୍ଥିର ହୋଇଲେ ଶୁଭୁଅଛି ଗୋଳ ।
ଯଦ୍ୟପି ସେଠାକୁ ଦେବ ଗଲେ ଭୀମସେନ
ଯୁଧିଷ୍ଠିଙ୍କୁ ନ ଦେଖିଲେ ସ୍ଥିର ନୁହେ ମନ ।
ବେଗରେ ସେଠାରେ ରଥ ବାହ ହୃଷୀକେଶ
ନୟନେ ଦେଖିଲେ ମୋର ଫିଟିବ ସନ୍ଦେଶ ।
ଭୀମଙ୍କର ନ ଶୁଭଇ କପାଁ ଶଙ୍ଖଧ୍ୱନି
ଯୁଧିଷ୍ଠିଙ୍କୁ କଉରବେ ଅବା ଗଲେ ଘେନି ।
ବେଗକର ରଥ ମୋର ବାହା ନାରାୟଣ
କପଟେ ଦୁର୍ଦ୍ଧକ୍ଷ ପଶି ନ ଥାଏ ଶରଣ ।
ଅର୍ଜ୍ଜୁନ ଆତଙ୍କ ଦେଖି ପ୍ରଭୁ ଯଦୁନାଥ
ଧାଡିକାରେ ଚଳାଇଲେ ନନ୍ଦିଘୋଷ ରଥ ।
ଆକାଶେ କ୍ଷେପି ଚଳନ୍ତି ହୟବର ଚାର
ଥାଟ ଭିତରେ ପଶିଲେ ଅଶ୍ୱେ ଆଗସର ।
ଯେସନେ ଆରତ ହନ୍ତି ବାସଭଗ୍ନ ପକ୍ଷୀ
ଭାଜିଲେକ କୁରୁବଳ ନନ୍ଦିଘୋଷ ଦେଖି ।
କୌରବଙ୍କ ଥାଟଭଗ୍ନ ଦେଖି ଗଙ୍ଗାଶିଷି
ରଥ ଆରୋହଣ ଆଗଭର ହେଲେ ଆସି ।
ଅଶୀସହସ୍ର ବଳ ଧନୁ ଶ୍ରୀଭୁଜରେ ଧରି
ନନ୍ଦିଘୋଷ ରଥକୁ ସେ ରହିଲେ ଆବୋରି ।
ଡାକନ୍ତି କାହିଁକି ଯାଉ ଆରେ ବୀରପାର୍ଥ
ମୋର ସମ୍ମୁଖରେ ରଖାଅ ନନ୍ଦିଘୋଷ ରଥ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଗୁରୁପରେ ଗୁରୁ
କାଏ ସାମର୍ଥ ହୋଇବ ଚଳିବାକୁ ମେରୁ ।
ଉଭୟ କୁଳର ବୃଦ୍ଧଦେବ ଅଟ ତୁମ୍ଭେ
ତୁମ୍ଭର ଥାଇଁ ପ୍ରମାଦ ପଡ଼ୁଅଛୁ ଏବେ ।
ଭୀଷ୍ମ ବୋଇଲେ ବାବୁରେ ଆପଣାର କୃତ୍ୟ
ତାହାକୁ ଯେ କର୍ମ ବୋଲି କହନ୍ତି ତଥାତ ।
ଅର୍ଜ୍ଜୁନ ବୋଇଲେ ଏବେ ଅଛଇ ଯେ ବୁଦ୍ଧି
ରଣେ ହତ୍ୟା ନୋହୁ ତୁମ୍ଭେ କର ଯାଇ ସନ୍ଧି
ଭୀଷ୍ମ ବୋଇଲେକ ବାବୁ ସନ୍ଧି ଯେ ସରିଲ
ଦୁର୍ଦ୍ଧକ୍ଷ ଶରଣ ପଶି ଯୁଧିଷ୍ଠି ରଖିଲ ।
ସୋଦର ଧର୍ମ ଲଙ୍ଘେ ଯେ ତାର ନାହିଁ ବୁଦ୍ଧି
ଏଥୁ ସବୁ ଜାଣ ମୁଖେ ନ ବୋଲ ତୁ ସନ୍ଧି ।

ଆଜ୍ଞ କେବେହେଁ ନୁହଇ ସନ୍ଧ ଆରେ ବାବୁ
ଆଗେ ଆମ୍ଭଙ୍କୁ ଜିଣିବ ଏହା ଭାବୁ ଥିବୁ ।
ଆମ୍ଭେ ଯେ ପ୍ରତିଜ୍ଞା କଲୁ ଅଶ୍ୱତ୍ଥାମା ବାକ୍ୟେ
ସମସ୍ତ କୌରବ ବସିଥିଲେ ଆମ୍ଭ ପାଖେ ।
ଯେବେ ତୁ ସମରେ ମୋତେ ଜିଣିପାରୁ ପାର୍ଥ
ତେବେ ସେ ଆମ୍ଭର ପୂର୍ଣ୍ଣ ହେବ ସିନା ବ୍ରତ
ରଥ ଉପରୁ ଓହ୍ଲାଇ ଯାଇ ଧନଞ୍ଜୟ
ଭୀଷ୍ମଙ୍କ ଚରଣ ଧରି କଲକ ବିନୟ ।
ବୋଲନ୍ତି ଗାଙ୍ଗେୟ ତୋର ପୂରୁ ମନୋବାଞ୍ଛା ।
ପଞ୍ଚୁଳୀ ଭୋଗ କର ଆମ୍ଭର ଯେ ଇଚ୍ଛା ।
ଗଙ୍ଗାନନ୍ଦନ ଏରୂପେ କଲ୍ୟାଣ ବାଞ୍ଛିଲେ
ପୁଣି ଭୀଷ୍ମ ମୁଖ ଚାହିଁ ଅର୍ଜ୍ଜୁନ ପୁଚ୍ଛିଲେ ।
ସ୍ୱାମି ବାଳକାଳୁଁ ସ୍ନେହେ ପାଳିଲ ଆମ୍ଭନ୍ତ
ତୋତେ ନାଶିବାକୁ ଚିତ୍ତ ବଳିବ କେମନ୍ତ ।
ଭୀଷ୍ମ ବୋଇଲେକ ପାର୍ଥ ଏମନ୍ତ ନୁହଇ
ଏତେବେଳେ ତୁମ୍ଭ ଏହା କହୁ କାହିଁପାଇଁ ।
ସହୋଦର ବଧିବାକୁ ଯେବେ ନାହିଁ ଇଚ୍ଛା
ବନବାସ ଛାଡ଼ି କପାଁ ରାଜ୍ୟ କର ବାଞ୍ଛା ।
ସୋଦରରେ କ୍ରୋଧଯେବେ ନାହିଁରେ ତୋହର
ତେବେ ଯୁଦ୍ଧ ତେଜି ଏଥୁ ଯାଅ ଅପସରି ।
ତେବେ ଯେ ଜାଣିବା ତୋର ସୋଦରମାପଣ
ତୁମ୍ଭେ ନ ଯୁଝିଲେ ବଂଶ ହୋଇବ ରକ୍ଷଣ ।
ଅର୍ଜ୍ଜୁନ ବୋଇଲେ ଦେବ ଆମ୍ଭେ ହେଲୁଦୋଷୀ
ପଡ଼ା ପାଞ୍ଚଖଣ୍ଡି ଦେଇ ଆମ୍ଭଙ୍କୁ ନ ପୋଷି ।
ଭୀଷ୍ମ ବୋଇଲେ ବାବୁ ରେ ନୁହେ କାର କଲ
ଦେଇ ନ ଦେଇ ନ ଦେଖି ଦେଖି ଦେଖି ମଲ
ଏସନ ନିର୍ମାଣ ବିହି କରିଅଛୁ ପୂର୍ବେ
କେ ତାହାକୁ ନାସ୍ତି ପୁଣି କରିବାକ ଏବେ ।
ଦେଇ ମଲ ବଳୀ ମଲ ନ ଦେଇ ରାବଣ
ଦେଖି ମଲ କଂସ ଦଶରଥ ନ ଦେଖିଣ ।
ଏବେ ନ ଦେଇ ମରିବ ରାଜା ଦୁର୍ଯ୍ୟୋଧନ
ଏମନ୍ତ ଶୁଣି ବୋଇଲେ ପୁଣି ସେ ଅର୍ଜ୍ଜୁନ ।
ଯେବେ ନ ଦେଇ ମରିବ ରାଜା ଦୁର୍ଯ୍ୟୋଧନ
ତା ସକାଶେ ତୁମ୍ଭେ କପାଁ ହରାଇବ ପ୍ରାଣ ।
ଭୀଷ୍ମ ବୋଇଲେ ଏ କଥା ଜାଣୁ ରେ ଅର୍ଜ୍ଜୁନ
ଭାରତଯୁଦ୍ଧେ ମରିଲେ ଲଭିବା କାରଣ ।

ଅର୍ଜ୍ଜୁନ ତଟସ୍ଥ ହେଲେ ଏସନ ଶୁଣନ୍ତେ
ଯୁଧିଷ୍ଠିରଙ୍କୁ ଘେନ ଭୀମ ମିଳେ ଏକାରଥେ ।
ଭୀଷ୍ମଙ୍କ ତୁଲେ ଅଛନ୍ତି ବିଂଶସସ୍ର ରଥୀ
ଭୀମସେନ ଗଦାଘାତେ ପିଟନ୍ତି ସବୁନ୍ତ ।
ପଳାଇଲେ ସୈନ୍ୟମାନେ ହୋଇଣ ନିରେଖ
ଉଚ୍ଚସ୍ୱରେ ଡାକ ଦେଲେ ଭୀଷ୍ମଦେବ ରଖ ।
ହରି ବୋଇଲେ ହେ ପାର୍ଥ ମାର ଶର ବନ୍ଧ
ବସୁରୁ କୁରୁ ପାଣ୍ଡବେ ହୋଇବ କି ସନ୍ଧି ।
ଭୀଷ୍ମ ବୋଇଲେ ବାବୁ ରେ ଶୁଣ ବୀରପାର୍ଥ
ମାନଗୋବିନ୍ଦଙ୍କୁ ଜିଣି କେ ହେବ ସାମର୍ଥ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଯା ସହାୟ ଛନ୍ତି
ତ୍ରୈଲୋକ୍ୟେ ଜିଣିବାକୁ କେ ଅଛି କୁରୁପତି ।
ପାର୍ଥ ବୋଲେ ସସ୍ର ଭୀଷ୍ମ ଦୁଇସସ୍ର ଦ୍ରୋଣ
ଚାରିସସ୍ର ଶଲ୍ୟ ହନ୍ତୁ ଆଠସସ୍ର କର୍ଣ୍ଣ ।
ଏ ସମସ୍ତ ଥିଲେ ସୁଦ୍ଧା କୌରବ ଆଟରେ
ମାନଗୋବିନ୍ଦଙ୍କୁ ରଣେ କେହୁ ରଖିପାରେ ।
ଅର୍ଜ୍ଜୁନ ବୋଇଲା ଭୀଷ୍ମ ତୁମ୍ଭେ ମୋର ଗୁରୁ
ନିଷ୍ଠୁର ଯୁଦ୍ଧେ କେ ମୋର ଆଗେ ଧନୁ ଧରୁ ।
କହୁ କହୁ ଶେଷ ହେଲେ ବୀର ଫାଲଗୁନ
ଭୀଷ୍ମଙ୍କୁ ବନ୍ଧିବାପାଇଁ ଶର କରେ ଘେନ ।
କଉଶିକମନ୍ତ୍ରେ ଶର ଧନୁଗୁଣେ ସନ୍ଧି
ନମସ୍କାରି କରି ବୀର ପାଞ୍ଚବାଣ ବନ୍ଧି ।
ଭୀଷ୍ମଙ୍କ ଅଗ୍ରତେ ଯାଇ ପଡ଼େ ପାଞ୍ଚଶର
ଗୁରୁ ବୋଲି ଆଗେ ତାଙ୍କ ବନ୍ଦିଲେ ପୟର ।
ବିନୟଭାବ ଦେଖିଣ ଶାନ୍ତନୁଙ୍କ ଶିଷି
ପଞ୍ଚ ନାରାଚ ପୂରାଇ ବନ୍ଧିଲେ ଆଶ୍ୱାସି ।
ଅର୍ଜ୍ଜୁନର ମୁଖେ ଚୁମ୍ବ ଦେଲେ ସେହି ବାଣ
ପୁଣି ଉପ୍ରୋଧ ଛାଡ଼ିଲେ ଭୀଷ୍ମ ମହାରାଣ ।
କଙ୍କପକ୍ଷ ପରି ଆଉ ଲୁହା ତୀକ୍ଷ୍ଣମୁନା
ଭୀଷ୍ମ ପେଷନ୍ତେ ଭେଦିଲା ଅର୍ଜ୍ଜୁନଙ୍କ ସେହ୍ନା ।
ପୁଣି ଭୀଷ୍ମ ବନ୍ଧିଲେକ ସାତଗୋଟି ଶର
କୃଷ୍ଣ ବୋଇଲେ ହେ ପାର୍ଥ ଏହାକୁ ନିବାର
ନିଶାଖା ନାରାଚ ପାର୍ଥ ବନ୍ଧିଲେକ ତିନି
ଭୀଷ୍ମଙ୍କର ସପ୍ତଶର ଛେଦିଲା ସେକ୍ଷଣି ।
ପୁନରପି ଗଙ୍ଗାସୁତ ବିଶ୍ୱରୂପେ ବ୍ୟାପି
ପଞ୍ଚବିଂଶ ଶର ଗୁଣେ ବସାଇଲେ କୋପି ।

ଦେଖିଲୁ ଦେଖ ଗାଙ୍ଗେୟ କୋପେଣ ପ୍ରଜ୍ୱଳ
ନାରାଚମାନ ବିନ୍ଧିଲେ ଦେଖ ଆକ୍ରାଦିଳ ।
ଶାନ୍ତନୁର ନନ୍ଦନ ଯେ କଷା ଜଗତ୍କେତି
ଘୋଟି ଜଳଧାର ପ୍ରାୟେ କଲେ ଶରବୃଷ୍ଟି ।
ଇନ୍ଦ୍ରଗୋଷୀ ସେ ତାରାକ୍ଷୀ ନାମେ ପକ୍ଷୀ ଆସି
ସମର ଦେଖଇ ନନ୍ଦଘୋଷ ରଥେ ବସି ।
ଅଠରଦିନ ସମର ସେହି ଦେଖିବାକୁ
ଉଡ଼ଇ ଗଗନ ପଥେ ମୁକତ ହେବାକୁ ।
ଭୀଷ୍ମଙ୍କ ଶର ଯାଆନ୍ତେ ଆକାଶର ପଥ
କାଟନ୍ତେ ଯାଇ ତାରାକ୍ଷୀପକ୍ଷୀ ଗର୍ଭଗତ ।
ସେକ୍ଷଣି ସେହି ପକ୍ଷିଣୀ ହେଲା ବେନିଫାଳ
ତା ଗର୍ଭୁ ସ୍ଵରେଟି ଡିମ୍ବ ପଡ଼ିଲା ଭୂତଳ ।
ଯୁଦ୍ଧ କ୍ଷେତ୍ରରେ ଉଭୟ ସୈନ୍ୟ ନଧଭୂମି
ତହିଁ ପଡ଼ିଲେ ସ୍ଵରେଟି ଡିମ୍ବ ଭ୍ରମି ଭ୍ରମି ।
ଭୀଷ୍ମ ଅର୍ଜୁନଙ୍କ ଘୋରରଣ ଶରଘାତେ
ପଡ଼ନ୍ତି ଯୋଦ୍ଧାଏ ଗଜ ଅଶ୍ୱର ସହିତେ ।
ଯାମନକ ଦେଶ ରାଜା ଶିବ ନରପତି
ଶ୍ୱେତମକର ବୋଲଣ ତାର ମତ୍ତହସ୍ତୀ ।
ଭୀଷ୍ମଙ୍କ ଆଟରେ ସେହୁ ହେଲା ଆଗୁଆଣି
ମଧ୍ୟେ ତେକ ମତ୍ତଗଜ ତା ଥାଟେ ଘଲଣି
ହାବୋଡ଼ା ଶରେକ ମାରି ଗାଇ ଫାଲଗୁନ
ଶ୍ୱେତମକର ହସ୍ତୀର ଘଟଣକୁ ଦେଖ ।
ସେହି ହସ୍ତୀବର ପଦ୍ମୁଁ ପଡ଼େ ମତିଭ୍ରମେ
ପଡ଼ିଲାକ ଶିବପାଦ ନୃପ ଅସାଷ୍ଟମେ ।
ସେ ଗଜବରର ଘଣ୍ଟି ପଡ଼ିଲାକ ଛିଡ଼ି
ସ୍ୱରଗୋଟା ଡିମ୍ବପରେ ପଡ଼ିଲାକ ମାଡ଼ି ।
ସେହି ଘଣ୍ଟିଟି ଏପରି ଭାବରେ ପଡ଼ିଲା
ଡିମ୍ବ ନ ଭାଙ୍ଗି ଏପରି ଭାବରେ ରହିଲା ।
ସେ ଘଣ୍ଟି ଉପରେ ମାଡ଼ିପଡ଼େ ମତ୍ତହସ୍ତୀ
ତହିଁ ଉପରେ ପଡ଼ିଲେ ମହା ମହା ରଥୀ ।
ଭାରତଯୁଦ୍ଧ ଆଦ୍ୟରେ ପାର୍ଥ ଭୀଷ୍ମ ରଣେ
ତାରାକ୍ଷୀ ଡିମ୍ବ ରହିଲା ଏସନ ବିଧାନେ ।
ଜୟ ଜୟ ହେ ଅଗସ୍ତି କୁମ୍ଭଋଷି ସୂନୁ
ସଂସାରକୁ ମୁକ୍ତିଗତି ଦେଲ ଦନୁ ଦନୁ ।
ମାତାର ନନ୍ଦନ ତୁମ୍ଭେ ଅଟ ବ୍ରହ୍ମବେତ୍ତା
ଦୁରନ୍ତ ଦଳନ ଅଟେ ତୁମ୍ଭର କ୍ଷମତା ।
ପ୍ରଳୟ ତର ଅପାର କାଳ ତୁମ୍ଭେ ଯୋଗୀ
ଜଗଜ୍ଜନ ହିତପାଇଁ ତୁମ୍ଭେ ଅନୁରାଗୀ ।
ଯଶୋବନ୍ତୀଙ୍କ ଗର୍ଭରୁ ତୁମ୍ଭେ ଅବତରି
ଶତେକ ଚନ୍ଦ୍ର ବର୍ତ୍ତିଲ ଯୋଗ ସାଧିକରି
ଗର୍ଭ ଅବତରି ରହି ତପ କଲ ଘଟେ
ଚନ୍ଦ୍ର କାମକଳା ବାଟଗୋଟି ସେହି ଅଟେ ।
ଅଜର ଅମର ଜ୍ୟୋତି ଧରି ସୁଷୁମ୍ନା
ଏକାଦଶ ଦେବତା ତୋ ମୁଖଇ ସାଧନା ।
କହନ୍ତେ ମହିମା ଗୋଟି ଯାର ନ ସରଇ
ମୁହିଁ କାହୁଁ କହିବି ତା ନରଦେହ ବହି ।
ଶ୍ରୀଅଗସ୍ତି ମୁନିଙ୍କର ଚରଣେ ଶରଣ
ଶୂଦ୍ର ଶ୍ରୀ ଶାରଳା ଦାସ ମାଗଇ କାରଣ ।



## ଭୀଷ୍ମଙ୍କର ପ୍ରଥମ ଦିନର ଯୁଦ୍ଧ ଓ ତାରାକ୍ଷୀ ପକ୍ଷୀର ବିବରଣ

ମନୁରାଜା ପଚାରିଲେ ମୁନିବର କହ
ସେ ସ୍ୱରେଡିମ୍ବର କଥା ବଡ଼ଇ ସନ୍ଦେହ ।
ସେ ତାରାକ୍ଷୀ ପକ୍ଷୀ ପୂର୍ବଜନ୍ମେ କିସ ଥିଲା
କି ହେତୁ ସମରକ୍ଷେତ୍ରେ ତା ପେଟ ଫାଟିଲା ।
କୁରୁକ୍ଷେତ୍ର ଯୁଦ୍ଧଭୂମି ଅଟେ ପୁଣ୍ୟସ୍ଥାନ
ପୁଣ୍ୟସ୍ଥାନେ ପଡ଼ି କିମ୍ପା ହୋଇଲା ନିଧନ ।
ଏହା ଶୁଣିବାକୁ ମୋର ବଳଅଛି ଇଚ୍ଛା
ତବ ମୁଖୁଁ ଶୁଣି ମୋର ପୂରିବ ବାଞ୍ଛା ।
କହନ୍ତି ଅଗସ୍ତି ମୁନି ଶୁଣ ନରସାଇଁ
ତାରାକ୍ଷୀ ପକ୍ଷୀର ପୂର୍ବଜନ୍ମ କହୁଥାଇଁ ।
ସତ୍ୟଯୁଗେ ଶ୍ୱେତକଲ୍ପ ବୋଲଣ ନରେନ୍ଦ୍ର
ସମସ୍ତେ କ ସ୍ୱର୍ଗେ ସେହୁ ହୋଇଥିଲେ ଇନ୍ଦ୍ର ।
ସେହି ନୃପତି ଅଟଇ ମହାବଳବନ୍ତ
ମର୍ତ୍ତ୍ୟରେ ଜନମି କଲା ସ୍ୱର୍ଗରେ ରାଜତ୍ୱ ।
ସ୍ୱୃନ୍ଦ ବୋଲି ତାର ନାମ ତାଙ୍କର ସନ୍ତତି
ପଦ୍ମନାଭ ଦ୍ୱୀପର ସେ ଅଟେ ଅଧିପତି ।
ବଡ଼ ବିଖ୍ୟାତ ଅଟଇ ସ୍ୱୃନ୍ଦ ମହାରାଜା
ପଦ୍ମାବତୀ ବୋଲିକରି ତାହାର ଭାରିଯା ।
ପତିବ୍ରତା ନାରୀ ସେହୁ ଅଟେ ମହାସତୀ
ଦୟା ଧର୍ମ ଦାନପୁଣ୍ୟେ ସଦା ସେହୁ ବର୍ତ୍ତି ।

ସତ୍ୟହିଁ ମିଛ ନ କହେ ସେହୁ ସବୁକାଳେ
ସ୍ୱୟମ୍ଭବ ଉତପତ୍ତି ହେଲେ ତାର କୋଳେ ।
ସାର ସ୍ୱର ସର ମିର ଏନ୍ତ ସ୍ୱର ବଳା
ପଶୁ ଗ୍ରାମ ସଦୃଶରେ ତେଜ ଅନର୍ଗଳା ।
ଶ୍ୱେତ କୁଶ କ୍ରୌଞ୍ଚଦ୍ୱୀପ ଶାକଳ୍ପ ଯେ ଦ୍ୱୀପ
ଏ ସ୍ୱର ଦ୍ୱୀପରେ ସେହି ସ୍ୱର ହେଲେ ନୃପ ।
ପଦ୍ମଦ୍ୱୀପ ମଧ୍ୟରେ ଯେ ଶୁନ୍ଦ ମହାରାଜା
ତହିଁ ରହି ମହାସୁଖେ ପାଳେ ସେହୁ ପ୍ରଜା ।
ତା ରାଜ୍ୟେ ପରଜାଗଣ ସଦା ମହାସୁଖୀ
ସମସ୍ତେ ତ ଧନବନ୍ତ ଜଣେ ନାହିଁ ଦୁଃଖୀ ।
ସବୁ ପୀଢ଼ାରେ ରହିଛି ସୁବର୍ଣ୍ଣ କଳସ
ଶୁଚିବନ୍ତରେ ପ୍ରଜାଏ ହରନ୍ତି ଦିବସ ।
ଯେ କୃଷି କରଇ ନଏ ଦଶଅଂଶରେସି
ସୈନ୍ୟ ପାଳିବାକୁ ଦଅନ୍ତ ବାଙ୍କାଥିବା କୃଷି ।
ଥାଉ ସୈନ୍ୟ ନାହିଁ ଶୁନ୍ଦ ରାଜାଙ୍କର ଭୁଲେ
ଏକେଶ୍ୱର ପଞ୍ଚଦ୍ୱୀପ ରକ୍ଷା କରେ ଭଲେ ।
ପରିଧାନ କରେ ରାଜା ପଶୁଚର୍ମ ଗୋଟି
କଣସ୍ତ ମୃଗର ଛାଲ କଟିରେ କାଛଟି ।
ଭସ୍ମ ବିଲେପନ ରାଜା ମାଥେ ଏକ ଜଟା
ପଦ୍ମଦ୍ୱୀପେ ସର୍ବସୁଦ୍ଧା ରାଜ୍ୟ ପାଞ୍ଚଗୋଟା ।
ପଦ୍ମଦ୍ୱୀପ ଆୟୁତନ ସ୍ୱରଲକ୍ଷ ପୂର୍ଣ
ଏକା ଦିବସରେ ରାଜା କରଇ ପ୍ରୟାଣ ।
କନ୍ୟା ମାସରେ ଯେ ରାଜା ପୂର୍ଣ୍ଣିମାର ଦିନ
ଲଆ ନଟିକାଳ ବେଳେ କରଇ ଭୋଜନ ।
ସେହି ଦିନୁ ତାର ଆଉ ଭୋଜନ ଯେ ନାହିଁ
ଧନ ଭଣ୍ଡାର ସମ୍ପଦ କେ ଗଣି ପାରଇ ।
ସେ ରାଜ୍ୟର ଐଶାନ୍ୟରେ ଉଦେଗିରି ସ୍ଥିତ
ସୂର୍ଯ୍ୟଦେବ ପ୍ରତିଦିନ ହୁଅନ୍ତି ଉଦିତ ।
ଶୁନ୍ଦଙ୍କର ତେରଲକ୍ଷ ପଞ୍ଚବିଂଶ ଅଙ୍କେ
ଅନୁ ସମ୍ବତ୍ସର ବୋଲି ସମ୍ବତ୍ସର ଏକେ ।
କନ୍ୟାମାସ ଶୁକ୍ଳପକ୍ଷ ଅଟଇ ପୂର୍ଣ୍ଣମୀ
ଅଶ୍ୱିନୀ ନକ୍ଷତ୍ର ଗୁରୁବାରରେ ଯେ ଭ୍ରମି ।
ବବ ନାମେ କରଣ ହର୍ଷଣ ନାମେ ଯୋଗ
କନ୍ୟା ସଂକ୍ରାନ୍ତି ସତର ଦିନ ହୁଏ ଭୋଗ ।
ରାଜା ହବିର୍ଭାଗ ସେହି ଦିନ ଦେବାବେଳେ
ଅନ୍ୟାୟ ହେଲା ଦକ୍ଷିଣ ସମୁଦ୍ରର କୂଳେ ।

ମେରୁନାଭି ଖଣ୍ଡରେ ଯେ ସୁନ୍ଦର ଗ୍ରାମ
ତହିଁ ଥାଏ ବୈଶ୍ୟ ଏକ ବୈଶ୍ୱାନର ନାମ ।
ତାର ଭାରଯାର ନାମ ଅଟଇ ମାଳତୀ
ଅତ୍ୟନ୍ତ ସୁନ୍ଦରୀ ସେହୁ ସ୍ୱାମୀରେ ଭକତି ।
ସେହି ବୈଶ୍ୟର ଭାରଯା ପାକାସ୍ପର୍ଶ କାଳେ
ସ୍ନାନହେତୁ ଗଲା ପଦ୍ମତୋଳା ନଦୀଜଳେ ।
ସ୍ନାନ ସାରି ବାଳାମଣି ବାହୁଡ଼ି ଆସନ୍ତେ
ସୂର୍ଯ୍ୟ ଉଦୟ ହୋଇଲେ ରାତି ଶେଷ ହୁନ୍ତେ ।
ସେ ନଦୀ ପାଶେ ସହଜ ନାମେ ଅଛି ବନ
ତହିଁ ମଧ୍ୟେ ଏକା ବାଳୀ କରଇ ଗମନ ।
ହରିକେଶନ ବୋଲିଣ ଏକ ଶୂଦ୍ରଜାତି
ବଳାତ୍କାରେ ସେ ବାଳୀକୁ ଧରେ ପାପମତି ।
ପେଲି ପକାଇ ତାହାକୁ ବୋଲଇ ମାଳତୀ
ଶୁନ୍ଦରାଜା ରାଜ୍ୟେ ତୋର ଏଡ଼େକ ଅମାନ୍ତି ।
କୋପକରି କନ୍ୟା ତାକୁ କହଇ ଏସନ
ଛୁନ୍ତୁ ମୋତେ ଧର ନାହିଁ ଶୁନ୍ଦରାର ରାଣ ।
ଶୁଣି ସେ ହରିକେଶନ ବଳେ ଧରି ଆଣି
ବୋଲେ ମଦନ ଆଉରୁଁ ରଖ ସଙ୍ଗାଭୁଣି ।
ରାଜା ନାମ ଧରି କନ୍ୟା ଉଚେ ଡାକ ଦେଲା
ଏହି ରାଜ୍ୟେ ଶୁନ୍ଦ ଥାନ୍ତେ ଅମାନ୍ତି ହୋଇଲା ।
ଲଆ ନଡ଼ିଆ ପୂଡ଼ାଏ ଯେଉଁଣ ରାଜନ
ବସିକରି କଉତୁକେ କରଇ ଭୋଜନ ।
ଉଦେଗିରି ପର୍ବତକୁ ପଦ୍ମତୋଳା ଘାଟ
ସ୍ୱଲଶସସ୍ର ଯୋଜନ ନୁହଇ ନିକଟ ।
ଏତେଦୂରେ ଥାଇ ବାଳୀ ଆରତେ ଡାକିଲା
ଶୁନ୍ଦରାଜାର କର୍ଣ୍ଣରେ ତାହା ସମ୍ଭାଇଲା ।
ଭୋଜନ ବେଳରେ ରାଜା ଟେକେ ଶରଗୋଟି
ଯେ ବଳେ ହରୁଛି ତାହା ଅସ୍ତ୍ର ପକା କାଟି ।
ସ୍ୱଲଶସସ୍ର ଯୋଜନେ ପଡ଼ିଲା ସେ ବାଣ
ସେ ହରିକେଶନ ଅସ୍ତ୍ର କାଟିଲା ଦହନ ।
ଅଗସ୍ତି ବୋଇଲେ ଶୁଣ ମନୁ ଦଣ୍ଡଧର
କୌଣସି ଜୀବ ନ ବଧେ ଶୁନ୍ଦ ନୃପବର
ଅସ୍ତ୍ର ଥିଲେ ହରନ୍ତା ସେ ସିନା ପରନାରୀ
ତେଣୁ ଶର ସ୍ୱଲଗଲା ଅସ୍ତ୍ର ଛେଦିକରି ।
ଏହି ପ୍ରକାରେ ପ୍ରଜାଙ୍କୁ ପାଳେ ନରପତି
ତାର ରାଜ୍ୟେ କେହି ତେଣୁ ନ କରେ ଅମାନ୍ତି ।

ଏସନ ମହିମା ଅଟଇ ଶୁଦ୍ର ନୃପତିର
ଦରିଦ୍ର ଜଣେ କେ ନାହିଁ ରାଜ୍ୟରେ ତାହାର ।
ଏଥୁଅନ୍ତେ ମହାରାଜା ହୋଇଣ ଉଦାସୀ
ବତିଶ ଯୁଗ ଭୋଗିଲା ହୋଇ ସେ ସନ୍ନ୍ୟାସୀ ।
ସେହି ରାଜାର ଧର୍ମକୁ ନାଶିବା କେମନ୍ତେ
ଇନ୍ଦ୍ର କୁବେର ଏ ଦୁହେଁ ଭାଳି ଏକଚିତ୍ତେ ।
ଇନ୍ଦ୍ର ବିଚାରଇ କାଳେ ନିଏ ମୋର ସ୍ୱର୍ଗ
କୁବେର ବୋଲେ ମୋ ଧନ କରିବାକ ଭୋଗ
ଏସନକ କଥା ବେନି ମନେ ବିଚାରିଲେ
ଦରିଦ୍ର ବ୍ରାହ୍ମଣବେଶେ ତା ପାଶେମିଳିଲେ ।
ଜୀର୍ଣ୍ଣବାସ ମଳିନତା ଭାବ ଅତି ଦୁଃଖୀ
ମ୍ଳେଚ୍ଛ ବଟତଳେ ତାଙ୍କୁ ଶୁଦ୍ରରାଜା ଦେଖି ।
ମନେ ଅତ୍ୟନ୍ତ ହରଷ ହେଲେ ନରଈଶ
ବିଚାରିଲେ ଯ୍ରାଙ୍କ ଯୋଗେ ଧର୍ମ ହେଲା ନାଶ
ମୋ ରାଜ୍ୟରେ ଦ୍ୱିଜଙ୍କର ନାହିଁ ଏତେ କଷ୍ଟ
ଭାଳି ବୋଲେ ମାଗ ଦୁହେଁ ଯେ ଅଛୁ ଅଭୀଷ୍ଟ ।
ବ୍ରାହ୍ମଣ ବୋଇଲେ ତହୁଁ ଶୁଣ ତୁ ନୃପତି
ଆମ୍ଭେ ଦୁହେଁ ହୋଇଅଛୁ ଅତ୍ୟନ୍ତ କ୍ଷୁଧାର୍ତ୍ତି ।
ଶୁଦ୍ର ବୋଲେ ମାଗ ଆହେ ଯେ ତୁମ୍ଭର ଇଚ୍ଛା
ସତ୍ୟ ମୋର ପୂରାଇବି ତୁମ୍ଭ ମନୋବାଞ୍ଛା ।
ଉପର ହସ୍ତ କରିଣ ରାଜା ଦ୍ୟନ୍ତେ ପାଣି
ମଦ୍ୟ ମାଂସ ଭୋଜନ ସେ ମାଗିଲେ ସେକ୍ଷଣି ।
ଶୁଦ୍ର ବୋଲେ ତୁମ୍ଭେ ଦୁହେଁ ବ୍ରାହ୍ମଣ ଯେ ନୁହଁ
ଦ୍ୱିଜବର ହୋଇ ତୁମ୍ଭେ ଏହା କପାଁ କହ ।
ମୁହିଁ ଜାଣିଲଇଁ ତୁମ୍ଭେ ନିଶ୍ଚୟ ରାକ୍ଷସ
ଅସୁରମାନେ ଭୋଜନ କରନ୍ତି ଯେ ମାଂସ ।
ବିପ୍ର ବୋଇଲେ ବ୍ରାହ୍ମଣ ରାକ୍ଷସ ବା ହେଉ
ସତ୍ୟ ଲଙ୍ଘିଲୁ ବୋଲି ତୁ ଆମ୍ଭେ ଫେରିଯାଉ
ଆମ୍ଭର ପ୍ରାର୍ଥନା ନୋହୁ କଲେ ବଳେ ଯାଚି
ନ ଦେଲେ ଏ ବେଳେ ଧର୍ମ ନହେବ ତୋ କାଛି
ଶୁଦ୍ରରାଜା ବୋଲେ ଏହା କହ କାହିଁପାଇଁ
ଏଡ଼େ ଆପଦରେ ମୋତେ ପକାଇଲ କପାଇଁ
ଆଚ୍ଛା ଯେବେ ସତ୍ୟ ମୁହିଁ ତୁମ୍ଭରେ କରିଛି
ଭକ୍ଷ ମଦ୍ୟମାଂସ ମୋର ଦେହରୁ ଦେଉଛି ।
ବ୍ରାହ୍ମଣ ବୋଇଲେ ତୋର ବଡ଼କାଳ ମାଂସ
ତାହା ଭୁଞ୍ଜିଲେ ତହିଁରେ ଅଛି କିସ ରସ ।

ତୋହର ଅଛନ୍ତି ଯେଉଁ ଚାରିଗୋଟି ନନ୍ଦନ
ସେହି ଚାରିଙ୍କି ସନ୍ତୋଷେ ଦିଅ ତୁ ଭୋଜନ ।
ତହିଁ ମଧ୍ୟରୁ ଦୁଇଟି ଭକ୍ଷଣ କରିବୁ
ଆଉ ଦୁଇଗୋଟି ଆମ୍ଭ ସ୍ତ୍ରୀପାଇଁ ନେବୁ ।
ତୋପରି ରାଜାକୁ ଭେଟିଅଛୁ ଶୁଭବେଳେ
ଆମ୍ଭେ ଭୂପତି ଲଭିବୁ ତୋର ପୁଣ୍ୟବଳେ ।
ଶୁଦ୍ର ବୋଲେ ବୃଦ୍ଧମାଂସେ ଶ୍ରଦ୍ଧା ନୁହେଁ ଯେବେ
ଚାରିଗୋଟି ପୁତ୍ର ମୋର ଅଛି ଦେବି ତେବେ
ଜାଣିଲି କଷ୍ଟ ଦେବାକୁ ଆସିଅଛ ତୁମ୍ଭେ
ଚାରିଗୋଟି ପୁତ୍ର ଭକ୍ଷ ଦେଉଅଛୁ ଆମ୍ଭେ ।
ଦୁଇଟି ପୁତ୍ରଙ୍କୁ ଭକ୍ଷି ଦୁଇଗୋଟି ନିଅ
ତୁମ୍ଭର ଦୁଇ ଭାର୍ଯ୍ୟାଙ୍କୁ ସେ ଦୁହିଙ୍କି ଦିଅ ।
ଏମନ୍ତ ବଚନ ଯହୁଁ ବ୍ରାହ୍ମଣେ ଶୁଣିଲେ
ତୋହର ମଙ୍ଗଳ ହେଉ ରାଜାଙ୍କୁ କହିଲେ ।
ଶୁଦ୍ର ରାଜାର ବଚନେ ଗଲେ ବିପ୍ର ବେନି
ଚାରି ପୁତ୍ରଙ୍କୁ ଭେଟିଲେ କାଳାନଳ ଜିଣି ।
ସାର ସୁର ସର ସିର ଚାରିପୁତ୍ର ନାମ
ଅତିବ ସୁନ୍ଦର ସେହି ଅଭିନବ କାମ ।
ବ୍ରାହ୍ମଣଙ୍କ ମନେ କେବେ ମମତା ନୋହିଲା
ସେ ଚାରିଙ୍କି ମାରିବାକୁ ସେନେହ ବଳିଲା ।
ଦ୍ୱିଜଙ୍କୁ ଦେଖିଣ ପୁତ୍ର କୁଶଳ ପୁଚ୍ଛନ୍ତି
କେଉଁ ସ୍ଥାନରେ ତୁମ୍ଭର ଅଟଇ ବସତି ।
ମନ୍ତ୍ର ପଢ଼ି ଦୁଇ ଦ୍ୱିଜ କଲ୍ୟାଣ ବାଞ୍ଛିଲେ
ଶୁଣ ଆହେ ବାବୁ ତୁମ୍ଭ ପିତା ଆଜ୍ଞାଦେଲେ ।
ପିତାଙ୍କର ଆଜ୍ଞା ତୁମ୍ଭେ ଧେନ ବାବୁ ଶିରେ
ଶୁଣି ଯୋଡ଼ହସ୍ତେ ଉଭା ହୋଇଲେ କୁମରେ
ସେ ବିପ୍ର ବୋଇଲେ ଆମ୍ଭେ ମଧୁମାଂସ ଭୋଗୀ
ତୁମ୍ଭ ପିତା ସତ୍ୟ ତୁମ୍ଭେ ଆମ୍ଭ ଉପଯୋଗୀ ।
ସତ୍ୟପାଳ ଶୁଦ୍ରରାଜା ଦେଲେ ଯେ ତୁମ୍ଭଙ୍କୁ
ଚାରିଙ୍କି ଖାଇବାପାଇଁ କହିଲେ ଆମ୍ଭଙ୍କୁ ।
ତୁମ୍ଭେ ବଡ଼ ରାଜାଙ୍କର ପୁତ୍ର ଚାରିଗୋଟି
ତୁମ୍ଭର ମାଂସ ଭକ୍ଷିବୁ ଆମ୍ଭେ ଦୁହେଁ ବାଣ୍ଟି ।
ତୁମ୍ଭ ଚାରିଙ୍କରୁ ଆମ୍ଭେ ଦୁଇଟି ଭକ୍ଷିବୁ
ଆନ ଦୁଇଟିକୁ ନେଇ ଭାରିଯାକୁ ଦେବୁ ।
ଶଙ୍କିତ ହୋଇଣ ସୁର ଇଷ୍ଟ ଯେ ଦେବତା
ମାରି ମାଂସ ଭକ୍ଷିବାକୁ ଦେଲେ ତୁମ୍ଭ ପିତା ।

ଏହା କହି ଦୁଇ ଦ୍ୱିଜ ଅତିବ ବ୍ୟଗ୍ରରେ
ହାଣିବା ନିମନ୍ତେ ଅସ୍ତ୍ର ଧଇଲେ ସେ କରେ ।
କୁମର ବୋଇଲେ ରହ ରହ ବିପ୍ରବର
ଏପରି ପିତା କି କାହିଁ ଦେଖିଛ ପୃଥ୍ୱୀର ।
ପୂର୍ବେ ଶୁଣିଅଛୁ ଶିବି ନାମେ ନରପତି
ଆପଣା ମାଂସକୁ ଦେଇ ରଖିଲା କପୋତି ।
ଆଉ ଏକ ରାଜା ଥିଲା ଜୀମୂତ ବାହନ
ନିଜ ଦେହ ମାଂସ ଦେଇ ତୋଷିଲା ସୁପର୍ଣ୍ଣ ।
ଉତ୍ତମ ପୁଣ୍ୟାତ୍ମା ଯେବେ ପିତା ହୋଇଥାଇ
ପୁତ୍ରପାଇଁ ବିପ୍ରଠାରେ ଭକତି କରଇ ।
ବଂଶ ରକ୍ଷା କରିବାକୁ ପିତା କରେ ବାଞ୍ଛା
ଅନେକ ଦୁଃଖରେ ପୁତ୍ର କରେ ରକ୍ଷା ଇଚ୍ଛା ।
ପୁତ୍ର ନାଶ ନ କରଇ ପିତା ହୋଇକରି
ନିଷ୍ଠୁର ଜାଣିଲୁ ପିତା ନୁହେଁ ସେ ଆମ୍ଭର ।
ପିତା ହୋଇ ପୁତ୍ର ଭଲ ନ ଚାହିଁଲା ଯେବେ
ତାହାର ଆଜ୍ଞା ପାଳିବା ଆମ୍ଭେ କିପାଁ ତେବେ
ଫେରିଯାଅ ବିପ୍ର ଆମ୍ଭ ପାଶରେ ନ ରହି
ସେ ନୃପତି କରୁ ତୁଷ୍ଟ ଅନ୍ୟମାଂସ ଦେଇ ।
ଏପରି ନିରାଶ ବାକ୍ୟ ଶୁଣି ଦ୍ୱିଜବରେ
କ୍ଷୁଧାର୍ତ୍ତ ହୋଇ ମିଳିଲେ ନୃପତି ପାଶରେ ।
ନରପତିକି ଅନାଇଁ କହନ୍ତି ବ୍ରାହ୍ମଣ
ସେହିମାନେ ନୁହନ୍ତି ଟି ତୋର ପୁତ୍ର ଜାଣ ।
ତ୍ରୈଲୋକ୍ୟରେ ଖ୍ୟାତ ଅଟେ ତୋ ଧାର୍ମିକପଣ
ଏବେ ଆମ୍ଭେ ଦେଖିଲୁ ହେ ଅପୂର୍ବ ଲକ୍ଷଣ ।
ତୋର ଭାର୍ଯ୍ୟାରୁ ସେମାନେ ଜନମ ନୁହନ୍ତି
ତୋ ଭାର୍ଯ୍ୟା ଜାତ କରିଛି କରି ସ୍ନେହ ପ୍ରୀତି ।
ଯଦ୍ୟପି ସେମାନେ ତୋର ପୁତ୍ର ହୋଇଥାନ୍ତେ
ତୋହର ଆଜ୍ଞା କଦାପି ଲଂଘି ନ ପାରନ୍ତେ ।
ଏପରି ଅନ୍ୟାୟ ଜାଣିଥିଲେ ଆମ୍ଭେ ତୋର
କି ନିମନ୍ତେ ପ୍ରାର୍ଥୀ ଆମ୍ଭେ ହୋନ୍ତୁ ନରେଶ୍ୱର
ଦ୍ୱିଜଙ୍କ ଝିଙ୍ଗାସ ରାଜା ନ ପାରିଲା ସହି
ଖଡ଼ଗ ଘେନି ଧାଇଁଲା କୋପାବିଷ୍ଟ ହୋଇ ।
ବୋଲେ ଭାର୍ଯ୍ୟାମୁଣ୍ଡ ମୁହିଁ କାଟିବି ଏକ୍ଷଣି
ସ୍ତ୍ରୀହତ୍ୟା ହେଉ ପଛକେ ଯାଅ ବିପ୍ରମଣି ।
ସ୍ୱା କହି କୋପେ କମ୍ପାଇ ଆପଣାର କାୟ
ଉପପତି କରି ଜନ୍ମ କଲୁ ମୋ ତନୟ ।

ଏଥିର ଦ୍ରୁତଫଳ ତୁ ପାଅ ଏହିଲାଗେ
ପକ୍ଷୀହୋଇ ଜାତ ହୁଅ ତୁହି ଏହିଯୋଗେ ।
ଏ ଚାରିପୁତ୍ରେ ତୋହର ଗର୍ଭେ ଜନ୍ମ ହେବେ
କର୍ମାନୁସାରେ ସେମାନେ ଏ ଫଳ ଭୋଗିବେ ।
ମୋ ବଚନ ନ ମାନିଲେ ତୋର ଚାରିପୁତ୍ରେ
ଜନ୍ମ ହୋଇ ରହିବେ ସେ ତୋର ଗର୍ଭଗତେ
ଦୁରାପଦ ଶାପ ଯହୁଁ ଦେଲା ମହାରାଜା
ବିକଳ ହୋଇଣ କହେ ତାହାର ଭାରିଯା
ଅଦୋଷରେ କିପାଁ ପ୍ରଭୁ ଦେଲ ଅଭିଶାପ
ମୋର ଚାରିପୁତ୍ରେ ଅବା କଲେ କେଉଁପାପ ।
ଦ୍ୱିଜଙ୍କର ଛଳକଥା ଜାଣି ନ ପାରିଲ
ଅଳପ କଥାରେ ମୋତେ ଅଭିଶାପ ଦେଲ ।
କେମନ୍ତେ ଖଣ୍ଡନ ହେବ ମୋର ଅଭିଶାପ
ତାହାର ବିକଳ ବାଣୀ ଶୁଣି ନରାଧିପ ।
ଶାନ୍ତହୋଇ ଦେଖି ରାଜା ଭାର୍ଯ୍ୟାର ବିକଳ
ବୋଇଲା ମୋ ଅଭିଶାପ ନୋହିବ ନିଷ୍ଫଳ ।
ସତ୍ୟ ତ୍ରେତୟା ଦ୍ୱାପର ତିନିଯୁଗ ଅନ୍ତେ
ପୁତ୍ର ଜନ୍ମ ହୋଇଥିବେ ତୋର ଗର୍ଭଗତେ
ଦ୍ୱାପର ଶେଷେ ଭାରତ ସମର ହୋଇବ
କୁରୁ ପାଣ୍ଡବଙ୍କ ଯୁଦ୍ଧ ସେଠାରେ ଘଟିବ ।
କୃଷ୍ଣ ସାରଥି ହୋଇବେ ଅର୍ଜୁନର ରଥେ
ଭୀଷ୍ମ ଯୁଦ୍ଧ କରିବେଟି ପାର୍ଥର ସହିତେ ।
ଦିବ୍ୟଜ୍ଞାନ ପ୍ରାପ୍ତହୋଇ ହେତୁ କରିଥିବୁ
ପ୍ରଥମ ଦିନର ଯୁଦ୍ଧ ସେଠାରେ ଦେଖିବୁ ।
ଦୁଷ୍ଟପୁତ୍ର ଜନ୍ମିକଲୁ ତୁହି ଗର୍ଭଗତେ
ତୋ ପେଟ ଚିରାହୋଇବ ଭୀଷ୍ମ ଶରାଘାତେ ।
ସେହି ଯୁଦ୍ଧେ ତୋର ମାଂସ ଟିକି ଟିକି ହେବ
ତହୁଁ ମୁକ୍ତ ଲଭି ମୋର ମନ୍ଦିରେ ଆସିବ ।
ତୋ ଗର୍ଭୁ ପଡ଼ିବ ଚାରି ଜନ୍ମ ସେହିଠାରେ
ଘଣ୍ଟି ଆବରଣ ହେବ ଜନ୍ମଙ୍କ ଉପରେ ।
ତହିଁ ଉପରେ ପଡ଼ିବ ସେନା ସହ ହସ୍ତୀ
ତାହା ଉପରେ ପଡ଼ିବ ରଥୀ ମହାରଥୀ ।
ପଡ଼ିବ ନ ଥାଳ ଉଚେ ତହିଁ ମୃତପିଣ୍ଡ
ଯାତଚାଳ ଚୂର୍ଣ୍ଣହେବ ରଣଭୂମି ଖଣ୍ଡ ।
ଭୀଷ୍ମ ଯୁଦ୍ଧ ବେନିଦିନେ ସେହି ଜନ୍ମ ଫୁଟି
ତହିଁ ସମର ଦେଖିବେ ପକ୍ଷୀ ଚାରିଗୋଟି ।

ପିତାର ବାକ୍ୟ ଲଙ୍ଘିଲେ ଯହୁଁ ଶୁକପୁତ୍ରେ
ଭରଣ୍ଡଆ ନାମ ବହି ରହିଲେ ଯୁଗାନ୍ତେ ।
ଶୁଣ ବୈବସ୍ୱତ ମନୁ ସ୍ଥିରକର ମତ
ତାରାକ୍ଷୀ ପକ୍ଷୀର କଥା ଅଟେ ଏହିମତ ।
ସତ୍ୟଯୁଗେ ଶୁଦ୍ଧକଥା ପୁଚ୍ଛେ ଯେଣୁ ମେଣ୍ଟି
ସେହି ଦୋଷେ ତାରାକ୍ଷୀର ପେଟଗଲା ଫାଟି ।
ଶୁଣିକର ଆନନ୍ଦିତ ହୋଇ ମହାରାଜା
ଅଗସ୍ତିଙ୍କ ଚରଣରେ କଲେ ଦିବ୍ୟପୂଜା ।
ଭୀଷ୍ମଦେବଙ୍କ ସଂଗ୍ରାମ ବଡ଼ଇ ଦୁର୍ଲ୍ଲଭ
ତାରାକ୍ଷୀର ଗର୍ଭକଥା ଅତ୍ୟନ୍ତ ସୁଲଭ ।
ଶୁଣିଲେ ପାପ ଖଣ୍ଡିବ ଯାହା ଥିବ ଅଙ୍ଗେ
ପରମ ଗତି ଲଭିଣ ବସିବ ସେ ସ୍ୱର୍ଗେ ।
ଅଗସ୍ତି କହୁଅଛନ୍ତି ମହାବ୍ରହ୍ମଜ୍ଞାତା
ତିଲଙ୍ଗା ଦେଶର ରାଜା ଅଟନ୍ତି ସେ ଶ୍ରୋତା
ଭୀଷ୍ମ ବିନ୍ଧୁଛନ୍ତି ଯେତେ ଶର ଅର୍ଜ୍ଜୁନକୁ
ଦେବଙ୍କୁ ଦୁର୍ଲ୍ଲଭ ନର କି ଲେଖିବ ତାକୁ ।
କହନ୍ତେ ନ ସରିବ ଯେ ଭୀଷ୍ମଙ୍କ ସମର
ତାଙ୍କ ବାଣଘାତେ ପୃଥ୍ୱୀ ହେଲା ଥରହର ।
ମହାକ୍ଷତ୍ରିୟ ଅର୍ଜ୍ଜୁନ ସାଧୁ ତା ମହିମା
ଭୀଷ୍ମଦେବ ପ୍ରଶଂସା କରନ୍ତି ମହାତ୍ମା ।
ନସ୍ତନ ଛଟକେ ସେହି କରଇ ସଂଗ୍ରାମ
ନିଃଶ୍ୱାସ ମାରିବା ପାଇଁ ନାହିଁ ସେ ବିଶ୍ରାମ ।
ଆଗରେ ଭୀମ ଦୁର୍ଦ୍ଧର୍ଷ ପଛେ ଧର୍ମସୁତ
କୌରବ-ସୈନ୍ୟ ମାଇଲେ ତିନ ଅଭିବ୍ରତ ।
ବଡ଼ ଗୁରୁତର ତହିଁ ହେଲା ମହାରଣ
ଗଜ ଅଶ୍ୱ ପଦାତି କେ କରିବ କଳନ ।
ପର୍ବତ ନ ସହେ ଯେଉଁ ବୃକୋଦର ଭାର
କର୍ଦ୍ଦମ ହେଉଛି ରକ୍ତେ ତହିଁ ବସୁନ୍ଧରା ।
ଥାଟ ଭାଙ୍ଗି ଯୁଧିଷ୍ଠିର ଦୁର୍ଦ୍ଧର୍ଷ ଆସନ୍ତେ
ଉଗାଳିଲେ ଅଶ୍ୱତ୍ଥାମା କର୍ଣ୍ଣ ତାଙ୍କୁ ପଥେ ।
ସେ ଦୁହିଙ୍କ ଭୁଲେ ଛନ୍ତି ତ୍ରିଂଶକୋଟି ଯୋଧୀ
ଏକମୁଖେ ଯୁଧିଷ୍ଠିରଙ୍କି ସର୍ବେ ଶର ବିନ୍ଧି ।
କୁନ୍ତୀପୁତ୍ର ବୃକୋଦର ଅଟେ ମହାବଳୀ
ତାକୁ ଦେଖି କୃତବର୍ମା ଶଲ୍ୟ ଯେ ଉଗାଳି ।
କର୍ଣ୍ଣ ବୀରକୁ ଦେଖିଣ ଦୁର୍ଦ୍ଧର୍ଷ ବୋଲଇ
ପଥଛାଡ଼ ଯୁଧିଷ୍ଠିରେ ବିଶେଷ ବାଧଇ ।
ଯୁଧିଷ୍ଠିରଙ୍କର ତୁମ୍ଭେ ଅଟ ଜ୍ୟେଷ୍ଠଭ୍ରାତ
ତେଣୁ ବିନୟ କରିଣ କହୁଛୁ ବହୁତ ।
କର୍ଣ୍ଣ ବୋଲେ ଦୁର୍ଦ୍ଧର୍ଷ ତୁ କଲୁ ମୃତ୍ୟୁଇଚ୍ଛା
ବୁଡ଼ାଇଲୁ ଶ୍ରୀସମ୍ପଦ ଏହା ଥିଲା ବାଞ୍ଛା ।
ନାଶଯିବାକାଳେ ହେଲା ବିପରୀତ ବୁଦ୍ଧି
ପାଦରେ ଏଡ଼ିଲୁ ତୁହି ଏଡ଼େକ ସମୃଦ୍ଧି ।
କୋପ ବହିଣ ଦୁର୍ଦ୍ଧର୍ଷ ଗଦା ଘେନି ହସ୍ତେ
ପ୍ରହାର କଲାକ ନେଇ କର୍ଣ୍ଣବୀର ରଥେ ।
ଭାଜିଣ ସେ ରଥବର ହୋଇଗଲା ଚୂନା
ଡେଇଁ ରଥ ଆଡ଼ହେଲେ କର୍ଣ୍ଣ ମହାମନା ।
କର୍ଣ୍ଣକୁ ବିରଥ ଦେଖି ଧାଏଁ ସୋମଦତ୍ତ
ଉଗାଳିଲା ବହୁରଥୀ ଘେନି ଜୟଦ୍ରଥ ।
କୁନ୍ତ ଅସିପଣ ଆଉ ଲଙ୍କିଆ ଗୁରୁଜ
ପ୍ରହାରନ୍ତେ ଦିଶେ ଯେହ୍ନେ ବିଜୁଳିର ତେଜ ।
ଏକ ଯୋଦ୍ଧାକୁ ବେଢ଼ିଲେ ଦଶସହସ୍ର ରଥୀ
ତାହାଙ୍କୁ ଦୁର୍ଦ୍ଧର୍ଷ ମନେ ନ କରଇ ଭୀତି ।
ରେରେକାର କରିଣ ସେ ଦୁର୍ଦ୍ଧର୍ଷ ଧାମଇ
ଛାଗଳ ପଲକୁ ଯେହ୍ନେ ବ୍ୟାଘ୍ର ଘଉଡ଼ଇ ।
ଗର୍ଜିଣ ଧାଇଁଲେ ଯହୁଁ କୌରବ ସଇନ
ମୁଖ ଧ୍ୱନିରେ କମ୍ପିତ ହୋଇଲା ମେଦିନୀ ।
ଗହଳ ଧାହୋଳ ଶୁଣି ଧାଏଁ ଭୀମସେନ
ରୂପ ଦେଖି ଜଣାଯାଏ ଯେହ୍ନେ କାଳଯମ ।
ବୃକୋଦରକୁ ଦେଖିଣ ସୈନ୍ୟ ଗଲେ ଭାଜି
ପାଣ୍ଡବ ସୁନ୍ଦର ଆସୁ କୋପେ ଗଳଗାଜି ।
ଦୁର୍ଦ୍ଧର୍ଷ ଯେ ଭୀମସେନ ଏକଇ ମୂରତି
ଧର୍ମଙ୍କୁ ଘେନି ମିଳିଲେ ଅର୍ଜ୍ଜୁନଙ୍କ କତି ।
ଧୃଷ୍ଟଦ୍ୟୁମ୍ନ ରଥେ ଚଢ଼ି ଚଳିବାରୁ ବେଗେ
ଦ୍ରୋଣଗୁରୁ ଯାଇଁ ତାଙ୍କୁ ଉଗାଳିଲେ ଆଗେ ।
କରେ ଧନୁଶର ଧରି ସେ ବୀର ପାଞ୍ଚାଳ
ବିନ୍ଧିଲା ନାରାଚ ଦ୍ରୋଣ ଗୁରୁଙ୍କୁ ତତ୍କାଳ ।
ନିବାରନ୍ତେ ପାଞ୍ଚଶର ଘେନି ଦ୍ରୋଣଗୁରୁ
ଦେଖିଣ ଧୃଷ୍ଟଦ୍ୟୁମ୍ନ ଛେଦିଲା ତା ଦୂରୁ ।
ପଞ୍ଚବିଂଶତି ନାରାଚ ଘେନି ଗୁରୁ ଦ୍ରୋଣ
ପବନହୁଁ ବେଗକରି ବିନ୍ଧିଲେ ତକ୍ଷଣ ।
ଚଞ୍ଚଳ ଗତିରେ ଶର ବିନ୍ଧେ ଦ୍ରୋଣଗୁରୁ
ଧୃଷ୍ଟଦ୍ୟୁମ୍ନ ଦେଖି ତାହା ନିବାରଇ ଦୂରୁ ।

ଦୃଢ଼ସେନ ସେ ଧୃଷ୍ଟଦ୍ୟୁମ୍ନର ସାରଥି
ବାୟୁଗତି ପରି ଅଶ୍ୱ ବାହେ ଶୀଘ୍ରଗତି ।
କ୍ଷଣେ ମର୍ତ୍ତ୍ୟେ ରହେ ପୁଣି କ୍ଷଣକେ ଆକାଶେ
ଦ୍ରୋଣ ପ୍ରଶଂସା କରନ୍ତି ସୂତଙ୍କୁ ବିଶେଷେ ।
ଚୈଳରଥୀ ସ୍ୱର୍ଣ୍ଣମୟ ରଥଗୋଟି ମଣ୍ଡି
ଚହ୍ନିରେ ବସି ଯାଆନ୍ତି ଉଗାଳେ ଶିଖଣ୍ଡୀ ।
ଶଙ୍ଖତଲ ପକ୍ଷୀ ଲଗା ନାରାଚ ଦ୍ୱାଦଶ
ଶଲ୍ୟଙ୍କ ଉପରେ ବିନ୍ଧେ ଦ୍ରୁପଦର ଶିଷ୍ୟ ।
ଶାୟକ ଆସିବା ଦେଖି ଶଲ୍ୟ ମହାରଥୀ
ବାୟବ୍ୟ ଅସ୍ତ୍ରରେ ବୀର ତାହା ନିବାରନ୍ତି ।
ଘାତ ପ୍ରତିଘାତେ ଶୁଭେ ଶସ୍ତ୍ର ପରିତାଳ
ଉଠଇ ଅଗ୍ନିର ଶିଖା ଯେହ୍ନେ ଦାବାନଳ ।
ଅନ୍ଧକାର ହୁଏ ଯେହ୍ନେ ବରଷା ଋତୁରେ
ଶରେ ଅନ୍ଧକାର ହୁଏ ଦେଖନ୍ତି ଦିନରେ ।
ବେଳୁବେଳ ଶୁଭେ ଉଭୟଙ୍କର ମୁଖଧ୍ୱନି
ଗର୍ଜ୍ଜନ୍ତି ଗର୍ଜ୍ଜନ୍ତି ବୀରେ ମତ୍ତଗଜ ଜିଣି ।
ଭାରତ ଯୁଦ୍ଧରେ ବୀର ବଡ଼ଇ ସମର୍ଥ
ଏକ ପ୍ରତି ଆରେକ ଯେ ଅଟେ ବଳବନ୍ତ ।
ଦ୍ରୁପଦ ରାଜାନନ୍ଦନ କରେ ଧରି ବାଣ
ବିନ୍ଧି ଶଲ୍ୟ ଶରୀରକୁ କଲା ରକ୍ତବର୍ଣ୍ଣ ।
ଦଶାଘାତେ ନାରାଚକୁ ଶଲ୍ୟ ଧରି କରେ
ବିନ୍ଧନ୍ତେ ଶିଖଣ୍ଡୀ ରଥ ଭାଙ୍ଗିଲା ସତ୍ୱରେ ।
ତହୁଁ ଶିଖଣ୍ଡୀ କୁମୁଦ ଗଜ ଆରୋହିଲା
ଶଲ୍ୟଙ୍କ ଉପରେ ନେଇ କୁନ୍ତ ପ୍ରହାରିଲା ।
କୁନ୍ତ ମୁନରେ ଶଲ୍ୟଙ୍କ ରଥକୁ ସେ ତୋଳି
ଚକ୍ରପରି ବୁଲାଇଲା ତାକୁ ମହାବଳୀ ।
ରଥ ତେଜି ଶଲ୍ୟବୀର ପଡ଼ି ଭୂମିଗତ
ତାହାଙ୍କ ଅବସ୍ଥା ଦେଖି ଧାଇଁ ସୋମଦତ୍ତ ।
ଶଲ୍ୟ ଯାଇ ଆରୋହିଲେ ସୋମଦତ୍ତ ରଥ
ଦୁଇ ଯୋଦ୍ଧା ଏକ ହୋଇ କଲେ ଶରଘାତ ।
ଦୁହେଁ ଶର ବରଷିଲେ ଏକରଥେ ବସି
ସେ ଅସ୍ତ୍ରମାନଙ୍କ ତେଜ ଅଗ୍ନି ପ୍ରାୟ ଦିଶି ।
ସମରରେ ଜ୍ୱାଳାବଳ ଜାଣ ଆଚ୍ଛଯାତେ
ଅଦୃଶ୍ୟ ହୋଇଲେ ସୂର୍ଯ୍ୟ ଗଗନର ପଥେ ।
ଦେଖ ଆହେ ମହିମା ସେ ବୀର ଶିଖଣ୍ଡୀର
ରଣେ ଅନିବାର୍ଯ୍ୟ ଅଟେ କ୍ଷତ୍ରୀ ମହାବୀର ।

ଏକା ଯୋଦ୍ଧାକୁ ବିନ୍ଧିଲେ ପଞ୍ଚସହସ୍ର ରଥୀ
ସର୍ବେ ଏକମୁଖ ହୋଇ ନାରାଚ ବିନ୍ଧନ୍ତି ।
ମହୀ କମ୍ପିଲା କ୍ଷତ୍ରୀଙ୍କ ଗୁଣନାଦ ଶବ୍ଦେ
ପୃଥ୍ୱୀ ଟଳମଳ ହେଲା ଗଜଙ୍କର ପାଦେ ।
ଶଲ୍ୟ ସୋମଦତ୍ତ ଏହି ବେନି ମହାରଥୀ
ଶତ ଶତ ନାରାଚ ସେ କୋପରେ ବିନ୍ଧନ୍ତି ।
ଦୂରରୁ ଦେଖିଣ ତାହା ପାଞ୍ଚାଳ ନନ୍ଦନ
ଧାଡ଼ିକାରେ ବିନ୍ଧିଲା ସେ ପାଞ୍ଚଗୋଟି ବାଣ ।
ସୋମଦତ୍ତ ଶଲ୍ୟଙ୍କର ନାରାଚ ଛେଦିଲା
ଛନ ଛନବାଣ ଆଉମାନଙ୍କୁ ବିନ୍ଧିଲା ।
ଶିଖଣ୍ଡୀ ବିନ୍ଧେ ନାରାଚ ଅତି ଅଗୋଚର
ସେ ଅସ୍ତ୍ରମାନ ପଡ଼ିଲା ଯୋଦ୍ଧାଙ୍କ ଉପର ।
ସେହ୍ନା ଫୁଟି ନାରାଚ ଯେ ଭେଦେ ସର୍ବଅଙ୍ଗ
ମନ୍ଦାର କୁସୁମ ପରି ଦିଶେ ତାଙ୍କ ରଙ୍ଗ ।
ତହୁଁ ଯୁଦ୍ଧେ ଭଙ୍ଗ ଦେଲେ ସମସ୍ତ ଯୋଦ୍ଧାଏ
ସାଧୁ ବୋଲି ପ୍ରଶଂସିଲେ ଶିଖଣ୍ଡୀକୁ ସବେ ।
ଏଡ଼େ ବଳବନ୍ତ ଭୂପ ଶ୍ରୀକୃଷ୍ଣ ପ୍ରସାଦେ
କିଏ ସେ ଠିଆ ହୋଇବ ତା ସମ୍ମୁଖରେ ଯୁଦ୍ଧେ
ଧୃଷ୍ଟ ଅର୍ଜ୍ଜୁନଙ୍କ ଯୁଦ୍ଧ ଅତି ଘୋରତର
ମର୍ତ୍ତ୍ୟମଣ୍ଡଳରେ କିଏ ସମାନ ତାଙ୍କର ।
ମାରି ନ ପାରିଲେ ଯହୁଁ ଯୋଦ୍ଧାଙ୍କୁ ଗାଙ୍ଗେୟ
ବେଳକୁ ଦେଖି ସମର ହେଲା ଅତିଶୟ ।
ଦ୍ରୋଣଙ୍କର ସଙ୍ଗେ ଯୁଝେ ସେ ଧୃଷ୍ଟଦ୍ୟୁମ୍ନ
ନକ୍ଷତ୍ରପନ୍ତି ପରାୟେ ବିନ୍ଧେ ଶରମାନ ।
ଶଲ୍ୟ ସୋମଦତ୍ତ ବେନି ଏକାକେ ଶିଖଣ୍ଡୀ
ଷୋଳସହସ୍ର ଯୋଦ୍ଧାରେ ହୋଇଛି ସେ ମଣ୍ଡି
ଦୁର୍ଦ୍ଦକ୍ଷ ସଙ୍ଗତେ ଯୁଦ୍ଧ କରେ ଦୁଃଶାସନ
ନକୁଳର ସଙ୍ଗେ ଯୁଝେ ଜୟଦ୍ରଥ ଜାଣ ।
ଉପରୋଧ ନାହିଁ କିଛି ନ ଦିଶନ୍ତି ରଣେ
ଅଶ୍ୱ ଗଜ ଆରୋହଣ ଯୁଝି ଜଣେ ଜଣେ ।
ଏପରି ଯୁଦ୍ଧ କରନ୍ତି ବେନିପକ୍ଷ ସୈନ
ସୂର୍ଯ୍ୟ ଅସ୍ତ ହୋଇବାକୁ ଅଛି ଘଡ଼ି ତିନ ।
କ୍ଷୁଧା ତୃଷାରେ ବିମୁଖ ହେଲେ ରଥୀ ଯୋଧୀ
ସର୍ବେ ଅଶକତେ ଶର ନ ପାରନ୍ତି ବିନ୍ଧି ।
ମାନଗୋବିନ୍ଦ ଅଗ୍ରତେ କହଇ ଶକୁନି
ଉପବାସେ ଅଶକ୍ତ ହେଲେ ସର୍ବ ସୈନ ।

ତୁମ୍ଭ ରାଜରାଜେଶ୍ୱର ଅଟ ମହାବାହୁ
ଆଜ୍ଞାଦିଅ କୁରୁନାଥ ଯୁଦ୍ଧ ଆଜି ରହୁ ।
ମନ୍ତ୍ରୀବରର ବଚନେ କହେ କୁରୁରାଜ
ଭୀଷ୍ମଙ୍କୁ କହ ମାତୁଳ ଯୁଦ୍ଧ ରହୁ ଆଜ ।
ରାଜାଙ୍କର ବଚନରେ ସେ ମନ୍ତ୍ରୀ ଶକୁନି
ରଥଧ୍ୱଜ ପରେ ଯାଇ କଲା ଶଙ୍ଖଧ୍ୱନି ।
ଆଜ ଯୁଦ୍ଧ ରହୁ ବୋଲି ବୋଲେ ମନ୍ତ୍ରୀବର
ବେଳ ଅସ୍ତ ହେଲା ଭୀଷ୍ମ ସମର ନ କର ।
ସମରରେ ମହାଶ୍ରାନ୍ତ ହେଲା ବେଳ ଅସ୍ତ
ଧନୁ ଧରି ନ ପାରନ୍ତି ଦେହ ଅଶକତ ।
ସମସ୍ତ ଯୋଦ୍ଧାମାନଙ୍କୁ ବିରସ ସେ ଦେଖି
ଶାନ୍ତନୁଙ୍କର ନନ୍ଦନ ସମର ଉପେକ୍ଷି ।
ରଣ ତ୍ୟାଗ କରୁଁ କରୁଁ ସୂର୍ଯ୍ୟ ଅସ୍ତ ହେଲେ
ଉଭୟ ପକ୍ଷର ସୈନ୍ୟ ଉପାସେ ରହିଲେ ।
ପାର୍ଥଙ୍କୁ ଚାହିଁ ଶ୍ରୀକୃଷ୍ଣ ବଚନ କହିଲେ
ସମର ରହିତ ହେଲା ଦେଖ ତୁମ୍ଭେ ଭଲେ ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ଯାଇ ଏକାସନେ
ଆସ୍ଥାନ କରି ବସିଲେ ଭୀମ ଦୁଃଶାସନେ ।
କର୍ଣ୍ଣାର୍ଜ୍ଜୁନ ହେଲେ ଏକ ଆସନରେ ବିଜେ
ସୋଦର ଗୁଣ ଶୁଣିଲେ ରାଜା ମହାରାଜେ ।
ଯୁଦ୍ଧକଥା ପରସ୍ପର କୁହାକୁହି ହୁଅନ୍ତି
କିଏ କାହାକୁ ମାରିଲା ବୋଲି ପଚାରନ୍ତି ।
କେହୁ ରନ୍ଧନ ଭୋଜନ କାର୍ଯ୍ୟରେ ଲାଗିଲେ
କେହୁ ଯୁଦ୍ଧ ଶ୍ରାନ୍ତ ହୋଇ ଅଚେତେ ଶୋଇଲେ
ଏମନ୍ତ ଶ୍ରମ ହରଣ ଗଲେ ଯେଝା ବାସ
ନିତ୍ୟକର୍ମ ଭୋଜନାନ୍ତେ ହେଲେ ନିଦ୍ରାବଶ ।
ରଜନୀ ଶେଷରେ ଯହୁଁ ପ୍ରଭାତ ହୋଇଲା
ଅରୁଣ ସାରଥି ରଥ ସଜାଇ ଆଣିଲା ।
ପୂର୍ବେ ଯେଉଁ ସପ୍ତଅଶ୍ୱ ସୂର୍ଯ୍ୟ ପାଇଥିଲେ
ସାରଥି ଆଣି ସବୁଙ୍କୁ ରଥରେ ଯୋଚିଲେ ।
ଦିବ୍ୟ ରତ୍ନରେ ମଣ୍ଡିଣ ସୂର୍ଯ୍ୟଙ୍କର ରଥ
ଉଦୟାଚଳେ ଆଣନ୍ତେ ବିଜେ ଦିନନାଥ ।
ତ୍ରିପୁର ବଲ୍ଲଭନାଥ ଜଗତ୍ ପ୍ରତିପାଳି
ଅନ୍ଧକାର ନିବାରଣ କଲେ ଅଂଶୁମାଳି ।
ବ୍ରାହ୍ମଣ ସନ୍ନ୍ୟାସୀ ଯୋଗୀ ଶୁଚିବନ୍ତ ଯତି
ନଦୀ ତଡ଼ାଗରେ ନିତ୍ୟକର୍ମ ଆଚରନ୍ତି ।

ଏ ସମୟେ ଶଙ୍ଖନାଦ କଲେ ମଧୁଭାଷୀ
ଦଣ୍ଡ ସାଜ ସାଜ ବୋଲି ବାଜେ ଭେରୀ ତୁରୀ
କଉରବଙ୍କ ପକ୍ଷରେ ସର୍ବ ସୈନ୍ୟ ଉଠି
ନିତ୍ୟକର୍ମ ସାରିବାକୁ ଗଲେ ନିଜ ଘାଟ ।
ଶାନ୍ତନୁପୁତ୍ର ସ୍ନାହାନ ତର୍ପଣାଦି ସାରି
ଘରେ ବସି ମାଧବଙ୍କୁ ଚିତ୍ତରେ ସୁମରି ।
ମାଧବ ହେତୁରୁ ମୋର ସମସ୍ତ ମଙ୍ଗଳ
ପୂଜେ ଗଣେଶ ମୁଁ ଭକ୍ତିକରି ଚିରକାଳ ।
ଶଙ୍ଖ ଚକ୍ର ଗଦା ପଦ୍ମ ହସ୍ତରେ ଶାରଙ୍ଗ
ପୃଥ୍ୱୀଭାର ନିବାରଣ କରୁ କୂଟଭଙ୍ଗ ।
ଜୟ ଜଗନ୍ନାଥ ନୀଳକନ୍ଦର ନିବାସୀ
କଳିକାଳ ଦୁଃଖ ତବ ଦରଶନେ ନାଶି ।
ଜୟ ଜଗନ୍ନାଥ ତୁମ୍ଭ ସାଧୁ ହୃଦକାଶୀ
ସର୍ବଜନଙ୍କୁ ଉଦ୍ଧରୁ ଜଗତ ନିବାସୀ ।
ଜୟ ଜଗତଜୀବନ ଜଗଦୁଦ୍ଧାରଣ
ଗୋପୀଙ୍କ ମନମୋହନ ଶରଣ ରକ୍ଷଣ ।
ଯୋଗୀଜନ ବକ୍ଷସ୍ଥଳେ ତୁମ୍ଭ ପଦ୍ମମାଳ
କାଳନ୍ଦୀ ହ୍ରଦରେ କାଳୀନାଗ ଦର୍ପ ଦଳ ।
ଭକତ ଜନ ବାନ୍ଧବ ତୁମ୍ଭ ଜଗନ୍ନାଥ
ଭକ୍ତର ଦୁଃଖ ଖଣ୍ଡନେ ଅଟ ସାମରଥ ।
ତୁଳସୀ ବଲ୍ଲଭ ପାଦେ ଥାଉ ମୋର ଧ୍ୟାନ
ଶୁଦ୍ରମୁନି ଶାରଳାର ତୁ ମାଧ ଶରଣ ।

—*—

## ଦ୍ୱିତୀୟଦିନ ଯୁଦ୍ଧରେ ଭୀଷ୍ମ କର୍ତ୍ତୃକ ପାଣ୍ଡବଙ୍କର ଦଶସହସ୍ର ଯୋଦ୍ଧା ପତନ

ଏଥୁ ଅନନ୍ତରେ ଶୁଣ ମନ କର୍ଣ୍ଣ ଦେଇ
ଦ୍ୱିତୀୟ ଦିନର କଥା କହିବଇଁ ମୁହିଁ ।
ସ୍ନାନବିଧି ସାରି ସୈନ୍ୟ ଶଙ୍ଖ ଶବ୍ଦ ଶୁଣି
ସଜ୍ଜିତ ହୋଇଲେ ସର୍ବେ ଅସ୍ତ୍ର ଶସ୍ତ୍ର ଘେନି ।
ଚାରିତୂର ବାଜଇ ଯେ ଢମକ ନିଶାଣ
ସଜ ହେଲେ ରାଜାମାନେ ଘେନି ଧନୁ ତୂଣ
ସାଜ ସାଜ ବୋଲି ଶବ୍ଦ ଶୁଭେ ବେଗବେଗ
ରଥ ଗଜ ଅଶ୍ୱ ସାଜ ହେଲେ ବେନି ଭାଗ ।
ଆବୋରି ରହିଲେ ବଳ ଯେ ଯାହାର କଟି
ପୂର୍ବେ ପାଣ୍ଡବେ ପଶ୍ଚିମ କରେ କୁରୁପତି ।

କୃଷ୍ଣ ବର୍ଣ୍ଣର କୁରଙ୍ଗ ସମ ମହାନାଗ
ଦିବ୍ୟବେଶେ କୁରୁଗଣ ସଜ ହୁଏ ବେଗ ।
ଉଦ୍ଧରଲେ ପାଞ୍ଚଛନ୍ଦ ଉଦଣ୍ଡ ଗୃମର
ତାରକାସୁର ଯୁଦ୍ଧରେ ଯେସନେ କୁମାର ।
ଡାହାଣରେ ଦୁଃଶାସନ ବାମେ ଜୟଦ୍ରଥ
ଆସେ ସିନ୍ଧୁ ମଲ୍ଲ ଘେନି ଦଶସହସ୍ର ରଥ ।
ପଛେ ଅଳମ୍ବୁଷ ରାଜା ଆଟକୁ ଚଳଣି
ବାମେ ଦକ୍ଷେ ସୈନ୍ୟ ତାର ଏକାଦଶ କ୍ଷୌଣୀ
ଧାର୍ତ୍ତରାଷ୍ଟ୍ରି ସମ୍ଭାରରେ ହୋଇଲା ବାହାର
ବହୁଘାଷକୁ ସୁମରି ମନର ମଧ୍ୟର ।
ମାହେନ୍ଦ୍ର ଯୋଗ ବେଳାରେ ବଜେ ଯୁଧିଷ୍ଠିର
ଧର୍ମଜ୍ଞ ଶ୍ରୀକୃଷ୍ଣଙ୍କୁ ଚିନ୍ତି ହୃଦୟର ।
ଧର୍ମଙ୍କ ବାମେ ଦ୍ରୁପଦ ଡାହାଣେ ବିରାଟେ
ନର୍ତ୍ତର ଦେଶର ରାଜା ଅଗ୍ରଗାମୀ ଥାଟେ ।
ସମସ୍ତେ ଚାହିଁ ଦେଖିଲେ ସେ କପିକେତନ
ହନୁମନ୍ତ ମୁଖ ଦେଖି କଲେକ ଗମନ ।
ଦଧିବାମନ ପରାୟେ ଦିଶେ ତାର ମୁଖ
ଦଧିବାମନ ସୁମରି ହଅନ୍ତି ସେ ଡାକ ।
ଗଜ ପୃଷ୍ଠରେ ଆରୋହି ଯାନ୍ତି ଧର୍ମସୁତ
ଶ୍ରୀକୃଷ୍ଣ ରଥରେ ଚଢ଼ି ସଙ୍ଗେ ଘେନି ପାର୍ଥ ।
ଶୁଣ ହେ ଚୈତନ୍ୟ ପଞ୍ଚମନ କର ସ୍ଥିର
ମନୁବନ୍ତ ପିଣ୍ଡ ପ୍ରାଣ ଅଟେ ଏକ ମୋର ।
ମନ ବୋଲେ ଚୈତନ୍ୟ ତୁ ହେଉକରି ଶୁଣ
ହତ ହେବେ ପାଣ୍ଡବଙ୍କ ଥାଟ ବହୁସୈନ୍ୟ ।
ଭୀଷ୍ମଦେବଙ୍କର ଅଟେ ସୂର୍ଯ୍ୟ ତୁଲ୍ୟ ଜ୍ୟୋତି
ଇଚ୍ଛାମୃତ୍ୟୁ ସେ ଗାଙ୍ଗେୟ ଅଟେ ମହାରଥୀ ।
ନର୍ଧୂମ ଅଗ୍ନି ସଦୃଶ ବିରାଜଇ କାୟ
ବେନି ଲୋଚନ ଭ୍ରମଇ କାଳଚକ୍ର ପ୍ରାୟ ।
ସହସ୍ର ସୂର୍ଯ୍ୟ ପରାୟେ ତାଙ୍କ ତେଜ ଦିଶି
ଏକାକେ କି ସବ୍ବସୈନ୍ୟ ଉକାଇବେ ନାଶି
ଦେଖିକରି ପ୍ରଶଂସଇ ମାନଚକ୍ରବର୍ତ୍ତୀ
ସମପରି ଦିଶୁଅଛି ଭୀଷ୍ମଙ୍କର ମୂର୍ତ୍ତି ।
ନିଶ୍ଚୟ ଗାଙ୍ଗେୟ ମୋର ଫେଡ଼ିଲେ ଦୁର୍ଗତି
ପାଣ୍ଡବ ବଳଙ୍କୁ ଆଜ ଦହିବେ ଏ ଧାନ୍ତି ।
ଚଳଗ ନାଗପୁଷ୍ପ ସେ ଘେନି ରତ୍ନମାଳା
ନେଇ ଲମ୍ବାଇ ଦେଲେକ ଭୀଷ୍ମଙ୍କର ଗଳା ।

ତୁମ୍ଭେ ଯଦ୍ୟପି ଜିଣିବ ଏ ଭାରତ ଯୁଦ୍ଧେ
ଭୁଞ୍ଜିବଇଁ ଚଅରାଜ୍ୟ ତୁମ୍ଭର ପ୍ରସାଦେ ।
ଶୁଭ ଅନୁକୂଳେ ତୁମ୍ଭେ ସମରକୁ ଯାଅ
ଅସଂଖ୍ୟ ହସ୍ତୀ ଅଶ୍ୱଙ୍କୁ ସଙ୍ଗତରେ ନିଅ ।
ଗଙ୍ଗାର ନନ୍ଦନ ରଥେ ନିଷାଦ ସାରଥି
ଗର୍ଗବର ନନ୍ଦନ ସେ ଜଗଜ୍ଜିତ ଷଣ୍ଢୀ ।
ଶ୍ୱେଖାର ତୁରଙ୍ଗମ ଯେ ହରିତାଳ ମେଘ
ପବନୁ ଅଧିକ ଚଳେ ତାର ରଥ ବେଗ ।
ଅଶୀସହସ୍ର ବଳ ଭୁଜେ କଣ୍ଟସ୍ୱର ଧନୁ
ନିର୍ବାଣ ବିଦ୍ୟାକୁ ଶିକ୍ଷା ଦେଲେ ଶାସ୍ତ୍ରନୁ ।
ନାରାଚ ପୂରାଇ ବେନିକୋଟି ବେନିତୂଣେ
ଧବଳ କେଶର ଚିହ୍ନ ଉଡ଼ାଇଲେ ଶୂନ୍ୟେ ।
ଦିନକର ରଥପ୍ରାୟେ ଆସନ୍ତେ ଦିଶଇ
ସ୍ୱର୍ଗପୁରୁ ଇନ୍ଦ୍ରଦେବ ମର୍ତ୍ତ୍ୟେ କି ଆସଇ ।
ଅର୍ଜ୍ଜୁନକୁ ଦେଖିକରି ହାତେ ଧନୁ ଧରି
ଆଜ କାହିଁ ଯିବୁ ପାର୍ଥ ନୁହେ କାଳପରି ।
ଦୁର୍ଦ୍ଦର୍ଷ ଶରଣ ପଶି ରଣ କଲୁ କାଲି
ସନ୍ଧ ହେବ ବୋଲି ଯୁଦ୍ଧ ଉପରୋଧ କଲି ।
ଅର୍ଜ୍ଜୁନ ବୋଲେ କାଲି ମୁଁ ଛାଡ଼ିଲି ଉପ୍ରୋଧେ
ନିଶ୍ଚୟ ସମ୍ପଦ ଆଜ ବୁଡ଼ାଇବି ଯୁଦ୍ଧେ ।
ଅଶ୍ୱତ୍ଥାମା ଦ୍ରୋଣ କର୍ଣ୍ଣ ଆଦି ଦେଖୁଥିବେ
ଗାନ୍ଧାରୀ ପୁତ୍ରକୁ କେହି ରଖି ନ ପାରିବେ ।
ଅର୍ଜ୍ଜୁନ ବଚନ ଶୁଣି ଗଙ୍ଗାଙ୍କର ସୁତ
କହୁଁ କହୁଁ ଆହମିଲା ନନ୍ଦିଘୋଷ ରଥ ।
ଯେମନ୍ତେ କି ରାହୁ ଗ୍ରାସ କରଇ ଶଶାଙ୍କ
ଅର୍ଜ୍ଜୁନଙ୍କୁ ଗ୍ରାସକଲା ଷଣ୍ଢୀ ରଣରଙ୍କ ।
କରେ ନାରାଚକୁ ଧରି ଟଙ୍କାରଇ ଧନୁ
ଶର ଯୋଚିଣ ଅର୍ଜ୍ଜୁନ ବିନ୍ଧେ ଭୀଷ୍ମ ତନୁ ।
ଦେଖି ଧନୁରେ ପୂରାଇ ଶର ଅପୂର୍ବତେ
ଗଙ୍ଗା ନନ୍ଦନ ବନ୍ଧିଲେ କୃଷ୍ଣ ପାର୍ଥ ରଥେ ।
ପୁଣି ସହସ୍ରେ ନାରାଚ ଛନ୍ଦିଲେ ଆକର୍ଷି
ନନ୍ଦିଘୋଷ ରଥପରେ ନାରାଚ ବରଷି ।
ଅନନ୍ଦାରଣ ଶରକୁ ଘେନି ବୀରପାର୍ଥ
ଏକେ ବାନ୍ଧିକେ ପେଷିଲା ନାରାଚ ଅଯୁତ ।
ଭୀଷ୍ମଙ୍କର ନାରାଚକୁ ଛେଦିଲା ଫାଲ୍‌ଗୁନି
ପୁଣି ଗାଙ୍ଗେୟ ପେଷିଲା ଦିବ୍ୟଅସ୍ତ୍ର ଘେନି ।

ମୂନା ନବ୍ରତ ସେ ବେନି ବେନିଶତ
ଶୃଙ୍ଗର ଉପରକୁ ଘୁଞ୍ଚିଲେ ତ୍ୱରିତ ।
ତ୍ରିଲୋକରେ ବିଖ୍ୟାତ ଭୀଷ୍ମଙ୍କ ମହିମା
ସଭଙ୍କ ମଧ୍ୟେ ସୁନ୍ଦରକ୍ଷଣୀ ମହାତମା ।
ରଥରେ ଆରୋହନ୍ତେ ଭୀମ ବୀରବର
ହତ ସାରଥି ବାହେ ରଥକୁ ତାହାର ।
ଘୋଷଣ କରି ରଥେ ହେଲେ ଅଗ୍ରଗାମୀ
କୌରବ ଥାଟେ ପଶିଲେ ସେ ବୀର ବଦମି ।
ଲୌହର ଧନୁରେ ଲୌହ ଗୁଣ ଲଗିଅଛି
ସ୍ୱର୍ଣ୍ଣ ରତନରେ ଧନୁ ସଜ୍ଜିତ ହୋଇଛି ।
ଧନୁ ଟଙ୍କାରନ୍ତେ ଝଲକଇ ରତ୍ନମଣି
ଜଳଧର ଦେହେ ବିଜୁଳିର ତେଜ ଜାଣି ।
ଲକ୍ଷଣ ମୂନା ତରଙ୍ଗରେ କଙ୍କପକ୍ଷୀ ଖଞ୍ଜି
ନାରାଚର ତେଜ ହୁଏ ସୂର୍ଯ୍ୟତେଜ ଗଞ୍ଜି ।
ରେ ଆରେ ବୋଲି ଡାକେ ପବନର ସୁତ
ଯୁଦ୍ଧରେ ଘୁମୁକୁ କେହି ନ ଆଣନ୍ତି ରଥ ।
ପର୍ଯ୍ୟାପ୍ତ ଶରବନ୍ଧ ପବନ ସନ୍ତତି
ଳାଇଲେ ଯୋଦ୍ଧାଏ କେ ନ ରହିଲେ କତି
ନଳ ତେଜକୁ ଜିଣି ତା ଶର ଅଟଇ
ଟ ଭଗ୍ନ ଦେଖିକରି ସୋମଦତ୍ତ ଧାଇଁ ।
ଭୀମସେନ ଆଗେ ନେଇ ଉଭାକଲା ରଥ
ନଶତ ନାରାଚକୁ ଯୋଚି ସୋମଦତ୍ତ ।
ଭୀମସେନ ଉପରକୁ ବିନ୍ଧନ୍ତେ ସତ୍ୱରେ
ନାରାଚ ଚୂର୍ଣ୍ଣ ହୋଇଲା ମାରୁତି ଅଙ୍ଗରେ ।
ପୁଣି ସହସ୍ର ନାରାଚ ଅଗ୍ନି ପ୍ରାୟ ଜ୍ୟୋତି
ପଷ୍ଟୁ ଭୀମସେନ ଦେଖି ବାମଅଙ୍ଗ ପାତି ।
ରଥ ଉପରୁ ଡେଇଁଣ ଗଦା ଘେନି ଧାଇଁ
ତାକୁ ସସ୍ର ବାଣ ବିନ୍ଧ ସୋମଦତ୍ତ ତହିଁ ।
ସେହି ତୀକ୍ଷ୍ଣ ବାଣମାନ ଶୂନ୍ୟେ ଚଳିଗଲା
ଭୀମସେନର ହୃଦରେ ଯାଇଣ ପଡ଼ିଲା ।
ଲୌହଶର ପଗସ୍ୱେକ ଯାଇ ସେମାବଳ
ତହିଁ ପଡ଼ିଲେ ନାରାଚ ପାରଇକ ଗଳ ।
ଦେଖିକରି ଭୀମସେନ ଗଦା ବୁଲାଇଲା
ସୋମଦତ୍ତ ଶରସବୁ ବ୍ୟର୍ଥ କରିଦେଲା ।
ଭଜ ଶରମାନ ପଡ଼ୁ ହୋଇଗଲା ଚୂର
ଧାଇଁ ସୋମଦତ୍ତ ରଥେ ପିଟେ ଗଦାବର ।

ଛଙ୍ଗତହୁଁ ଗୁରୁ ଅଟେ ଭୀମସେନ ଗଦା
ପିଟନ୍ତେ ଛଙ୍ଗତ ସବୁ ହୋଇଯାଏ ପଦା ।
ସୋମଦତ୍ତ ରଥପରେ ପିଟି ଗଦାବର
ତାହାର ରଥ ଘୋଟିକୁ କଲା ଶତଚୂର ।
ଅଶ୍ୱ ସାରଥିକୁ ଭୀମ ନାଶିଲା ଭରତେ
ସର୍ବେ ନାଶ ଗଲେ ଭୀମ ଗଦାର ଆଘାତେ ।
ସୋମଦତ୍ତ ମହାଘାତ ଲୌହଗଦା ନେଇ
ଭୀମ ବକ୍ଷସ୍ଥଳେ ତାହା ପିଟିଲା ନଠାଇ ।
ଦେଖିଣ ଭୀମ ପାତିଲା ତାର ବାମଅଙ୍ଗ
ସୋମଦତ୍ତ ଗଦା ପଡ଼ି ହୋଇଗଲା ଭଙ୍ଗ ।
ଗଦା ଭଙ୍ଗି ଯାନ୍ତେ ସେହୁ ହେଲା ଶୂନ୍ୟହସ୍ତ
ସମରରୁ ଘୁଞ୍ଚିଗଲା ହୋଇଣ ନିରସ୍ତ ।
ପଛରେ ଗୋଡ଼ାଇ ତହିଁ କାଳଦଣ୍ଡ ପାଣି
ରହରହ ସୋମଦତ୍ତ ବୋଲେ ବୀରମଣି ।
ସୋମଦତ୍ତକୁ କଷ୍ଟାଳ ଦେଖି କୃପାଚାର୍ଯ୍ୟ
ଭୀମସେନଙ୍କୁ ବିନ୍ଧିଲା ସହସ୍ର ନାରାଚ ।
ନାରାଚ ପଡ଼ନ୍ତେ ତହୁଁ ଗର୍ଜିଣ ପାବନି
କୃପାଚାର୍ଯ୍ୟ ଉପରକୁ ଧାଏଁ ଗଦା ଘେନି ।
ଗଜଯୂଥ ଦେଖି ଯେହ୍ନେ ଧାଅଇଁ କେଶରୀ
କୃପକୁ ଭେଟଇ ତେହ୍ନେ ଗଦାହାତେ ଧରି
ଆକ୍ରୋଶରେ କୃପଙ୍କର ରଥେ ନେଇ ପିଟି
ମନ୍ଦର ଗିରି ଯେସନେ ବଜ୍ରଘାତେ ଫାଟି ।
ଦେଖି କୃପାଚାର୍ଯ୍ୟ ଡେଇଁ ପଡ଼ିଲେ କହନ
ସାରଥିର ମୁଣ୍ଡ ମୋଡ଼ି ଫେରେ ଭୀମସେନ ।
ରଣଗୋଳରେ ଧନ୍ଦୋଳ କଲେ ମହାବୀର
କାଳାନଳ ମୂର୍ତ୍ତି ଦେଖି ଭଗେ କୁରୁବୀର ।
ପବନ ନନ୍ଦନ ଯୁଦ୍ଧେ ମହାବଳୀୟାର
ଲେଉଟିଣ କୁରୁବୀର ବେଢ଼ିଲେ ସତ୍ୱର ।
କେହୁ ଶତେ କେହୁ ସହସ୍ରେ ଲକ୍ଷେ ବାଣମାରି
ଏକା ଭୀମକୁ ବିନ୍ଧନ୍ତି ସର୍ବେ କୋପ କରି ।
ତହୁଁ ଘୋର ଶବ୍ଦ ଶୁଣି ଧାଅଇଁ ଦୁର୍ଦ୍ଧର୍ଷ
ଭୀମସେନ ଭୁଲେ ଯୁଦ୍ଧ କରଇ ସୁଦକ୍ଷ ।
ଚଉଷଠି ହାତ ଗଦା ଘେନି ଦେନି କରେ
ରଣରଙ୍ଗରେ ମର୍ଦ୍ଦିଲା ଥାଟର ଭିତରେ ।
ଭୀମସେନ ଦୁର୍ଦ୍ଧର୍ଷର ହୋଇଲେକ ସଖା
କୌରବ ସୈନ୍ୟକୁ ମନେ ନ କରିଲେ ଶଙ୍କା

ଏକଲକ୍ଷ ଯୋଦ୍ଧା ସେନ ଅଳମ୍ବୁ ରାକ୍ଷସ
ସବୁରି ବ୍ୟାଘ୍ର ବାହନ ଖାଙ୍କର ଯେ କେଶ ।
ବ୍ୟାଘ୍ରଚର୍ମ କଟିବନ୍ଧ ଜାଠି ଅଣ୍ଟାରେ
ବାମ କରରେ ମୂଷଳ ଜାଠ ଦକ୍ଷକରେ ।
କଳିଙ୍ଗସେନ ପରାପ୍ତେ ଯୁଝିଣ ମାରୁତ
ଦୁର୍ଦ୍ଦକ୍ଷକୁ ସଙ୍ଗେ ନେଇ ଧାଇଁଲେ ଚଡ଼ନ୍ତ ।
ସେନ ଅପୂର୍ବ ଯେ ତାଙ୍କୁ ନେଇ ଦୁଃଶାସନ
ଦୁର୍ଦ୍ଦକ୍ଷର ଆଗେ ମିଳି କରିଲା ସଂଗ୍ରାମ ।
ସ୍ୱକର୍ଣ୍ଣ ସାରଥି ଆର ଦୁଃଶାକୁ କହଇ
ଦେଖ ଦେଖ ଭ୍ରାତ ତବ ଦୁର୍ଦ୍ଦକ୍ଷଟି ଏକ୍କ ।
ସହସ୍ର ସହସ୍ର ଯୋଦ୍ଧା ଏକା ଯୋଦ୍ଧା ମାରେ
କବନ୍ଧ ନାଚନ୍ତି ରକ୍ତ ମାଂସ କର୍ଦ୍ଦମରେ ।
ଦୁଃଶା ବୋଲେ ଆଜ ମୋର ଅଟେ ଶୁଭଦିନ
ତାହାକୁ ଭେଟିଲେ ଯିବ ଦୁର୍ଯ୍ୟୋଧନ ମାନ
ଶରଣ ପଶିଲ ଫଳ ପାଉ ମୋର ଭାଇ
ଜ୍ୟନ୍ତା ଧରିନେବି ପ୍ରାଣେ ନ ମାରଣ ମୁହିଁ ।
ଦୁଃଶା ସ୍ୱା କହୁ ଦୁର୍ଦ୍ଦକ୍ଷ ମହାବେଗେ ଉଠି
ଯୋଦ୍ଧାମାନଙ୍କ ଉପରେ ପ୍ରହାରିଲା ଯଷ୍ଟି ।
ବଜ୍ର ମୁଦ୍ଗର କରେ ଧରି ଗଲା ଧାଇଁ
ଦୁଃଶାର ସୈନ୍ୟମାନଙ୍କୁ ପ୍ରହାରିଲା ନେଇ ।
ସିଂହ ଦେଖିଣ ଯେସନେ ପଳାନ୍ତି ବୃନ୍ଦାର୍କେ
ସେହିରୂପେ ପଳାଇଲେ ଯୋଦ୍ଧାଏ ସତର୍କେ
ରେରେକାର କରି ବେଗେ ଦୁର୍ଦ୍ଦକ୍ଷ ଯେ ଉଠି
ବଜ୍ର ମୁଦ୍ଗର ନେଇ ଦୁଃଶାରଥେ ପିଟି ।
ଦୁର୍ଦ୍ଦକ୍ଷର ଘାଏ ରଥ ପଡ଼ିଲାକ ଭଜି
ଗାନ୍ଧାରୀ କନିଷ୍ଠ ପୁତ୍ର ଧାଏଁ ଗଳଗାଜି ।
ଡାହାଣ କରରେ ରଥ ଧରିଣ ବୁଲାଇ
ଅନ୍ୟ ଏକ ରଥପରେ ପିଟିଲାକ ନେଇ ।
ଏପରି ଦୁର୍ଦ୍ଦକ୍ଷ ଯୁଦ୍ଧ ଦେନି ଦଣ୍ଡ କଲା
ତିନଶତ ରଥୀଙ୍କୁ ଯେ ଭୂମିରେ ପିଟିଲା ।
ଶୁଣ ଚଇତନ ଧର୍ମ ନନ୍ଦନର କଥା
ପାଣ୍ଡବେ ଯେ କୃଷ୍ଣ ପରସାଦେ ବଳବନ୍ତା ।
ବଡ଼ ବଡ଼ ସମରକୁ ନ କରନ୍ତି ଶଙ୍କା
ରାମାନୁଗ୍ରହେ ଧ୍ୱଂସିଲା ହନୁ ଯେସନେ ଲଙ୍କା ।
ଯୋଦ୍ଧାମାନେ ବେଢ଼ି କରି ରେ ପ୍ରହାରନ୍ତି
ଦୁର୍ଦ୍ଦକ୍ଷ ପ୍ରହାର କେହି ସହି ନ ପାରନ୍ତି ।
ଏକ ଏକ ପ୍ରହାରକେ ଗଜ ଅଶ୍ୱ ଲୋଟି
ସମରେ ପଡ଼ିଲେ ଯୋଦ୍ଧା ଯୁଦ୍ଧସ୍ଥାନେ ଲୋଟି
ସମରରେ ଯୋଦ୍ଧାମାନେ ପାଇ ବଡ଼ ଦୁଃଖ
ପଳାଇଲେ ଅପସରି ହୋଇଣ ବିରେଖ ।
ଏଥୁ ଅନ୍ତେ ଆନ କଥା ଶୁଣ ହେ ରାଜନ
କଥାଚାରି ଘଟସୂତ କେ କରିବ ଆନ ।
ତତକ୍ଷଣେ ଟଳି ରଥଭଗ୍ନ ଦେଖି ଦୁଃଶାସନ
ପଞ୍ଚକୋଟି ଯୋଦ୍ଧା ସେନ ମିଳିଲା ରାଜନ ।
ଦୁର୍ଦ୍ଦକ୍ଷକୁ ବୋଲଇ ଯେ ଦୁଃଶାସନ ଦ୍ୱେଷି
ଆରେ ବାବୁ କପାଇଁ ତୁ ହେଲୁ ଯେ ନରାଶି
ପାଣ୍ଡବେ ଯେ ଗୋଳକୁଣ୍ଡା ପୃଥ୍ୱୀରେ କହନ୍ତି
ବଟଶଷେ ଭିକ୍ଷାଶୀ ବନବାସୀ ଯେ ଅଟନ୍ତି ।
କଳ୍ପତରୁ ଛାଡ଼ି ଆଶା କଲୁରେ ଏରଣ୍ଡ
ପାଣ୍ଡବଙ୍କୁ ଦେଖନ୍ତେ ମୁଁ କାଟିବି ତୋ ମୁଣ୍ଡ
ଦୁର୍ଦ୍ଦକ୍ଷ ବୋଇଲା ତୁମ୍ଭ ମରଣ ନିକଟ
ଅଳ୍ପଦିନ ମାତ୍ର ରହି ହେବ ଯମ ଭେଟ ।
ପଞ୍ଚ ପାଣ୍ଡବ ଆବର ଜଗନ୍ନାଥ ଥିଲେ
ମୋତେ କେ ଜିଣିବ ତୁମ୍ଭମାନଙ୍କର ବଳେ ।
ତୁମ୍ଭେମାନେ ଲକ୍ଷଯୋଦ୍ଧା ମୁହିଁ ତ ଏକାକୀ
କେ ଯୁଦ୍ଧ କରିବ ଆସ ମୋର ଭୁଜେ ଦେଖି
ଆରେ ଦୁଃଶାସନ ତୋର ପ୍ରତିଜ୍ଞା ଯେ ସାଧୁ
ପରସ୍ପରେ ଶର ତୁମ୍ଭ କପାଇଁ ନ ଛନ୍ଦୁ ।
ଶୁଣିକରି ଦୁଃଶାସନ ଗର୍ଜି ମହାବେଗେ
ଜ୍ୱଳାଇଲା ନାରଚକୁ ଛନ୍ଦେ ଅତି ବେଗେ ।
ଦୁଃଶାସନର ନାରଚେ ଦୁର୍ଦ୍ଦକ୍ଷ ପାଲଟି
ଗଦାବରକୁ ବୁଲାଇ ତା ରଥରେ ପିଟି ।
ତକ୍ଷଣ ତାହାର ରଥ ହୋଇଗଲା ଚୂନା
ଭୂମିରେ ପତିତ ହେଲା ଦୁଃଶାସନ ଜେନା ।
ଗଦା ଆଘାତରେ ଦୁଃଶା ହୋଇଗଲା ମୂର୍ଚ୍ଛା
ପାଶେ ମିଳିଣ ଦୁର୍ଦ୍ଦକ୍ଷ ତାକୁ କରେ ପୃଚ୍ଛା ।
ଉଠ ଉଠ ସ୍ୱାମୀ ବୋଲି ଧରେ କୋଳକରି
ଦୁର୍ଜ୍ଜୟକୁ ବୋଲେ ନେଇଯାଅ ଅପସରି ।
ତଦନ୍ତରେ ଦୁଃଶାସନ ସାଷ୍ଟାଙ୍ଗ ହୁଅନ୍ତେ
ଦୁଃଶାସନକୁ ଦୁର୍ଦ୍ଦକ୍ଷ କହଇ ଏମନ୍ତେ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି ଯୁଦ୍ଧ କରୁଥିଲେ
ଆପଦ କାଳରେ ତୋତେ ରଖି ନ ପାରିଲେ

ଆହେ ଭାଇ ଏବେ ମୂର୍ଚ୍ଛି ଜନ୍ମଅଛୁ ଏତେ
ଆଉ ବେଳେ ନ ପଶିବ ଯୁଦ୍ଧେ କଦାଚିତେ ।
ଦ୍ରୌପଦୀଙ୍କୁ ଝିଙ୍କାସିଲ ଭୁମେ ଦଣ୍ଡ ଛଳେ
ଭୀମସେନ ଲେଖିଛନ୍ତି ତାହା ବକ୍ଷସ୍ଥଳେ ।
ତେରବର୍ଷ ସହାନବେ ବନ ଗତ ହେଲ
ପ୍ରତିଜ୍ଞା କରିଣ ସଖୀ କେଶ ନ ବାନ୍ଧିଲ ।
ଉପାଡ଼ିଣ ବକ୍ଷଭୁଜ ଯୁଦ୍ଧେ ଭୀମ ତୋର
ସେ ରୁଧିରେ ମହାସତୀ ପଖାଳିବେ ଶିର ।
ତେବେ ସେ କେଶ ବାନ୍ଧିବେ ଦ୍ରୁପଦରାଜକନ୍ୟା
ଏହି ପ୍ରକାରେ ପ୍ରତିଜ୍ଞା କରିଅଛୁ ଭୀମା ।
ଭୀମସେନ ଅନନ୍ତ ସେ ଅଳମ୍ବୁଷ ଯୁଦ୍ଧେ
ଜାଣିଲେ ମାରିବେ ତୋତେ ଏହି ରଣ ମଧ୍ୟେ ।
ବନାକେତେ ବର୍ଜିଥାଅ ଆହେ ଦୁଃଶାସନ
ସଂଗ୍ରାମରେ ନ ରହିଣ ପଳାଅ ବହନ ।
ଏହା ଶୁଣି ଦୁଃଶାସନ ବସିଲେ ରଥେ
ବାହୁଡ଼ିଲେ କୁରୁସୈନ୍ୟ ଦୁଃଶାଉ ସଙ୍ଗତେ ।
ଦୁଃଶାସନ ରଣେ ଭଙ୍ଗ ଦେଖିଣ ବିକର୍ଣ୍ଣ
ଦେନଲକ୍ଷ ଯୋଦ୍ଧା ଘେନ ଧାଇଁଲେ ବହନ ।
ମାର ମାର ବୋଲି ଶବ୍ଦ ଶୁଣି ସେ ବଗଂର
ପୃଥିବୀ କମ୍ପିତ ହେଲ ତାଙ୍କ ପାଦଭରେ ।
ଦୁର୍ଦ୍ଦକ୍ଷକୁ ଆବୋରିଲ ତା ପାଶକୁ ଆସି
ନାଗରମାନ ବନ୍ଧିଲେ ତାହାକୁ ଆକର୍ଷି ।
ଶୁଣ ଆହେ ଚଇତନ ସ୍ଥିରକରି ମନ
ଅଳମ୍ବୁଷ ଭୁଲେ ତେଣେ ଯୁଦ୍ଧକଲେ ଭୀମ ।
ସମରେ ପ୍ରତିଜ୍ଞା କରେ ଭୀମସେନ ରୋଷେ
ଏକାଗୋଟି ବ୍ୟାଘ୍ର ଯେସ୍ନେ ଛାଗପଲ ଧ୍ୱଂସେ ।
ଭୀମ ଅଳମ୍ବୁଷ ଯୁଦ୍ଧ ଅଟେ ଅନୁପମ
ଏହା ଦେଖିବାକୁ କେହି ନୋହିବ ସକ୍ଷମ ।
କୌରବ ସୈନ୍ୟଙ୍କୁ ଭୀମ ପ୍ରହାର କରନ୍ତେ
ଅଳମ୍ବୁଷ ଆବୋରିଲା ଆସିଣ ଅଗ୍ରତେ ।
ଏକ ଏକ ରଥେ ଯୋଚ୍ଚି ଅଷ୍ଟ ଅଷ୍ଟ ବ୍ୟାଘ୍ର
ଏସନକ ଦପଗତ ଦେଖି ଭୀମ ଆଗ ।
ସମରରେ ବୃକୋଦର ନିର୍ଭୟ ଅଟଇ
କନ୍ଦ୍ରଗିରି ସଦୃଶ କାୟା ବଢାଇ ।
ଚନ୍ଦ୍ର କିରଣ ପରାୟେ ଦିଶେ ତାର ଗଦା
ଯମଦେବ ଜିଣିବାକୁ ପାହାର ଆସ୍ପର୍ଦ୍ଧା ।

ବକପଲ ଦେଖି ଯେସ୍ନେ ଧାମେ ଶ୍ୟେନପକ୍ଷୀ
ଭୀମ । ଧାମେ ତେସନେକ ଦୈତ୍ୟବଳ ଦେଖି ।
ଭୀମସେନଙ୍କୁ ଦେଖିଣ ଦୁରନ୍ତ ସୈନ୍ୟ
ଶତେକପୁର ଜଟିଣ ବେଢ଼ିଲେ ତକ୍ଷଣ ।
ଲୌହଗଦା ଅଛି ହସ୍ତେ ଶତ ଶତ ଭର
ଦଇତ୍ୟ ବଶୁ ଅଛନ୍ତି ଯେସ୍ନେ ଗିରିବର ।
ଏକା ପତ୍ରଙ୍କୁ ବେଢ଼ିଅଛନ୍ତି ସେ ଯୋଦ୍ଧା
ଶତ ଶତ ନାଗରକୁ ଜଗନ୍ତି ସେ ଭେଦା ।
କଡ଼ଡ଼ା ମାସରେ ଯେସ୍ନେ ହୁଏ ଜଳବୃଷ୍ଟି
ସେପରି ବାଣ ବର୍ଷନ୍ତି ଅନ୍ଧକାର ଘୋଟି ।
ଅସୁର ପ୍ରହାର ଦେଖି ବୀରବର ଭୀମ
ବେଳକୁ ବେଳ ମନରେ କରି ଗୁରୁତମ ।
ସ୍ୱର୍ଣ୍ଣ ଗଦା ମୁଦ୍‌ଗର କୁନ୍ତ ଶର ଯଷ୍ଟି
ଘେନି ସକଳ ଅସୁର ଏକମୁଖେ ଉଠି ।
ପ୍ରହାରନ୍ତି ନେଇ ତାହା ଭୀମସେନ ପରେ
ଭୀମ ଛୁଡ଼ା ହୋଇଅଛି ଭିନ୍ନ ନାହିଁ ବାରେ ।
ଏପରି ଦେଖି ମାରୁତ ବାମଅଙ୍ଗ ପାତି
ପଡ଼ିଣ ଚୂର୍ଣ୍ଣ ହୋଇଲା ଗଦା ସେ ଶକତି ।
ନାରାଚ ଗୁଚ୍ଛକ କୁନ୍ତ ଛେଳ ମୁଦ୍‌ଗର
ସମସ୍ତ ଚୂର୍ଣ୍ଣ ହୋଇଲା ମାରୁତ ଅଙ୍ଗର ।
ଗର୍ଜ୍ଜନ କରି ଯୋଦ୍ଧାଏ ପେଲନ୍ତି କୁନ୍ତ ଯଷ୍ଟି
ମରନ୍ତି ଉପୁଡ଼ି ପଡ଼େ ତା ଦେହେ ନ ଫୁଟି ।
ଲେଉଟି ଧାମଇଁ ସେହି ପାଣ୍ଡବ ସୋଦର
ଗଦା ଘେନି ପ୍ରହାରିଲା ଦୈତ୍ୟଙ୍କ ଉପର ।
ଭୀମର ପ୍ରହାର କେହି ମେଣ୍ଟି ନ ପାରିଲେ
ରଥୀ ଯୋଦ୍ଧା ପଦାତିଏ ଚୂର୍ଣ୍ଣ ହୋଇଗଲେ ।
ରକତରେ ବଲେପିତ ଭୀମସେନ ଅଙ୍ଗ
ହିରଣ୍ୟ ବଦାରି ଯେସ୍ନେ ଦଶନ୍ତ ନୃସିଂହ ।
ଅସୁରମାନେ ଶଙ୍କିଲେ ଭୀମରୂପ ଦେଖି
ସମସ୍ତେ ପଳାଇ ଗଲେ ସମର ଉପେକ୍ଷି ।
ରଥ ଗଜ ଅଶ୍ୱ ତେଜି ଦୈତ୍ୟଙ୍କର ବଳେ
ପଳାଇଲେ ସର୍ବେ କେଶବାସ ଅସମ୍ଭାଳେ ।
ଝୁଲିଲେ ସୈନ୍ୟ ଲେଉଟି ପଛେ ନ ଚାହାନ୍ତି
ଗଦା ଘେନ ଯମପ୍ରାୟେ ଧାମଇଁ ମାରୁତ ।
ସୈନ୍ୟଗଣ ପଳାଇ ଦେଖି ଅଳମ୍ବୁଷ
ପର୍ବତ ଯୋଦ୍ଧା ଭୁଲିଲେ [illegible] ଭୀମପାଶ ।

ଦନ୍ତବକ୍ର ଶତ୍ରୁତପ ଅଳାୟୁଧ ସୁତ
ଏକେ ଏକେ ଶୂର ନାଶି ପାରନ୍ତି ଦୈବତ ।
କୁଠାର ଆୟୁଧ ସେହୁ ଧରନ୍ତି କରେ
ଧାଡଧାରେ ପିଟିଲେ ସେ ଭୀମର ଉପରେ ।
ତହୁଁ ଭୀମ ହସେ ଦେଖି ତାହାଙ୍କ ଆଘାତ
ଆକର୍ଷି ଧଇଲା ଯାଇ ଅଳମ୍ବୁଷ ରଥ ।
ଅନ୍ତରୀକ୍ଷେ ବୁଲାଇଲା ଟେକି ରଥଦଣ୍ଡ
ଅଳାୟୁଧ ରଥେ ନେଇ ପିଟିଲା ପ୍ରଚଣ୍ଡ ।
ସେ ଘାତରେ ଦୁଇରଥ ଚୂର୍ଣ୍ଣ ହୋଇଗଲେ
ଅଳମ୍ବୁଷ ଅଳାୟୁଧ ପାଦଗତ ହେଲେ ।
ଲୁହାର ଶକତ ଘେନି କୋପରେ ଧାଇଁଲେ
ଭୀମସେନର ଉପରେ କଠାଇ ପିଟିଲେ ।
ଦେଖି ଭୀମସେନ ଘୋର ଘାତେ ଜାମଅଙ୍ଗ
ହେନ ଶକ୍ତି ପଡ଼ି ତକ୍ଷଣି ହୋଇଗଲା ଭଙ୍ଗ ।
ଦେଖି ହରଷ ହୋଇଲେ ପିତାପୁତ୍ର ଦେନେ
ପଛରୁ ଗୋଡ଼ାଇ ପିଟେ ତାହାଙ୍କୁ ପାବନୀ ।
ଅଳମ୍ବୁଷ ଜ୍ୟେଷ୍ଠପୁତ୍ର ଦନ୍ତବକ୍ର ନାମ
ଗଦାଘାତେ ଆକାଶକୁ ଉଡ଼ାଇଲେ ଭୀମ ।
ପୁଣି ଭୀମ ପ୍ରହାରିଲେ ଗଦାବର ତୋଳି
ସେ ଆଘାତେ ଅଳାୟୁଧ ଦେହ ହେଲା ଧୂଳି
ପଳାଇଲା ଅଳମ୍ବୁଷ ଆଉ ପୁତ୍ର ଘେନି
ଗୋଡ଼ାଇ ଭୀମ ମାଇଲେ ତାର ବହୁ ସୈନ୍ୟ ।
ବାହୁଡ଼ାଇ ଦଣ୍ଡଭଗ୍ନ କରି ବୃକୋଦର
ଆସିଣ ମିଳିଲା ବେଗେ ଦୁର୍ଦ୍ଧର୍ଷ ପାଶର ।
ଭୀମ ଦୁର୍ଦ୍ଧର୍ଷ ଏ ଦୁହେଁ ଏକସଙ୍ଗ ହେଲେ
କେତୁ ମଙ୍ଗଳ ଗ୍ରହର ପରାୟେ ଦିଶିଲେ ।
ଶଲ୍ୟ ସୋମଦତ୍ତ କର୍ଣ୍ଣ ଅଶ୍ୱତ୍ଥାମା କୃପ
କୋଣକେ ରହିଲେ ଦେଖି ଦୁହିଙ୍କର ରୂପ ।
ଯୁଦ୍ଧରେ ସୁହୃଦପଣ ଏ ଦୁହିଙ୍କ ନାହିଁ
ଶରଣ ବୋଇଲେ ରକ୍ଷା ନ କରନ୍ତି ସେହି ।
ଅଧର୍ମ ଯୁଦ୍ଧ ଦେଖିଣ ଯୋଦ୍ଧା ଆଡ଼ ହେଲେ
ସମ୍ମୁଖରେ ରହିବାକୁ କେ ସାହସ ନ କଲେ ।
ଭୀମ ଦୁର୍ଦ୍ଧର୍ଷ ଏ ଦୁହେଁ ଆସୁ ଆସୁ ଫେର
ଯେହ୍ନେ ହାବୁଡ଼ି ପଡ଼ଇ ନ ଯାଏ ଉବୁର ।
ରଣରୋଳ ଧନ୍ଦୋଳେ ସେ ଅତ୍ୟନ୍ତ ଶକତା
ଭଣେ ପଶିଲେ ତାଙ୍କର ନ ଥାଏ ସେ ଚିନ୍ତା ।

ଭୂରିଶ୍ରବା ଆଗେ ଉଭା ଅଛନ୍ତି ଯୁଧିଷ୍ଠି
ଭୀମ ଦୁର୍ଦ୍ଧର୍ଷ ଏ ଦୁହେଁ ଯାଇ ତାଙ୍କୁ ଭେଟି ।
ଯୁଧିଷ୍ଠିଙ୍କୁ ଗାଢ ଘାଉ ପୂଜ କରି ପଛ
ଭୂରିଶ୍ରବା ସଙ୍ଗେ ଭେଟ ହୁଅନ୍ତେ ପ୍ରତ୍ୟକ୍ଷ ।
ରାହୁ ଯେହ୍ନେ ଚନ୍ଦ୍ରମାକୁ ଯାଇ ଗରାସଇ
ସେପରି ଭୂରିଶ୍ରବାକୁ ଓଗାଳିଲା ଯାଇ ।
ସାଧୁରେ ନନ୍ଦନ ତୋର ଧନ୍ୟ ପିତାମାତା
ଜାଣିଲୁ ଧୃତରାଷ୍ଟ୍ରଙ୍କୁ ତୁହି ଉଦ୍ଧାରନ୍ତା ।
ପ୍ରସଂଶା କଲେକ ଏହା ଦୁର୍ଦ୍ଧର୍ଷକୁ ଦେଖି
ଛନ୍ଦିଲେ ନାରାଚ ଭୂରି ରୌରବ ଉପେକ୍ଷି ।
ମେଣ୍ଟିଲା ଭୂରିଶ୍ରବାଙ୍କ ନାରାଚ ପଡ଼ନ୍ତେ
ପୁଣି ଛନ୍ଦିଲେକ ଭୂରି ନାରାଚ ସେ ଶତେ ।
ଗାନ୍ଧାରୀ ପୁତ୍ର ବୁଲାଇ ଦୁଇ ଗଦାବର
ଭୂରିଙ୍କ ନାରାଚମାନ କରିଦେଲା ଚୂର ।
ବହୁଶର ଭୂରିଶ୍ରବା ତାହାକୁ ମାଇଲେ
ପ୍ରତି ଅସ୍ତ୍ରରେ ଦୁର୍ଦ୍ଧର୍ଷ ସକଳ ନାଶିଲେ ।
ଦୁର୍ଦ୍ଧର୍ଷକୁ କେଉଁମତେ ଜିଣି ନ ପାରିଲେ
ଶର ଛନ୍ଦି ଛନ୍ଦି ଯହୁଁ ବିମୁଖ ହୋଇଲେ ।
ସପ୍ତଶର ଶର କାଢ଼ି ବସାଇଲେ ଚାପେ
ଛାଡ଼ିଲେ ସେ ଗଳଗଳା ରୋମେ ରୋମେ ଦର୍ପେ
ଯେସନେକ ସର୍ପମାନେ ପଶନ୍ତି ବିବରେ
ସେପରି ଶର ଗଳିଲା ଦୁର୍ଦ୍ଧର୍ଷ ଦେହରେ ।
ଭଣେ ଅସାଷ୍ଟମ ହେଲା ଗାନ୍ଧାରୀର ବଳା
ଧରିଥିବା ଧନୁ ହସ୍ତୁ ତଳେ ପଡ଼ିଗଲା ।
ତାହା ଦେଖି ଭୂରିଶ୍ରବା ରଥରୁ ଡେଇଁଲେ
ଆକର୍ଷିଣ ଗାନ୍ଧାରୀର ତନୟେ ଧଇଲେ ।
ପକାଇଲେ ନେଇ ତାକୁ ଆପଣାର ରଥେ
ବିଚାରିଲେ ବଇଦ୍ରୋହ କରିବ କେମନ୍ତେ ।
ଦୁର୍ଦ୍ଧର୍ଷକୁ ନେଲାବେଳେ ଯୁଧିଷ୍ଠି ଦେଖିଲେ
ମୋ ଭାଇକୁ ଭୂରିଶ୍ରବା ରଥେ ଘେନଗଲେ ।
ଏହା କହି ଡାକଦେଲେ ଧାଇଁଆସ ଭୀମ
ଦୁର୍ଦ୍ଧର୍ଷକୁ ବନ୍ଧ କଲେ ଗଲା ଆମ୍ଭ ଧର୍ମ ।
ଶେଷେ ଭାଇ ତା ଜୀବନ ଦେଲା ଯେ ଆମ୍ଭଙ୍କୁ
ମୋହର ଦେଖନ୍ତେ ଧରିନେଲେ ଦୁର୍ଦ୍ଧର୍ଷକୁ
ଯୁଧିଷ୍ଠିର ଦେବ ଯହୁଁ କଲେ ଘୋରଧ୍ୱନ
ସମରେ ଥାଇଣ ତାହା ଶୁଣିଲେ ପାବନ ।

ଭୂରିଶ୍ରବା ମାତ୍ର ବୋଲି ଶୁଣିଲେକ ଧ୍ୱନି
ତହୁଁ ଜଗାଇଲେ ତାଙ୍କୁ ଯୁଧିଷ୍ଠିର ସୈନ ।
ଭୀମସେନ ସହିତରେ କୁମର ଶିଖଣ୍ଡୀ
କୁବେରର ରଥପରି ଯାହା ରଥ ମଣ୍ଡି ।
ପାଣ୍ଡବଙ୍କ ବଳ ଯହୁଁ ଚଉପାଶେ ଘୋଟି
ଦୁର୍ଦ୍ଧକ୍ଷଙ୍କୁ ଘେନି ଭୂରି ଅଇଲେ ଲେଉଟି ।
ଶିଖଣ୍ଡୀ ପଶାଇ ଯୁଦ୍ଧେ ସଇନ୍ୟ ମନ୍ଥିଣ
ପ୍ରବେଶିଲେ ଭୂରିଶ୍ରବା ପଛେ ଭୀମସେନ ।
ରେ ରେକାର ଶବ୍ଦ କରି ପାଣ୍ଡବ ସୁନ୍ଦର
ଭୂରିଶ୍ରବା ରଥେ ଗଦା କରିଲା ପ୍ରହାର ।
ମହାକୋପେ ଭୀମ ଯହୁଁ ଗଦା ପ୍ରହାରିଲା
ଭୂରିଶ୍ରବା ରଥ ଭାଙ୍ଗି ଶତଖଣ୍ଡ ହେଲା ।
ଗଦା ରଥେ ବାଜି ବାଜେ ଭୂରିଶ୍ରବାପରେ
ଅଜ୍ଞାନ ହୋଇ ପଡ଼ିଲେ ଭୂମିର ଉପରେ ।
ଜ୍ଞାନ ପାଇ ଭୂରିଶ୍ରବା ଆରୋହଣ ନାଗ
ଥାଟ ମଧ୍ୟରେ ପଶିଲେ ଯାଇକରି ବେଗ ।
ଦୁର୍ଦ୍ଧକ୍ଷଙ୍କୁ ତୋଳି ରଥେ ବସାଇ ଶିଖଣ୍ଡୀ
ବାମକରେ ଅଛି ତାର ଚନ୍ଦ ଯେ ଭୁଷଣ୍ଡୀ ।
ଦୁର୍ଦ୍ଧକ୍ଷଙ୍କୁ ଘେନି ଭୀମ ଶିଖଣ୍ଡୀ ଏ ବେନି
ଯୁଧିଷ୍ଠିର ପାଦତଳେ ଯାଇଣ ପ୍ରଣମି ।
ଏପରି ଚରିତମାନ ଭୀଷ୍ମ ପାର୍ଥ ଦେଖି
ଦୁହେଁ ଶର ପ୍ରହାରନ୍ତେ ଉକ୍ରୋଧ ଉପେକ୍ଷି ।
ଭୀଷ୍ମ ଆଉ ଅର୍ଜୁନର ହେଲା ମହାଯୁଦ୍ଧ
ଦୁହିଙ୍କର ଶରେ ହେଲା ଆକାଶ ନିରୋଧ ।
ଶର ବୃଷ୍ଟି ହେତୁ ଧ୍ୱନି ଗହଳ ହୋଇଲା
ଦଶଦିଗ ଅନ୍ଧକାର ପରିପୂର୍ଣ୍ଣ ହେଲା ।
ଅସ୍ତ୍ରେ ଶସ୍ତ୍ର ବାଜକରି ହେଲା ପରିତାଳ
ତେଣୁକରି ତହିଁରୁ ଯେ ଉଠିଲା ଅନଳ ।
ପରସ୍ପରେ ଦୁଇଜଣ ହେଲେ ବନ୍ଧାବନ୍ଧ
ନାରାଚ ନାରାଚ ପଡ଼ି ହୁଏ ଛନ୍ଦାଛନ୍ଦ ।
ସାମାନ୍ୟ ନାରାଚେ ଭୀଷ୍ମ ନ ପାରନ୍ତି ଜିଣି
ସହସ୍ରଧାର ନାରାଚ ବନ୍ଧିଲେ ତକ୍ଷଣି ।
ଗଙ୍ଗାପୁତ୍ର ଆକର୍ଷିଣ ପାର୍ଥଙ୍କୁ ବନ୍ଧିଲେ
ଏହା ପ୍ରତିକାର କର ଶ୍ରୀକୃଷ୍ଣ ବୋଇଲେ ।
କୃଷ୍ଣ ବଚନରେ ପାର୍ଥ ପ୍ରତିଶରେ ବନ୍ଧି
ଭୀଷ୍ମଙ୍କର ନାରାଚକୁ ପକାଇଲେ ଛେଦି ।

ତହୁଁ ପୁଣି ଗଙ୍ଗାପୁତ୍ର କୁହୁବାଣ ପେଶି
ଘୋଟିଗଲା ନାରାଚ ଯେ ଆକାଶ ନ ଦିଶି
ଅର୍ଜୁନଙ୍କର ଅଗ୍ରରେ ଶ୍ରୀକୃଷ୍ଣ ବୋଇଲେ
ଦେଖ ଅର୍ଜୁନ କପଟ ଯୁଦ୍ଧ ଭୀଷ୍ମ କଲେ ।
କୃଷ୍ଣ ବାକ୍ୟ ଦରହାସେ ବୀର ସବ୍ୟସାଚୀ
ସୂର୍ଯ୍ୟାବର୍ତ୍ତ ଶର ବନ୍ଧେ ଗୁଣକୁ ଆମନ୍ତ୍ରି ।
ଆଦିତ୍ୟର ତେଜ ଯହୁଁ ଆକାଶ ଘୋଟିଲା
କୁହୁଡ଼ି ସକଳ ବେଗେ ନାଶ ହୋଇଗଲା ।
ପୁଣି ଗାଙ୍ଗେୟ ପନ୍ନଗ ନାରାଚ ପେଷିଲେ
ଗର୍ଜିକରି ସର୍ପମାନେ ଫଣା ଟେକିଗଲେ ।
ସର୍ପମାନଙ୍କୁ ଦେଖିଣ ପାର୍ଥ ମହାବଳୀ
ଖଗବର ନାରାଚକୁ ବନ୍ଧି ବେଗେ ତୋଳି ।
ବୈନତେୟ ତେଜ ଯହୁଁ ଯୁଦ୍ଧେ ପ୍ରକାଶିଲା
ସର୍ପଶର ତାକୁ ଦେଖି ମୃତବତ ହେଲା ।
ଏହିପରି ଘୋର ଯୁଦ୍ଧ ହେଲା ବେଳୁବେଳ
ତୃତୀୟ ପ୍ରହର ଆସି ହୋଇଲାକ ବେଳ ।
ମହା ଘୋରତର ରଣ ଯେତେବେଳେ ହେଲା
ପଶ୍ଚିମରେ ପ୍ରବେଶିଲେ କଶ୍ୟପର ବଳା ।
ପାଣ୍ଡବଙ୍କର ସମ୍ମୁଖେ ହେଲେ ମାରତଣ୍ଡ
ବଡ଼ା ଯୋଗ ହେଲା ଆସି ଚତୁର୍ଦ୍ଦଶ ଦଣ୍ଡ ।
ପଣ୍ଡୁପୁତ୍ର ମୁଖ କଲେ ସନ୍ଧ୍ୟାପରିଯନ୍ତେ
ମୁଖେ ତେଜ ଲାଗେ ସୂର୍ଯ୍ୟ ପଶ୍ଚିମେ ରହନ୍ତେ
ଅନୁକ୍ଷଣ ବାଣ ବନ୍ଧୁ ଗଙ୍ଗାଙ୍କର ସୁତ
କ୍ଷୀଣେ ଜର ଜର ହେଲା ବୀରବର ପାର୍ଥ ।
ଆଦିତ୍ୟ ତେଜ ସମାନ ଶସ୍ତ୍ର ସବୁ ଜଳି
ପାର୍ଥ କପାଳୁ ବିନ୍ଦୁ ଝାଳ ପଡ଼େ ଗଳି ।
ବେଳକୁ ବେଳ ହୋଇଲା ଘୋରତର ରଣ
ସ୍ଥିର ଶର ସାରଥିଙ୍କ ବନ୍ଧେ ଭୀଷ୍ମଗଣ ।
ନନ୍ଦିଘୋଷ ରଥପରେ ବଜେ ହନୁମନ୍ତ
ତାକୁ ସହସ୍ର ନାରାଚ ବନ୍ଧେ ଗଙ୍ଗାସୁତ ।
ରଥର ସ୍ଥିର ଅଶ୍ୱକୁ ବୃହସସ୍ର ଶର
ବେନି ସହସ୍ର ବନ୍ଧିଲେ ପାର୍ଥର ଉପର ।
ତହିଁକି ପ୍ରତି ଉତ୍ତର ଦେଲେ ବନମାଳୀ
ପ୍ରମାଦ ପଡ଼ିଲା କୁ କ ପାରିବୁ ସମ୍ଭାଳି ।
ସବୁକୁହିଁ ଉପବେଧ ଛାଡ଼ିଲେ ଗାଙ୍ଗେୟ
ବେଗହୋଇ ନିବାରଣ କର ଧନଞ୍ଜୟ ।

ପାର୍ଥ ବୋଲେ ଅଚ୍ଛୁ ଯେତେ ଦାଣ ସେ ବନ୍ଧକେ
କଞ୍ଚୁକ ନାଗତେ ତାହା କାଟିବଇଁ ସବେ ।
ଏ ଗୁର କଥାକୁ ପ୍ରଭୁ କପାଁ କର ଖ୍ରାନ୍ତ
ଦିବ୍ୟ ଅଟେ ଖିଷ୍ଣୁ ଶର ନୈଦବ ବିକୋଧ ।
ଅପାର ଚରଣ ଯନ୍ତ୍ରି ଥାଏ ଜମାହେ ଇ
କଞ୍ଚୁକ ଅନଳେ ତାହା ଜଳ କ ନ ଯାଇ ।
ବନ୍ଧ୍ରଶର ନକ୍ଷେପିଲେ ଖିଷ୍ଣୁ ହୋଇ ଗେପି
କଞ୍ଚୁକ ନାଗତେ ତାହା ଅର୍ଜ୍ଜୁନ ବିନାଶି ।
ପୁଣି ଅଇବ୍ରତ ଶର ଅର୍ଜ୍ଜୁନ ବନ୍ଧିଲେ
କଷୁଣୀ ଅଙ୍ଗୁଷ୍ଠି ଯେନ ଝାଳ ପୋଛୁ ଦେଲେ
ଏତେ ମାତ୍ର ଛିଦ୍ର ପାଇ ଖିଷ୍ଣୁ ଶରସନ୍ଧି
ଧାଡକାରେ ମାରଗଲେ ଦଶସହସ୍ର ଯୋଦ୍ଧୀ ।
ସମର ଉତ୍ସ ବୋଲଣ ଶୁଭେ ଶଙ୍ଖଧ୍ୱନ
ଜୟକର ବାହୁଡ଼ିଲେ କୁରୁବଳ ସୈନ୍ୟ ।
ସମର ଉତ୍ସ ବୋଲଣ ଶୁଭେ ଶଙ୍ଖଧ୍ୱନ
ଜୟକର ବାହୁଡ଼ିଲେ ବୀର ଶାସ୍ତନମା ।
ହେତେ ତ କଣ ବୋଇଲେ ଆରେ ରେ ଅର୍ଜ୍ଜୁନ
ଦେଖିଲୁଟିକ ପ୍ରତିଜ୍ଞା ମୋର ବୀରପଣ ।
ଆଜ ଦଶସହସ୍ର ଜାଣ ନାଶ ତୋର ଯୋଦ୍ଧୀ
କାଲ ଦଶସହସ୍ର ନାଶିବଇଁ ଶର ବନ୍ଧି ।
ଏହା କହି ବାହୁଡ଼ିଲେ ସେଠାରୁ ଗାଙ୍ଗେବେ
ରଥ ଗଜ ଅଶ୍ୱ ସେନା ପଦାତି ସମସ୍ତେ ।
ବାମ ଡାହାଣରେ ଦେଖ ଗୋବିନ୍ଦ ବୋଇଲେ
ଦଶସହସ୍ର ଯୋଦ୍ଧା ତୋର ଖିଷ୍ମ ନାଶ କଲେ ।
ରଥୁ ଓହ୍ଲାଇ ଦେଖଇ ପାର୍ଥ ମହାମତି
ସୈନ୍ୟମାନେ ବେନି ବେନି ଖଣ୍ଡ ହୋଇଛନ୍ତି ।
ଶ୍ରୀକୃଷ୍ଣଙ୍କ ମୁଖ ଚାହିଁ ପୁଚ୍ଛଇ କଥଟି
ଜୟକରି କୁରୁବଳ ଯାଅନ୍ତି ଲେଉଟି ।
ଏହି କଥା ଦେଖି ମୋତେ ଲଗଇ ଚାଟକା
ପାଣ୍ଡବଗଣଙ୍କୁ ଏବେ ଆଉ ନାହିଁ ରକ୍ଷା ।
କପାଳରୁ ଝାଳ ଦେବ ପଶନ୍ତେ ନେତ୍ରରେ
ଶୀଘ୍ରତେ ଶର ପେଷିଲେ ପୋଛୁବା କାଳରେ
ଏତେ ଦ୍ୱନ୍ଦ୍ୱ ଆରମ୍ଭିଲୁ ଭୁଞ୍ଜ ଅନମିରେ
ଆମ୍ଭଙ୍କୁ ତୁ ଆଉ ରଖିପାରୁ କେମନ୍ତ ।
ଏତିକ ଛିଦ୍ରକୁ ସୈନ୍ୟ ଦଶସହସ୍ର ମାର
ଗଲେ ଜୟଶଙ୍ଖ ବାଇ ମହାନାଦ କରି ।

ଯଶ କରଣ ପତାକା ଉଡ଼ାଇଲେ ରଥେ
ପ୍ରତିଜ୍ଞା ରକ୍ଷା କରିଲେ ଶାନ୍ତନୁଙ୍କ ସୁତେ ।
ବିକଳ ହୋଇଲେ ପାର୍ଥ ଯୋଦ୍ଧା କଷ୍ଟ ଦେଖି
ଦୁଃଖେଣ ଲୋତକ ତାର ବହେ ବେନି ଆଖି
ବୋଲେହେ ହରିମୋ ମୃତ୍ୟୁନୋହେସ୍ୱାଙ୍କ ଆଗେ
ସମରେ ପଡ଼ିଲେ ସିନା ଏମାନେ ମୋ ଯୋଗେ
ମଦର ଦେଶର ରାଜା ଶ୍ରୀମ ଚକ୍ରବର୍ତ୍ତୀ
ସେ ରଜା ଭୁଲେ ପଡ଼ିଲେ ଦଶସହସ୍ର ରଥୀ ।
ଯୋଜନେକ ଆସ୍ଥତନେ ପଡ଼ିଲେ ପଦାତି
କାନ୍ଦଇ ଫାଲ୍‌ଗୁନ ଦେଖି ଏହିପରି ଗତି ।
ହରିଙ୍କି ବୋଇଲେ ଅତି ବ୍ୟାକୁଳତ ହୋଇ
ଏ ଜୀବନେ ଆଉ ମୋର କିଛି କାର୍ଯ୍ୟ ନାହିଁ
ଏହା ଦେଖି ଜୀଇଂବାର ମୃତ୍ୟୁ ବଡ ସୁଖ
ଜନ୍ମାନ୍ତ ଭୁବନେ ସ୍ୱାମୀ ଗୃହିଁବ କା ମୁଖ ।
ବନ୍ଧୁଭାବ କରଣ ଯେ ଅଇଲେ ସତବେ
ସମର କରଣ ଆମ୍ଭ ଶତ୍ରୁଙ୍କୁ ମାରିବେ ।
ସବେ ବୋଲନ୍ତି ପାଣ୍ଡବେ ଜଗତରେ ଜତା
ରାଜସୂୟ ଯାଗ ଦେଖିଲେ ପୁଣି ବଳବନ୍ତା ।
ସେ ପ୍ରାପ୍ତ ମଣି ଅଇଲେ ଆମ୍ଭ ବୋଲକରି
ଯୁଦ୍ଧରେ ପଡ଼ିଲେ ସେହୁ ହୋଇ ଆଗୁସରି ।
ଅନେକ ବିକଳ ହୋଇ କାନ୍ଦେ ପାର୍ଥବୀର
ଶାନ୍ତ କରଣ କହନ୍ତି ଦେବ ଶିଖିଧର ।
ଶୋକ ସମ୍ବର ହେ ତୁମ୍ଭେ ଆରମ୍ଭିଛ ଯୁଦ୍ଧ
ଏତେବେଳେ ନିଜେ କପାଁ ନ ହୁଅ ପ୍ରବୋଧ
ସମ୍ପଦ ବିପଦ ଦୁଇ ଆପଣାର କର୍ମ
ହାରିବା ଜିଣିବା କଥା କ୍ଷତ୍ରୀଙ୍କର ଧର୍ମ ।
ପରାଧୀନ ଯୋଦ୍ଧାମାନେ ପଡ଼ିଲେ ସମରେ
ସଂଗ୍ରାମେ ପଶିଲେ ଜାଣ ହୁଏ ଏ ପ୍ରକାରେ ।
ସଂଗ୍ରାମ ପ୍ରମାଦ ନିଜ ବନ୍ଧୁ ନାଶ ହେତୁ
ଶୋକେ ତା ଅଙ୍ଗ ପ୍ରତ୍ୟଙ୍ଗେ ହେଉଛୁ ବେପଥୁ
ମର୍ତ୍ତ୍ୟେ ଜନ୍ମିଲେ ଦେବତା ହୋଇଲେ ମରଇ
ଏ କଥା କହେ ଅର୍ଜ୍ଜୁନ ତୋତେ ଜଣା ନାହିଁ ।
ବହୁରଣ ଯମ ଏହା କରଇ ଆଚରିତ
ଯାହାର ଯେ କର୍ମ ଦୋଷ ପୂର୍ବର ଅର୍ଜିତ ।
ମହାଭାରତ ଭୂମି ଯେ ପୁଣ୍ୟେ ଥିଲେ ପାଇ
ଏ ସ୍ଥାନେ ପଡ଼ିଲେ ବାବୁ ବୈକୁଣ୍ଠକୁ ଯାଇ ।

ଆକାଶକୁ ଲକ୍ଷ୍ୟ ତୁ ହୋ କର ପାରପାର୍ଥ
ଯେତେକ ସୈନ୍ୟ ପଡ଼ିଲେ ଯାନ୍ତି ସ୍ୱର୍ଗପଥ
କୃଷ୍ଣଙ୍କ ବଚନେ ବୀର ଆକାଶେ ଚାହିଁଲା
ବହୁତ ବିମାନ ଦେଖି ସ୍ତବଧ ହୋଇଲା ।
ଦେଖିଲେ ସମରେ ଆଜ ମଲେ ଯେତେସୈନ୍ୟ
ସମସ୍ତେ ଆରୋହିଛନ୍ତି ପୁଷ୍ପକ ବିମାନ ।
ବହୁ ରତ୍ନମାନଙ୍କରେ ହୋଇଛନ୍ତି ମଣ୍ଡି
ଆଗରେ ଯେ ସାରଭୂର ବାଜଇ ଦାଉଣ୍ଡି ।
ପାଟଛନ୍ଦ ଉଡ଼େ ଆଉ ହୁଏ ପୁଷ୍ପବୃଷ୍ଟି
ଉଭୟ ସମସ୍ତ ବଳ ଦେଖିଲେ କିରୀଟି ।
ଅର୍ଜ୍ଜୁନ ଯେ ପ୍ରଣିପାତ ହରି ପାଦତଳେ
ବିଷାଦ ଚିତ୍ତୁଁ ଛାଡ଼ିଲେ ପାର୍ଥ ତେତେବେଳେ
ତୁମ୍ଭେ ଦେବ ଶଙ୍ଖ ଚକ୍ର ଗଦା ଶାର୍ଙ୍ଗଧାରୀ
ଶମ୍ଭୁଜର ଚିନ୍ତାମଣି ମର୍ତ୍ତ୍ୟେ ଅବତରି ।
ଏ ତୋର ଶ୍ରୀମୁଖ ପ୍ରଭୁ ଦେଖିଣ ଅଦ୍ୟାପି
ପାଇଣ ପରମ ଗତି ତରିଯାନ୍ତି ପାପୀ ।
ଡମ ଚଣ୍ଡାଳ ଯେ ଏଥି ଥିବା ବାଦ୍ୟକାର
ସମସ୍ତେ ଦେଖିଲି ହେବ ଯାନ୍ତି ସ୍ୱର୍ଗପୁର ।
ସାର୍ଥକ ଜୀବ ତାଙ୍କର ଦେଖିଲି ଶ୍ରୀପତି
ଜୀବନ୍ତାହୁଁ ମରଣ ଏ ଅଟେ ସଦଗତି ।
ବହୁତ କାନ୍ଦଣ ଚିନ୍ତା କରୁଥିଲେ ପାର୍ଥ
କ୍ଷଣକେ ତା ଛଡ଼ାଇଲେ ଜଗତର ନାଥ ।
ଜୟ ତୁମ୍ଭ ହୃଷୀକେଶ ପୃଥ୍ୱୀ ଚିନ୍ତାମଣି
ତୋହର ଦର୍ଶନେ ଗତି ମୁକ୍ତ ପାନ୍ତି ପ୍ରାଣୀ ।
ଶ୍ୱେତ ପୀତ ନୀଳବର୍ଣ୍ଣ ଧରି ତିନମୂର୍ତ୍ତି
ବଡ଼ ଦେଉଳ ମଧ୍ୟରେ କରିଛ ବସତି ।
ଯେ ତୁମ୍ଭଙ୍କୁ ଭକ୍ତିରେ ଚିନ୍ତେ ହୃଦ ମଧ୍ୟେ
ତାର ଯମଦଣ୍ଡ ନାଥ ଖଣ୍ଡ ଅପ୍ରମାଦେ ।
ମହାଭାରତ ଚରିତ ଶ୍ରୁତି ସୁଖକର
ମୁହିଁ କି କହିବି ତାହା ବେଦେ ଅଗୋଚର
ସେହି ଚକାଡ଼ୋଳା ଯାହା ଦେଉଛନ୍ତି କହି
ତାହା ମୁଁ ଲେଖଇ ଏଥେ ମୋର ଦୋଷନାହିଁ
ନୁହଇ ପଣ୍ଡିତ ମୁହିଁ ପଢ଼ିନାହିଁ ତଳେ
ହୃଦରେ ଭାବଇ ଏକା ଶ୍ରୀଚଣ୍ଡୀ ଶାରଳେ ।
ନ ପଢ଼ି ପଣ୍ଡିତ ମୁହିଁ ହେଲି ତାଙ୍କ ବୋଲେ
ଶାରଳା ଦାସ ଶରଣ ତାଙ୍କ ପାଦତଳେ ।

## ଭୀଷ୍ମଙ୍କ ନିକଟରେ ପୁରୋହିତଙ୍କର ଅନ୍ନଦାନ କଥା ବର୍ଣ୍ଣନ

ବେ ବସ୍ୱତ ମନୁ ଆଗେ ବଦନ୍ତି ଅଗସ୍ତି
ଅର୍ଜ୍ଜୁନଙ୍କୁ ସମ୍ଭାର୍ଜିଣ ଆସନ୍ତେ ଶ୍ରୀପତି ।
ବିଜୟ ଧର୍ମନନ୍ଦନ ଇନ୍ଦ୍ରପ୍ରସ୍ଥପୁରେ
ହରସରେ ଚଳିଗଲେ ସର୍ବ ମହାବୀରେ ।
ସ୍ନାନ ନିତ୍ୟକର୍ମ ସାରି କଲେ ଦେବ ପୂଜା
ସନ୍ଧ୍ୟା ସାରି ମଣୋହିକୁ ବିଜେ ଦେବରଜା
ଶୁଣ ହେ ଚୈତନ୍ୟ ଏବେ କୌରବ ସଇନ
ସାଧୁ ସାଧୁ ଭୀଷ୍ମ ବୋଲି କଲେ ମୁଖଧ୍ୱନି ।
ବହୁରନ୍ନ ବନ୍ଦାଇଲେ ରାଜା ଭୀଷ୍ମମାଥେ
ଲକ୍ଷେକ ସୁବର୍ଣ୍ଣ ଦାନ କଲେ କୁରୁନାଥେ ।
ବୋଲେ ଏମନ୍ତେ ସମର କଲେ ଭୀଷ୍ମଦେବେ
ପାଣ୍ଡବଙ୍କର ସଇନ ଆଉକ ବର୍ତ୍ତିବେ ।
ଏବେ ଯେ ଜାଣିଲି ପିତା ତୁମ୍ଭର ଯୁଦ୍ଧେହିଁ
ଧରମ ଦେବତା ମୋତେ କରିବେକ ରାହି ।
ଏସନକ ପୁରୁଷାର୍ଥ କଲି ମହୀପାଳେ
ତୃତୀୟ କାଳର ସ୍ନାନ ସନ୍ଧ୍ୟାହିଁ ସାରିଲେ ।
ମଣୋହିକୁ ବିଜେଦେବାକଲେ ଯେତେବେଳେ
ଦାନରେ ବାଞ୍ଛା କରନ୍ତି ଗାୟନ୍ତନୁ ବାଳେ ।
ଭୋଜନାନ୍ତ ସାରି ଭୀଷ୍ମ ଆସ୍ଥାନେ ବସିଲେ
ପ୍ରୋହିତଙ୍କୁ ଡକାଇଣ ଏପରି ପୁଛିଲେ ।
ବୋଇଲେ ପ୍ରୋହିତ ମୁହିଁ କଲି ବ୍ରହ୍ମହତ୍ୟା
ଏଥିକୁ ଉପାୟ କହ ଲାଗେ ଗୁରୁଚିନ୍ତା ।
ପ୍ରୋହିତ ବୋଲେ ଏଥିକୁ ଅନ୍ନଦାନଦେଲେ
ହତ୍ୟାଦୋଷମୁକ୍ତ ହେବ ଅନ୍ନେ ଶାନ୍ତ ହେଲେ
ଭୀଷ୍ମ ବୋଇଲେ ଏମନ୍ତ ଅଛି ଯେବେ ପୂର୍ବେ
ତବ ମୁଖୁ ଶୁଣି ହାଦେ ତା କରିବି ଏବେ ।
ପୁରୋହିତ ବୋଇଲେ ହେ ଶୁଣ ପୂର୍ବକଥା
ଶୁଦ୍ଧୋଦକ ବୋଲି ସତ୍ୟଯୁଗର ବାରତା ।
ପୁରୁରବା ବଂଶେ ଶ୍ୱେତକଳ୍ପ ବୋଲି ରାଏ
ଦାନେ ଶୂରବନ୍ତ ସେହୁ ଦିଗପାଳ ପ୍ରାଏ ।
ବହୁଯାଗ ଯଜ୍ଞ କଲି ସେହି ନରନାଥ
ଗଜ ଅଶ୍ୱଆଦି ଦାନ ଦେଲାକ ବହୁତ ।
ସ୍ୱର୍ଣ୍ଣଦାନ ଜଳଦାନ ତୁରଙ୍ଗ ଶକଟ
ଏହି ଦାନ ଦିଏ ସଦା ଯେ ଶ୍ୱେତ ସମ୍ରାଟ ।

ପ୍ରତିଦିନ ଏହିପରି ବିଏ ସେ ରାଜନ
ଭୋଜନ ଦାନରେ ତାର ନ ବଳଲା ମନ ।
ବହୁସହସ୍ର ବର୍ଷ ରାଜା ସତ୍ୟଯୁଗେ ବଞ୍ଚି
କାଳେ ପ୍ରାଣତ୍ୟାଗ କଲା ସେହି ନରପତି ।
ହାସେ ତା ପାଶେ ନଇଲେ କେହି ଯମଗଣ
ବିଗୃର ହେଲା ରାଜାର ଧର୍ମଙ୍କ ସଦନ ।
ଦେବଲୋକେ ବସାଇଲେ ତାଙ୍କୁ ଆସ୍ଥାନରେ
ବହୁରତ୍ନ ଆଭରଣ ପିନ୍ଧାଇଲେ ତାରେ ।
କ୍ଷୁଧାରେ ଅତି ବିକଳ ହେଲା ନୃପମଣି
ସ୍ୱର୍ଗରେ ନରେନ୍ଦ୍ର ତାଙ୍କୁ ମାଗେ ଅନ୍ନପାଣି ।
ବିଧାତା ବୋଇଲେ ତୁ ନ ଦେଲୁ ଅନ୍ନଦାନ
ଦେଇଥିଲେ ପାଇଥାନ୍ତୁ ଶାସ୍ତ୍ରର ବିଧାନ ।
ବିଧାତାବୋଇଲେତୋତେକ୍ଷୁଧାଲାଗେ ଯେବେ
ଏ ସ୍ଥାନରୁ ନରପତି ତୁହି ଯାଅ ଜବେ ।
ତୋ ପିଣ୍ଡ ଦହନ କଲେ ଯେବଣ ଶ୍ମଶାନ
ସେ ପାଉଁଶ କରି ତୁହି ପ୍ରତିମା ଗଠନ ।
ସେହି ପାଉଁଶ ପିତୁଳ ତୁହି ଯେ ଖାଇଲେ
ତୋର ପିଣ୍ଡ ସୁସ୍ଥ ହେବ ଯାଅ ଆମ୍ଭ ବୋଲେ
ପିତାମହଙ୍କ ବଚନେ ଗଲି ତହୁଁ ବେଗେ
କୁରୁନାମେ ବ୍ରହ୍ମା ଯଜେ କଲେ ମଧ୍ୟସ୍ୱର୍ଗେ ।
ତାହାଙ୍କୁ ଦେଖିଣ ଶ୍ୱେତକଳ୍ପ ପାଡ଼େ ବୋବ
ହେ ପିତା ଏଥୁ ଉପରି ମୁକତି ପାଇବି ।
ଧାତା ବୋଇଲେ ଅଗସ୍ତି ନାମେ ଯେଉଁ ଋଷି
ତାହାଙ୍କୁ ଦେଖିଣ ତୁହି ମୁକତି ହୁଅସି ।
ତ୍ରେତୟା ଦ୍ୱାପର ଯୁଗ ହାଦେ ବହିଗଲା
କଳିଯୁଗ ଆସିକରି ପ୍ରବେଶ ହୋଇଲା ।
ମାଟି ଖାଇବା ପାଇଁକି ଆସେ ନରବର
ଶ୍ମଶାନେ ମାଟି ଖାଉଛି ଶ୍ୱେତ ଖରତର ।
ଆଦବାର ନକ୍ଷତ୍ର ଯେ ହସ୍ତା ସେ ଦିନରେ
ଆମ୍ଭେ ପ୍ରବେଶ ହୋଇଲୁ ମହାକମ୍ପ ଷରେ ।
ବୋଇଲୁ ଦିବ୍ୟଭୂଷଣ ଦେଖୁ ତୋର କାୟେ
ଶରୀର ଦିଶଇ ଯେସନ୍ତେ ଦେବତା ପରାୟେ ।
ଛାର ମଶାଣି ପାଉଁଶ କପାଇଁ ଖାଉଛୁ
ଅମୃତ ତେଜ୍ୟା କରିଣ ଏହା କପାଁ ଇଛୁ ।
କେମନ୍ତ କାରଣ ଏ କି ତୋହର ପ୍ରକୃତି
ସେ ବୋଲେ ମୋ ନାମ ଶ୍ୱେତକଳ୍ପ ମହୀପତି
ବହୁଦାନ ଦେଲି ମୁହିଁ କଲି ବହୁଯଜ୍ଞ
ଅନ୍ନଦାନ ନ ଦେଲି ମୁଁ ମୋହର ଅଭାଗ୍ୟ ।
ସମସ୍ତେକ ପ୍ରାଣତ୍ୟାଗ ହେଲି ଯେତେବେଳେ
ବହୁତ ଦୁଃଖ ପାଇଲି କ୍ଷୁଧାର ବିକଳେ ।
ଏହିପରି ହୋଇବାରୁ ପିତା ପାଶେ ଗଲି
ବହୁତ ବିନୟ ହୋଇ ତାଙ୍କୁ ଜଣାଇଲି ।
ପିତା ବୋଇଲେକ ତୁ ନ ଦେଲୁ ଅନ୍ନଦାନ
ତୋହର ମୃତପିଣ୍ଡକୁ କରି ତୁ ଭକ୍ଷଣ ।
ମୁଁ ବୋଇଲି ପ୍ରତିକାର କର ଏଥୁ ମୋତେ
ଏ ଘୋର ସଙ୍କଟୁପାର ହୋଇବି କେମନ୍ତେ ।
ପିତା ବୋଇଲେ ଅଗସ୍ତି ଋଷିଙ୍କର ଭେଟ
ପାଇଲେ ଯିବ ତୋହର ଏ ମହତ କଷ୍ଟ ।
ଆବର ବୋଇଲେ ତାଙ୍କୁ ଭେଟିଲେ କହିବୁ
ସେହି ମହାତ୍ମାଙ୍କ ଯୋଗେ ଏ କଷ୍ଟୁ ତରିବୁ ।
ଶ୍ୱେତକଳ୍ପ ରାଜା ମୁଖୁଁ ଏ ବଚନ ଶୁଣି
ଚଳିଗଲୁ ଆମ୍ଭେ ତହୁଁ ହୃଦେ ତାହା ଘେନି ।
ମେଖଳା ଗଙ୍ଗାଜଳରେ ଯାଇଣ ପଶିଲୁ
ଯେ ବିଧି ବିଧାନ ନିତ୍ୟକର୍ମମାନ କଲୁ ।
ପୁଣି ବାହୁଡ଼ି ଅଇଲୁ ନିତ୍ୟ ଆଶ୍ରମକୁ
ଭେଟିଲୁ ଯାଇଣ ଶ୍ୱେତକଳପ ରାଜାଙ୍କୁ ।
ଶୁଣ ଆହେ ମହାରାଜା ବଦନ୍ତି ଅଗସ୍ତି
ହୋଇଲୁ ଯେ ବାଳଖିଲ୍ୟା ବ୍ରହ୍ମାଙ୍କ ସନ୍ତତି ।
ଏନ୍ତେ ବ୍ରାହ୍ମଣେ ଭୋଜନ ଦିଅ ମୋ ହସ୍ତର
ଏ ଘୋର ପାପରୁ ତେବେ ହୋଇବୁ ତୁ ପାର
ଶୁଣିକରି ସେହିକ୍ଷଣି ଜଳ ତିଳ ଆଣି
ଆମ୍ଭ କରେ ଟେକି ଦେଲା ଶ୍ୱେତ ନୃପମଣି ।
ସତ୍ୟେ ସଂକଳ୍ପ କରିଣ ତହୁଁ ଦେଲା ଜଳ
ବୋଇଲେ ଖଣ୍ଡିଲା ତୋର ଦୁର୍ଗତି ସକଳ ।
ଏବେ ଶବଭସ୍ମ ଆଉ ନ କର ଭୋଜନ
ଏଣିକି ମିଳିବ ତୋତେ ଦିବ୍ୟଶାଳି ଅନ୍ନ ।
ଇଦଂ ବାକ୍ୟ କହି ଆମ୍ଭେ ବାଞ୍ଛନ୍ତେ କଲ୍ୟାଣ
ଶ୍ୱେତକଳ୍ପ ରାଜା ଅନ୍ନଦାତା ହେଲା ଜାଣ ।
ଯେଉଁ କଆରିରୁ ତପୋଧାନ କାଟିନେଲା
ଗୋଟିଏ ଗୋଟିଏ ଧାନ ଯାହା ପଡ଼ିଥିଲା ।
ଗୋଟିଏ ଗୋଟିଏ କରି ଖୁଣ୍ଟି ନରନାହା
ନିଃଶବ୍ଦନେ ଆମ୍ଭ ହସ୍ତେ ସବୁ ଦେଲା ତାହା ।

ଶୁଣହୋ ଗାଙ୍ଗେୟ ଏହା ବୋଲନ୍ତି ବ୍ରାହ୍ମଣେ
ଅନ୍ନଦାନ ନ ଦେଲେ ଯେ କଷ୍ଟ ପାଇ ଏଣେ ।
ଅଥବା ଯେହୁ ବସ୍ତ୍ର ଦେଇପାରେ ଅନ୍ନ
ତାହାର ପୁଣ୍ୟ କହିବା କେ ଅଛୁ ସୁଜନ ।
ତଥାପି ଦୁଃଖ ଯେବେ ନ ପାଏ ସେହୁ ପ୍ରାଣୀ
ଯଥାସାଧ୍ୟ ଅତିଥିଙ୍କୁ ଦେବ ଅନ୍ନପାଣି ।
ଭୀଷ୍ମ ଯେ ସାନନ୍ଦ ହେଲେ ଏହି ବାକ୍ୟ ଶୁଣି
ଲକ୍ଷେ ବିପ୍ରଙ୍କୁ ଭୋଜନ ଦିଅନ୍ତି ନିତ୍ୟେ ଆଣି ।
ସରସ୍ୱତୀ ନଦୀତୀରେ ଦେଲେ ଅନ୍ନଛତ୍ର
ଯେ ଯେତେ ଇଚ୍ଛା ଭୋଜନ ପାଆନ୍ତି ସମସ୍ତ ।
ଘୃତ ତଅଣ ଜଳ ଯେ ଆଉ ବସ୍ତ୍ରଦାନ
ଯୁଦ୍ଧର ଶ୍ରମେ ଭୁଞ୍ଜନ୍ତି ତହିଁ ସର୍ବଜନ ।
ଯେ ଯେତେ ମାଗିଲେ ତାଙ୍କୁ ଦିଅଇ ସବୁନ୍ତି
ଦାନ ଧର୍ମ କରନ୍ତେ ଯେ ପ୍ରସରନ୍ତି ଖ୍ୟାତି ।
ଏ ସମୟେ ଚଳଗଲେ ଭୀଷ୍ମ ନିତ୍ୟକର୍ମେ
ନିତ୍ୟକର୍ମ ସାରି ବିଜେ ମାଧବ ଦର୍ଶନେ ।
ଦରଶନ ସାରି ସେହୁ ଯୁଦ୍ଧେ ବାହାରିଲେ
କେଉଁପରି ଯୁଦ୍ଧ ହେବ ମନରେ ଭାଳିଲେ ।
ଶୁକ୍ରବାର ସେଦିନ ଯେ ସାଧ୍ୟନାମେ ଯୋଗ
ବିସ୍ତୁ ସଂକ୍ରାନ୍ତିର ସତାଇଶ ଦିନ ଭୋଗ ।
ଭୃଷ୍ଟାପ୍ତ ଦିନର ଯୁଦ୍ଧ ହେଉଅଛି ଲେଖା
ପାଣ୍ଡବଦଳଙ୍କୁ ଭୀଷ୍ମ ନ କରନ୍ତି ଶଙ୍କା ।
ଶାରଙ୍ଗର ବଜ୍ରଘୋଷ ମର୍ଦ୍ଦଳ ବାଉଣ୍ଡି
ଅନେକ ରତ୍ନରେ ଭୀଷ୍ମଙ୍କର ରଥ ମଣ୍ଡି ।
ଏକଲକ୍ଷ ପାଟଛତ୍ର ଆଲମ୍ବ ଉଦଣ୍ଡ
ଝଲକନ୍ତି ମଣିମୁକ୍ତା ଯେସନ୍ତେ ମାରତଣ୍ଡ ।
ଅନଳ ମଣ୍ଡଳ ମହାଚନ୍ଦ୍ର ଚୂଡ଼ାମଣି
ବିରାଜନ୍ତି ଅଷ୍ଟରତ୍ନ ହୃଦେ ଚନ୍ଦ୍ରମଣି ।
ତାଡ଼ ତୋଡ଼ର ବାହୁଟି ଆଉ ଜଗଦ୍ଝଳା
ବିଦ ମୁଦ କଙ୍କଣ ଯେ ଗଳେ ରତ୍ନମାଳା ।
ଦିବ୍ୟ ଅଳଙ୍କାର ମଣ୍ଡି ହୋଇ ଗଙ୍ଗାସୁତ
ରଥେ ବିଜେକଲେ କରେ ଧରି ଧନୁ ଅସ୍ତ୍ର ।
ଶ୍ରୀଭୁଜେ ଅର୍ଘ୍ୟ ଘେନିଣ ମାନଚକ୍ରବର୍ତ୍ତୀ
ଭୀଷ୍ମଙ୍କର ଶିରେ ନେଇ ବନ୍ଦାଏ ଉତ୍ପତ୍ତି ।
ବିଧିବାମନ ସୁମରି ଚଳ ପିତାମହ
ଏ ମୋହର ଅଭିମାନ ଫେଡ଼ିବ ନିଶ୍ଚୟ ।

କୌରବବଂଶକୁ ନାଥ ତୁମ୍ଭେ ସେ ଧାରଣ
ତୁମ୍ଭେ ସେ ମୋହର ବଂଶ କରସି ଭକ୍ଷଣ ।
ଅନାଥ ଜନଙ୍କୁ ନାଥ ତୁମ୍ଭେ ସେ ରଖନ୍ତା
ତୁମ୍ଭେ ଅଟ ମହା ନାଗ ମୁଁ ମୂଷିକ ଭକ୍ତା ।
ତୁମ୍ଭର ଶରଣ ବିନା ନ ବାଞ୍ଛଇ ଆନ
ସୋମବଂଶ ରଖ ତୁମ୍ଭେ ଭୀଷ୍ମ ଦ୍ରୋଣ କର୍ଣ୍ଣ ।
ଏହିପରି ପୁରଃସର କହେ କୁରୁପତି
କାର୍ତ୍ତିକେଶ୍ୱରଙ୍କ ପ୍ରାପ୍ତେ ବିଶେ ଭୀଷ୍ମମୂର୍ତ୍ତି ।
ପାଞ୍ଚଲକ୍ଷ ହସ୍ତୀ ପାଞ୍ଚ ଷଉଣୀ ପଦାତି
ପାଞ୍ଚ ଅଇବୁଦ ରଥ ଅଛି ହାଦେ କତି ।
ଗୃଳଗ ସହସ୍ର ଯୋଦ୍ଧା ହୋଇଲେ ଗଣିତା
ଏତେକ ସୈନ୍ୟ ବାହାର ଭୀଷ୍ମ ମହାରଥୀ ।
ଗଗନ ଉଚୁଳଇ ଯେ ମୁଖଗର୍ବ ଧ୍ୱନି
ସମଦଣ୍ଡ ମଧ୍ୟେ ଭୀଷ୍ମ ହେଲେ ଆଗୁଆଣି ।
ପାଣ୍ଡବ ଦଳ ଯେ ଭୀଷ୍ମ ବୀରଙ୍କୁ ପ୍ରଶଂସି
ନିଶ୍ଚୟ ପାଣ୍ଡବଦଳ ହେବେ ଆଜ ଧ୍ୱଂସି ।
ଏସନ ସମୟେ ଭୀଷ୍ମ ସଇନ୍ୟ ଚଳନ୍ତେ
ଶ୍ୱେତ ନାମରେ ରଥ ଯେ ବିରାଟର ସୁତେ ।
ରଥର ସ୍ତମ୍ଭେ ସ୍ଫଟିକ ଜଣପୁ ସ୍ତ୍ରୀଏଣି
ଅଷ୍ଟ ରତ୍ନରେ ରଥକୁ କରଛି ମଣ୍ଡଣି ।
ଶଙ୍ଖ ଶ୍ୱେତ ଉତ୍ତର ଯେ ବିରାଟର ସୁତ
ଯୁଧିଷ୍ଠିରଙ୍କ ପାଶେ ସେହୁ ପ୍ରତିଜ୍ଞା ସାମର୍ଥ ।
ଯୁଧିଷ୍ଠିରଙ୍କୁ ଜଣାଇଲ ପଡ଼ଣ ପଶୁରେ
ମୋତେ ସେନାପତି କର ଆଜର ସମରେ ।
ବିଶ୍ୱାମିତ୍ରଠାରୁ ବିଦ୍ୟା ପାଇଅଛି ଭଲେ
ନିମିଷକେ ଜିଣିବି ମୁଁ ଯେତେ ଭୀଷ୍ମ ହେଲେ ।
ଯୁଧିଷ୍ଠିର ସମ୍ମତ କଲେ ତାର ବାକ୍ୟ ଶୁଣି
ଅର୍ଜ୍ଜୁନ ସମ୍ମୁଖରେ ତାକୁ ଉଭାରିଲେ ଆଣି ।
ବୋଲନ୍ତି ଧର୍ମନନ୍ଦନ ଶୁଣ ସବ୍ୟସାଚୀ
ଭୀଷ୍ମେ ଜିଣିବାକୁ ଶ୍ୱେତ ପ୍ରତିଜ୍ଞା କରୁଛି ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ଦେବ ଧର୍ମେ
ସ୍ମା ହର ଉତ୍ତର ନେଲ ଗୋଧନ ହରଣେ ।
ଦୁର୍ଯ୍ୟୋଧନ ସୈନ୍ୟ ଦେଖି ହୋଇଲ କାତର
ମୋତେ ବୋଇଲ ଆଣିଲୁ ସମୁଦ୍ର ଭିତର ।
ମୁଁ ଯେତେବେଳେ କହିଲି ଯୋଦ୍ଧାଙ୍କର କଥା
ମୋତେ ଛାଡ଼ି ପଳାଇଲ ଦେଇଣ ଅବସ୍ଥା ।

ଅଜ୍ଞାତ ବନବାସକୁ ମୁଁ ନ କର ଆଶ
ଅଠର କ୍ଷୌଣୀ ସୈନ୍ୟରେ ଏକା ଦେଲ ତ୍ରାସ ।
ଏହାଙ୍କର ମହିମା ମୁଁ ଜଣାଇ ଯେ ଭଲେ
ରାଜ୍ୟ ଆଶା ଛାଡ଼ ଦେବ ଯାକୁ ଆଶାକଲେ ।
ଅତ୍ୟନ୍ତ ପ୍ରମାଦ ଦେବ ନିଶ୍ଚୟ ଘଟିବ
ଏହାକୁ ଆଶା କରିଲେ କିଛୁ ନ ହୋଇବ ।
ଅତ୍ୟନ୍ତ ସୁନ୍ଦର ସ୍ତ୍ରୀର ରୂପ ଦିଶୁଛଇଁ
ଯାକୁ ଆଶାକଲେ ନିଶ୍ଚେ ହେଲା ବୁଡ଼ିବଇଁ ।
ଅତ୍ୟନ୍ତ ସୁନ୍ଦର ହାନ୍ତି କଉଟିଆ ଲୋକେ
ତାକୁ ଆଶାକରି ହେଲା ବୃତ୍ତାନ୍ତ ଯେ ଥୋକେ
କନ୍ୟା ଯଦ୍ୟପି ବାଳୁତ ବିଧବା ହୁଅଇ
ତାକୁ ଆଶା କଲେ ଜାଣ ଧର୍ମ ନାଶଯାଇ ।
ସ୍ୱାମୀ ଧନବନ୍ତ ହୋଇ କୃପଣ ହୋଇଲେ
କାହିଁ ଧର୍ମ ରହଇ କି ତାହାର କୁଳରେ ।
ନିଶ୍ଚେ ଯେବେ ସେ ଆରମ୍ଭ କରିବ ସଂଗ୍ରାମ
ତାହାର ପ୍ରହାରେ କେବେ ନ ଟଳିବ ଲୋମ ।
ଆହେ ସ୍ୱାମୀ କ୍ରୋଧେ ପ୍ରେତ ବିସ୍ତାରିବ ତୁଣ୍ଡ
ବୋଲଇ ଭକ୍ଷିବ ମୁହିଁ ସପତ ବ୍ରହ୍ମାଣ୍ଡ ।
କାଳେ ତାହା ତ ନୁହଇ ଏ କଥା କେମନ
ସ୍ୱପନ ଫଳକୁ ଆଶାକରେ ମୂର୍ଖ ଜନ ।
ଏହା ଶୁଣି ଯୁଧିଷ୍ଠିର ହୋଇଲେ ମଉନ
ନାରାୟଣ ମୁଖ ଚାହିଁ ବୋଲଇ ଅର୍ଜୁନ ।
ଅଜା ଯୂଥ ରହଇ କି ବ୍ୟାଘ୍ରର ଆଶ୍ରମ
ତୁମ୍ଭେ ଅନୁଗ୍ରହ କର ପୁରୁଷ ଉତ୍ତମ ।
ସହସ୍ରେକ ଭୀଷ୍ମ ହେଉ ଦୁଇସହସ୍ର ଦ୍ରୋଣ
ସହସ୍ରେକ ଅଶ୍ୱତ୍ଥାମା ଲକ୍ଷେ ହେଉ କର୍ଣ୍ଣ ।
ଯେତେକ ବୀର ହେଉନ୍ତୁ ଜିଣିବ ଅର୍ଜୁନ
ପ୍ରତିଜ୍ଞା କରିଣ ପାର୍ଥ କହଇ ଏସନ ।
ତୁମ୍ଭେ ପ୍ରଭୁ ବାହୁଥିବ ରଥକୁ ମୋହର
ମୋହର କେବଳ ଆଶା ନାମଟି ତୁମ୍ଭର ।
ବ୍ରହ୍ମା ଆଉ ରୁଦ୍ର ଇନ୍ଦ୍ର ହୋଇବ ଯଦ୍ୟପି
ସୃଷ୍ଟି ଯାକ ଜିଣିବି ମୁଁ ମନଭେଦ କ୍ଷେପି ।
ତୁମ୍ଭେ ଦେବ ଜଗତର ଜନ ଚିନ୍ତାମଣି
ମାନ ଉଦ୍ଧାରଣ ତୁମ୍ଭେ ଆୟୁଦାତା ପୁଣି ।
ସ୍ୱାମୀ ଭୀଷ୍ମ ଦ୍ରୋଣ କର୍ଣ୍ଣ ପ୍ରତ୍ୟକ୍ଷରେ ଯୋଧି
ମାନଙ୍କ ହୋଇଣ ଜୟ ତାକୁ ପାରେ ସାଧି ।
ପୂର୍ବଜନ୍ମେ ମୁହିଁ ବହୁ ତପ କରିଥିଲି
ସାରଥିରୂପେ ତୁମ୍ଭଙ୍କୁ ପ୍ରାପତ ହୋଇଲି ।
ଶ୍ରୀକୃଷ୍ଣ ଚରଣ ତଳେ ଶରଣ ମୁଁ ନିତ୍ୟେ
ଶୂଦ୍ରମୁନି ଶାରଳା ଯେ ଭଣେ ହୃଦଗତେ ।

— — —

## ଭୀଷ୍ମଙ୍କ ତୃତୀୟ ଦିନ ଯୁଦ୍ଧ ଚତୁର୍ଥଦିନେ ଶ୍ୱେତ ସେନାପତି ପଦେ ନିଯୁକ୍ତି

ଶୁଣ ଆହେ ଚଇତନ କହଇ ମୁଁ ତୋତେ
ପ୍ରତିଜ୍ଞା କରିଣ ପାର୍ଥ ବିଜେକଲା ରଥେ ।
ସାରଥି ହୋଇଲେ ପ୍ରଭୁ ଅଭେଦାତ୍ମା ଜାଣି
ଶଙ୍ଖ ଚକ୍ର ଶାରଙ୍ଗ ଯେ ଗଦା ଶୋହେ ପାଣି ।
ଶଙ୍ଖ ଶ୍ୱେତ ଗୋକ୍ଷୀର ଯେ ହୟ କାମପାଳ
ହଂସ ପ୍ରାୟ ପହଁରନ୍ତି ରଣକ୍ଷେତ୍ର ଜଳ ।
ଉଭୟ ଦଳ ସୈନ୍ୟ ଯେ ସମୁଦ୍ର ଅଟନ୍ତି
ହଂସ ରୂପେ ଚାରି ଅଂଶ ତହିଁ ବିହରନ୍ତି ।
ଇନ୍ଦ୍ରପ୍ରସ୍ଥ ରଣଭୂମି ଦ୍ୱାଦଶ ଯୋଜନ
ତିନ ଦଣ୍ଡରେ ଭେଟିଲେ ଯାଇ କୁରୁସୈନ୍ୟ ।
ଦେଖିଲେକ କୁରୁଥାଟେ ଭୀଷ୍ମ ଆଗୁଆଣି
କୁରୁ ସାଗର ଆବୋରି ରହନ୍ତି ବନ୍ଧ ଜାଣି ।
ଜଗନ୍ନାଥ ଭୀଷ୍ମଙ୍କର ସମ୍ମୁଖରେ ଯେ ଭେଟି
ଦେଖିଣ ଗଙ୍ଗାନନ୍ଦନ ରଥେ ଥାଇ ଲୋଟି ।
ରଥରେ ଥାଇଣ ଭୀଷ୍ମ କଲେ ପ୍ରଣିପାତ
ତବମୁଖ ଚାହିଁ ଯେହ୍ନେ ସ୍ୱର୍ଗ ହେଉ ପ୍ରାପ୍ତ ।
ଗୋବିନ୍ଦ ବୋଇଲେ ଭୀଷ୍ମ ପୂରୁ ମନୋବାଞ୍ଛା
ଯାହା ତୁ ମାଗିଲୁ ଭୋଗକର ତୋର ଇଚ୍ଛା ।
ଗାଙ୍ଗେୟ ବୋଇଲେ ହରି ଦୁଇ ଦଳ ମଧ୍ୟେ
ମୋ ମୁକ୍ତିଦାତା ସାରଥି ଅର୍ଜୁନ ସନ୍ନିଧେ ।
ବାଞ୍ଛା ସିଦ୍ଧ ହେଉ ବୋଲି ହୋଇଲୁ ପ୍ରସନ୍ନ
ରଣେ ତୋର ଆଗେ ମୋତେ ଛେଦୁ ଏ ଅର୍ଜୁନ
ଗୋବିନ୍ଦ ବୋଇଲେ ଭୀଷ୍ମ ଯେବେ କଲୁ ଇଚ୍ଛା
ଅର୍ଜୁନ ନିଶ୍ଚେ ତୋହର ପୂରାଇବ ବାଞ୍ଛା ।
ପୁନଃ ପୁନଃ ରଥେ ଭୀଷ୍ମ କଲେ ନଉଛାଳ
ତାଙ୍କୁ କଲ୍ୟାଣ କରନ୍ତି ଦେବ ବନମାଳୀ ।
ଏତେକ ବୋଲିଣ ଭୀଷ୍ମ ଧନୁ କରେ ଘେନି
ଶ୍ରୀକରେ ଗାଣ୍ଡୀବ ଧନୁ ଧଇଲେ ଫାଲ୍ଗୁନ ।

କହୁଁ କହୁଁ କୁପିତ ସେ ବୀର ଫାଲଗୁନ
ଭୀଷ୍ମ ବାନ୍ଧିଲେ ସହସ୍ର ନାରାଚକୁ ହେନ ।
ପୁନର୍ବାର ବାନ୍ଧିଲେ ସେ ଶର ଦଶ ଚାର
ଚାର ଅଶ୍ୱ ସାରଥିକି କୃଷ୍ଣ ଆଦିକରି ।
ପୁନରପି ଅଭିମନ୍ତ୍ରି ଘେନିଣ ନାରାଚ
ବାନ୍ଧିଲେ ଆକର୍ଷି କପିକେତନର ଧ୍ୱଜ ।
ହସ୍ତର ବ୍ୟଗ୍ରତା ଯାହା କହି ତ କେ ପାରି
ଜଳଦା ମାସରେ ଯେହ୍ନେ ବରଷଇ ଧାର ।
ନାରାଚ ତେଜେ ଆଦିତ୍ୟ ତେଜ ହେଲା ନ୍ୟୂନ
ଏପରି ଶର ବାନ୍ଧିଲେ ଶାନ୍ତନୁ ନନ୍ଦନ ।
ଗୋବିନ୍ଦ ବୋଇଲେ ତୁମ୍ଭ ଶୁଣସିଟିରେ ପାର୍ଥ
ଭୀଷ୍ମଙ୍କ ଶର ଘୋଟି ଆସି ତୋର ରଥ ।
ନାରାୟଣଙ୍କ ବଚନେ ପାର୍ଥ ବୀରମଣି
ପାଞ୍ଚ ଅଭିମନ୍ତ୍ରି ଶର ବାନ୍ଧିଲେକ ଟାଣି ।
ଭୀଷ୍ମଦେବ ବହୁତର ଶର ଯେ ବାନ୍ଧିଲେ
ଏକ ଏକ ନାରାଚକେ ପାର୍ଥ ତା ଛେଦିଲେ ।
ଗଙ୍ଗାର ନନ୍ଦନ ଏହା ଦେଖିଣ ପ୍ରଶଂସି
ଧନ୍ୟ ଧନ୍ୟ ରେ ଅର୍ଜୁନ ତୋର ଗୁଣରାଶି ।
କ୍ଷଣେ କ୍ଷଣେ ପଡ଼ିଲାକ ଶରୁ ଅଗ୍ନି ଉଠି
ଭୀଷ୍ମଙ୍କର ନାରାଚ ଯେ ସର୍ବାଙ୍ଗ ଘୋଟି ।
ଶଙ୍ଖ ଶ୍ୱେତ ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ଉତ୍ତର
ପୁଣି ସେହି ଅଭିମନ୍ୟୁ ଅର୍ଜୁନ କୁମର ।
ଦିବ୍ୟ ଅବତାର ହୋଇଛନ୍ତି ଷଡ଼ରଥୀ
ଶ୍ୱେତ ଆକୋଳିଲ ଯାଇ ଦ୍ରୋଣ ମହାରଥୀ
ଧନୁରେ ଶର ପୂରାଇ କୁମାର ଶିଖଣ୍ଡୀ
ଅଶ୍ୱତ୍ଥାମା ଆଗରେଣ ରଥ ନେଇ ମଣ୍ଡି ।
ଧୃଷ୍ଟଦ୍ୟୁମ୍ନ ଯେ କ୍ଷତ୍ରିୟ କୁଳକୁ ଉତ୍ତମା
ରଥ ଆକୋଳିଲେ ନେଇ ଆଗେ କୃତବର୍ମା ।
ଶଙ୍ଖ ନାମେ ରଥୀ ସେହି ବିରାଟର ପୁତ
ଶଲ୍ୟଙ୍କର ତୁଲେ ଯୁଦ୍ଧ କଲା ଅପ୍ରମିତ ।
କର୍ଣ୍ଣର ତୁଲେ ଉତ୍ତର କୁମାର ଯେ ମିଳି
ସୋମଦତ୍ତେ ଅଭିମନ୍ୟୁ ବୀର ଯେ ଓଗାଳି ।
ଭୂରିଶ୍ରବାର ସମର ଦ୍ରୁପଦର ତୁଲେ
ବିରାଟ ଛାମୁରେ କୃପ ଆଚାର୍ଯ୍ୟ ମିଳିଲେ ।
ପଞ୍ଚବିଂଶ ରଥୀ ତୁଲ ରାଜା ଜୟଦ୍ରଥ
ଆସିଣ ମିଳିଲେ ଭୀମସେନର ଅଗ୍ରତ ।

ଜୟଦ୍ରଥକୁ ଦେଖିଣ ଭୀମସେନ ହସି
ଏତେ ଦିନେ ମୋ ସମ୍ମୁଖରେ ପଡ଼ିଲୁ ତୁ ଆସି ।
ଦ୍ରୌପଦୀକୁ ଘେରିକଲୁ କାନନର ବନେ
ସେ ଦିନରୁ ଭେଟ ନାହିଁ ଭେଟ ଆଜ ରଣେ
ସାତବେଣି କଲି ମୁଁ ଯେ ତୋର ବାଳଲେଟ
ଦେଖିବାରେ ତୋର କେଶ କେମନ୍ତେ ହୋଇଛି
ଗଳାଇଣ ଛୁଡ଼ିଥିଲା ତୋତେ ଜାନୁକିଳେ
ସୁମରିଲୁ ପାସୋରିଲ କଥା ଏତେକାଳେ ।
ନଖେ ବିଦାରିଣ ତୋର ଛିଣ୍ଡାଇବି ଗଳା
ଆଜ ସେ ବିଧବା ଜାଣ ହୋଇବ ଦୁଃଶୀଳା
ଜୟଦ୍ରଥ ବୋଲେ ଭୀମା କଲୁ ସାତବେଣି
ସେହି ଅଟମାନେ ମୁହିଁ ସେବିଲି ଧୂର୍ଜଟି ।
ପ୍ରସନ୍ନରେ ବର ଦେଲେ ମୋତେ ତ୍ରିଲୋଚନ
ପାର୍ଥକୁ ଛାଡ଼ି ମାରିବୁ ତୁମ୍ଭ ଚାରିଜଣ ।
ସନ୍ତୋଷରେ ଏହି ବର ଦେଲେକ ଈଶାନ
ଏକମାତ୍ର ସମରେ ନ ଜିଣିବୁ ଅର୍ଜୁନ ।
ଭୀମ ବୋଲେ ଈଶ୍ୱରଙ୍କୁ ସେବିଲୁ ପାପିଷ୍ଠ
ପାର୍ଥେ ଜିଣିବାକୁ କପାଁ ନ କଲୁ ସନ୍ତୁଷ୍ଟ ।
ଜୟଦ୍ରଥ ବୋଇଲେକ ପାର୍ଥେ ଜିଣିବାକୁ
ବୋଲୁଁ ସେ ବୋଇଲେ ହରି ନୁହଇ ମୁଁ ତାକୁ
ପାର୍ଥକୁ ଈଶ୍ୱର ଯେବେ ସମର୍ଥ ନୋହିଲେ
ମାନବ ହୋଇଣ ମୁହିଁ ଜିଣିବି କ ଭଲେ ।
ଭୀମସେନ ବୋଲେ ତୁମ୍ଭ ଏହା ଯେବେ ଜାଣୁ
ଦୁର୍ଯୋଧନ ଆଗେ ମୂଢ଼ କପାଁ ନ ବଖାଣୁ ।
ଈଶ୍ୱର ଦେବତା ଯାକୁ ଯୁଦ୍ଧେ ନୁହେଁ ସରି
ତାହାର ସଙ୍ଗରେ ତୁମ୍ଭେ ଯୁଝିବ କପରି ।
ଜୟଦ୍ରଥ ବୋଲେ ମୋତେ ବର ଦେଲେ ହର
ତୁମ୍ଭ ଚାରିଙ୍କର ମୃତ୍ୟୁ ମୋହର ହସ୍ତର ।
ତୁମ୍ଭେମାନେ ମଲେ ଏକା ହୋଇବ ଅର୍ଜୁନ
ଭୀଷ୍ମ ଦ୍ରୋଣ ଆକୋଳିଲେ ଘେନିବେ ଜୀବନ
ଭୀମସେନ ବୋଲେ ତୋତେ ବର ଦେଲେ ହର
ତୋହର ମରଣ ନିଶ୍ଚେ ମୋହର ହସ୍ତର ।
ଜୟଦ୍ରଥ ବୋଲେ ଭୀମ କହଇ ମୁଁ ତୋତେ
ମୋହର ମରଣ କାହିଁ ଲେଖୁ ତୋର ହସ୍ତେ ।
ଏତେ ବୋଲି ଧନୁରେ ସେ ନାରାଚ ପୂରାଇ
ପକା ପ୍ରହାରକେ ଶିର ଯେ ପାରେ ଛିଣ୍ଡାଇ ।

ମୋ ମୁଣ୍ଡ ଛିଡ଼ିଣ ଯେବେ ଭୂମିରେ ପଡ଼ିବ
ପୁନରପି ସେହି ମୁଣ୍ଡ କନ୍ଧରେ ଲଗିବ ।
କନ୍ଧରୁ ଛିଡ଼ିଣ ମୁଣ୍ଡ ତଳେ ନ ପଡ଼ିବ
ଅନ୍ତରୀକ୍ଷ ମାର୍ଗେ ମୁଣ୍ଡ ଉଡ଼ାଇଣ ନେବ ।
ମୋର ପିତା ତପକରେ ଅନ୍ଧକର ତୀର୍ଥେ
ସେ ମୁଣ୍ଡ ପଡ଼ିବ ଯାଇ ତାହାଙ୍କର ହସ୍ତେ ।
ନୟନ ବୁଜିଣ ତପ କରୁଛନ୍ତି ତାତ
ମୋ ମୁଣ୍ଡ ପଡ଼ିବ ଯେବେ ଯାଇ ତାଙ୍କ ହସ୍ତ ।
ଧ୍ୟାନଭଗ୍ନ ହୋଇଣ ସେ ଚକ୍ଷୁକୁ ମେଲିବେ
ଭସ୍ମ ହୁଅ ବୋଲି ତହୁଁ ଅଭିଶାପ ଦେବେ ।
ପିତା ଭସ୍ମ ବୋଲନ୍ତେ ଯେ ଜଳିବ ମୋ ଶିର
ଏତେବାଗେ ଥାରେ ଭୀମ ମୃତ୍ୟୁ ହେବ ମୋର
ଭୀମ ବୋଇଲା ପ୍ରତିଜ୍ଞା ଦେଖ ଆଉର ମୋର
କେଉଁପରି ରକ୍ଷା ତୋତେ କରିବେ ଈଶ୍ୱର ।
ଏହା କହି ଭୀମ ଗଦା ପିଟନ୍ତେ ରଥରେ
ଜୟଦ୍ରଥ ରଥୁ ଡେଇଁ ପଡ଼ିଲା ଭୂମିରେ ।
ଗଦାବର ପ୍ରହାରିଲା ତହୁଁ ଭୀମସେନ
ହୟ ଅଶ୍ୱ ସାରଥି ତା ହୋଇଗଲା ଚୂର୍ଣ୍ଣ ।
ଭୀମସେନ ଡାକଇ ଏ ଜୟଦ୍ରଥ ରହ
ହର ହର ଦେଇଛନ୍ତି ଶୁଝ ମୋର ସହ ।
ପଳାଇଣ ଜୟଦ୍ରଥ ନ ରହେଁ ଲେଉଟି
ରଜାମାନଙ୍କୁ ଗୋଡ଼ାଇ ଭୀମସେନ ପିଟି ।
ମନ୍ଦର ପର୍ବତ ପ୍ରାୟ ଭୀମସେନ କାୟ
ଗଦା ଦୁଇ ହଣଇ ଯେ ତାଳବୃକ୍ଷ ପ୍ରାୟ ।
ଏକା ପ୍ରହାରକେ ଦଶ ଧ୍ୱଂଶ ରଥ ଧ୍ୱଜ
ରଣଗୋଳ କରେ ଭୀମ ରାଗେ ଗଳଗାଜ ।
ସମରରେ ଯୋଦ୍ଧାମାନେ ପଳାନ୍ତି ଡରେ
କେତେକ ଯୋଦ୍ଧା ପିଟନ୍ତି ଗଦା ଭୀମ ଉରେ
ଗଦା ପଡ଼ନ୍ତେଣ ବୀର ପାଲଟି ବାମଅଙ୍ଗ
ପଡ଼ିଣ ଗଦା ମୁଦ୍‌ଗର ହୋଇଯାନ୍ତି ଭଙ୍ଗ ।
ବଜ୍ରର ସମାନ ଅଟେ ଭୀମ ଅଙ୍ଗ ଗୋଟି
ଯୋଦ୍ଧାମାନେ ହାଣନ୍ତେଣ ଦେହରେ ନ ଫୁଟି ।
ବିକର୍ଣ୍ଣ ସଙ୍ଗରେ ହେଲା ଦୁର୍ଦ୍ଧର୍ଷ ସମର
କାଳାଗ୍ନି ପ୍ରାୟେ ହଣନ୍ତି ତହିଁ ବେନି ବୀର ।
ମୁଦ୍‌ଗର ବୁଲାଇ ବୋଲେ ବୀର ଯେ ବିକର୍ଣ୍ଣ
ରେ ଦୁର୍ଦ୍ଧର୍ଷ ଆଜ ତୋର ନେବି ଜୀବନ ।
ଗିରିବର ତେଜ ଆଶ୍ରା ବୃକ୍ଷକୁ ତୁ କଲୁ
ଆପଣାର କୁଳରେ ତୁ କାଳି ଲଗାଇଲୁ ।
ବିକର୍ଣ୍ଣ ପ୍ରତିଜ୍ଞା ଶୁଣି ବୋଲଇ ଦୁର୍ଦ୍ଧର୍ଷ
ପଡ଼ିଲୁ ସଂଗ୍ରାମେ ଆଜ ହୋଇଲୁ ନିରେଖ ।
ଏତେଦିନେ ତୁହି ଆସି ମୋ ମୁଖେ ପଡ଼ିଲୁ
ରକ୍ଷାକର୍ତ୍ତା କେହି ନାହିଁ ଅରକ୍ଷ ହୋଇଲୁ ।
ଗଦାକୁ ବୁଲାଇ ବୋଲେ ରହ ଆରେ ଭାଇ
ଆକାର୍ଷି ପ୍ରହାର କଲା ରଥ ପରେ ନେଇ ।
ବଜ୍ର ପ୍ରହାରେ ଯେସନେ ହୁଏ ଗିରିବର
ବିକର୍ଣ୍ଣର ରଥ ଭଙ୍ଗି ହେଲା ସେ ପ୍ରକାର ।
ସଞ୍ଜୟନନ୍ଦନ ପାଦଗତି କରି ଉଠି
ଦୁର୍ଦ୍ଧର୍ଷ ଉପରେ ଗଦା ଆକର୍ଷିଣ ପିଟି ।
ଦୁର୍ଦ୍ଧର୍ଷ ପରେ ପଡ଼ିଲା ଗଦାବର ବେନି
ରଣଝଣ ଶବଦରେ ଉଠିଲା ବହ୍ନି ।
ଦୁହିଙ୍କର ଗଦାବାଜ ହେଲା ମସିଗୁଣ୍ଡା
ଗରଜଇ ସମରେ ସେ କଉରବ ଷଣ୍ଢ ।
ରଣଗୋଳ କରନ୍ତି ସେ ବେନି ମାଲବନ୍ଧ
ମୁଠେ ମୁଠ ପ୍ରହାରନ୍ତି ହୋଇ ଅତି କ୍ରୋଧ ।
ରୋମେ ରୋମେ ଗଳିଣ ଯେ ବହଇ ଶୋଣିତ
ଦୁହେଁ ଏକତ୍ର ହୋଇଣ ମାଲବନ୍ଧେ ବ୍ୟସ୍ତ ।
ଯାମଳା ବୃଷ ସ୍ଥାୟେକ ନ ଯାନ୍ତି ବାରଣ
ଦୁର୍ଦ୍ଧର୍ଷକୁ ହରାଇଲା ବିକର୍ଣ୍ଣ ଯେ ଜାଣ ।
ଦୁର୍ଦ୍ଧର୍ଷ ବୀରକୁ ତଳେ ପକାଇ ବିକର୍ଣ୍ଣ
ହୃଦରେ ମାଡ଼ିବସିଲା କରିଣ ଗର୍ଜ୍ଜନ ।
ଡାହାଣେ ମୁଠ ଉଞ୍ଚାଇ ବାମେ ଧରି ଚୋଟି
ବିଦାରିବ ବକ୍ଷ ଆଜ ପଡ଼ିଲୁ ଭାଇଟି ।
ଦୁର୍ଦ୍ଧର୍ଷର ଅବସ୍ଥାକୁ ଦେଖିଣ ଶିଖଣ୍ଡୀ
ବିକର୍ଣ୍ଣ ଉପରେ ନେଇ ପ୍ରହାର ଭୁଷଣ୍ଡୀ ।
ନିଘାତ ଶବଦ ଜାଣି ଶିରରେ ବାଜିଲା
ଧାଏଁଣ ବିକର୍ଣ୍ଣ ବୀର ଢଳିଣ ପଡ଼ିଲା ।
ତହୁଁ ଉଠିଣ ଦୁର୍ଦ୍ଧର୍ଷ ସମରେ ଗର୍ଜ୍ଜିଲା
ଧାଇଁ ଯାଇଣ କୁମାର କୃପାଣ ଧଇଲା ।
ବିକର୍ଣ୍ଣ ଉପରେ ନେଇ ପିଟିଲା ବହନ
ବେନିଖଣ୍ଡ ହୋଇ ପଡ଼ିଗଲା ଯେ ବିକର୍ଣ୍ଣ ।
ବିକର୍ଣ୍ଣର ହତ ଦେଖି ଦ୍ରୁପଦ ନନ୍ଦନ
ଜୟଶଙ୍ଖ ଧ୍ୱନି କଲେ ଯେ ଧୃଷ୍ଟଦ୍ୟୁମ୍ନ ।

ଅଗସ୍ତି ବୋଇଲେ ଶୁଣ ବୈବସ୍ୱତ ମନୁ
ତ୍ରିଗର୍ତ୍ତର ତୁଲେ ଯୁଦ୍ଧ କରେ ଅଭିମନ୍ୟୁ ।
ସମରେ ଅନବାର ସେ ପଣ୍ଡୁ ରାଜା ନାତି
ଏକାକୀ ସମରେ ସେହି ଲକ୍ଷେବଳ ମନ୍ଥି ।
ତିନିସହସ୍ର ରଥୀ ସେହୁ ନାଶକଲ ହେଳେ
ଦ୍ୱିତୀ ଅର୍ଜ୍ଜୁନ ପ୍ରାୟେକ ଦିଶେ ରଣଗୋଳେ ।
ମନ୍ଦର କଣ୍ଡିଲ ଯେହ୍ନେ ସମୁଦ୍ର ମନ୍ଥନ
ତେହ୍ନେ କୁରୁସୈନ୍ୟ ମନ୍ଥେ ବିରାଟ ନନ୍ଦନ ।
କାଶୀରାଜା ତୁଲେ ତାର ସମର ବହୁତ
ନଦୀଘ ବାଣ ବହଇ ବୀରବର ଶ୍ୱେତ ।
ସହସ୍ରେକ ରଥୀ ସେହୁ ମାଇଲା ସମରେ
ଗଜ ଯୋଦ୍ଧା ଦୁଇସହସ୍ର ପଡ଼ିଲେ ସେଠାରେ ।
ତିନିସହସ୍ର ଅଶ୍ୱଯୋଦ୍ଧା ମାଇଲେକ ରଣେ
ଅକଳନ୍ତ ସାଗରକୁ ମନ୍ଥେ ଏକା ଜଣେ ।
ଅସ୍ତ୍ର ଶସ୍ତ୍ର ନାରାଚ ଯେ ବିନ୍ଧେ ଗଳଗାଜି
ଦେଖିଣ କାଶୀଈଶ୍ୱର ପଳାଇଲା ଭାଜି ।
ରାଜାର ଅଭାବେ ସୈନ୍ୟ ପଳାଇଲେ ଛାଡ଼ି
ବହୁଶର ବିନ୍ଧେ ଶ୍ୱେତ କରି ଘୋର ରଡ଼ି ।
ପାଞ୍ଚସହସ୍ର ରଥୀ ଯେ ଦୁଇସହସ୍ର ଯୋଧୀ
ଏକମୁଖୀ ହୋଇ ବୀର ତହିଁ ଶର ବିନ୍ଧି ।
ଏତେକ ସୈନ୍ୟ ମାଇଲା ସେହି ଏକାଜଣେ
କନାଉଜ ଦେଶ ରାଜା ପଡ଼ିଲେକ ରଣେ ।
ସାଧୁ ସାଧୁ ବୀର ତୁହି ବିରାଟ ନନ୍ଦନ
ତୋହର ମହିମା ଅଟେ ସଂସାରରେ ଧନ୍ୟ ।
ପ୍ରତ୍ୟକ୍ଷରେ କାର୍ତ୍ତିକେୟ ପରାୟେ ସେ ଦିଶି
ସାଧୁ ସାଧୁ ବୋଲି ଦୁଇଦଳରେ ପ୍ରଶଂସି ।
ଭୀଷ୍ମ ଅର୍ଜ୍ଜୁନ ସମର ହୁଏ ଘୋରତର
ଜ୍ୱଳାବଳି ବାଣଙ୍କରେ ଦିଶେ ଅନ୍ଧକାର ।
ଭୀଷ୍ମଙ୍କ ଯୁଦ୍ଧ କହିବା ଶକ୍ତି ଅଛି କାହିଁ
ଷଣ୍ଢୀହୋଇ ତାଙ୍କ ଆଗେ ରହିବ କେ ଯାଇ
କାମଦେବ ବୋଲିକରି କାଉଁଖର ରାଜା
ଶାର୍ଦ୍ଦୂଳ ବାହନ ତାର ଅଟେ ମହାତେଜା ।
ହାତକରେ କୁନ୍ତ ଆର ହାତକରେ କାତି
ଅନଙ୍ଗାବତାର ପ୍ରାୟେ ଦିଶେ ତାର ଜ୍ୟୋତି
ଭୀଷ୍ମ ଅର୍ଜ୍ଜୁନ ଦୁହିଙ୍କ ରଣ ମଧ୍ୟସ୍ଥାନେ
ଭୀଷ୍ମଙ୍କ ଅଗ୍ରତେ ଆସି ଓଗାଳେ ବହନେ ।

ଭୀଷ୍ମ ବୋଇଲେ ତୁ କପାଁ ଆସୁ ମୋ ଆଗରେ
ଅର୍ଜ୍ଜୁନ ବ୍ୟତୀତ ଯୁଦ୍ଧ ନ କରେ କାହାରେ ।
ଶୁଣ ହେ ଗାଙ୍ଗେୟ ବୋଲେ ରଜା କାମପାଳ
ଦଣ୍ଡେକ ମାତ୍ର ରହିଣ ମୋ ରଣ ସମ୍ଭାଳ ।
ଏହା ଶୁଣିକରି ଭୀଷ୍ମ ହେଲେ କୋପଅଗ୍ନି
ରୁଦ୍ରାଗ୍ନି ପ୍ରାୟେକ ଶର ପେଷିଲେ ସେ ତିନି
କାମପାଳ ଆରୋହଣ ଥିଲେକ ଶାର୍ଦ୍ଦୂଳ
ଭୀଷ୍ମଙ୍କ ଶର ପଡ଼ିଲା ଯାଇ ବକ୍ଷସ୍ଥଳ ।
ବକ୍ଷସ୍ଥଳେ ପଡ଼ି ଶର କଲା ବେନିଖଣ୍ଡ
କନ୍ଧୁ ଛୁଡ଼ି ତଳେ ତାର ନ ପଡ଼ିଲା ମୁଣ୍ଡ ।
କନ୍ଧର ଉପରେ ତାର ରହିଅଛି ଶିର
ସେ ମୁଣ୍ଡ ବୁଲଇ ଯେହ୍ନେ ଚଣ୍ଡ କୁସଳର ।
ଅଧରରେ ଦନ୍ତଚାପି ତରଟିଣ ତେଳା
ନାଚଇ କବନ୍ଧ ତହିଁ ହୋଇ କୁତୁହଳା ।
ଭୀଷ୍ମାର୍ଜ୍ଜୁନ ଏହା ଦେଖି ଆଶ୍ଚର୍ଯ୍ୟ ହୋଇଲେ
କୁତୂହଳେ ସେହି ଶର ବିନ୍ଧି ନ ପାରିଲେ ।
ଅଗସ୍ତିଙ୍କୁ ପୁଚ୍ଛା କଲେ ବୈବସ୍ୱତ ମନୁ
ଶରେ ଛେଦିଲେ କପାଁ ନ ପଡ଼େ ତାର ତନୁ
କେବଣ ମହାତ୍ମା ସେହି ଥିଲଟି ପୂର୍ବରେ
କବନ୍ଧ ହୋଇ ନାଚଇ ଏ ରଣ ମଧ୍ୟରେ ।
ଶୁଣ ଆହେ ମହାରାଜା ବଦନ୍ତି ଅଗସ୍ତି
ସତ୍ୟଯୁଗେ ବିଶ୍ୱାବସୁ ନାମେଣ ନୃପତି ।
ବିଶ୍ୱାବସୁ ପୁତ୍ର ଦକ୍ଷ ମାରକଣ୍ଡ ବୋଲି
ଦିଗବିଜେ କରେ ଯେନ ଦକ୍ଷକରେ ଛୁଟି ।
କାର୍ତ୍ତିକର କୃଷ୍ଣପକ୍ଷ ଅମାବାସ୍ୟା ଦିନ
ତଣ୍ଡ୍ରିତ ବାର ନକ୍ଷତ୍ର ସ୍ୱାତୀ ବିଦ୍ୟମାନ ।
ସେହିପରି ବିଶ୍ୱାବସୁ ପୁତ୍ରକୁ ହକାରି
ବୋଲେ ବାବୁ ଏକଗଣ୍ଡା ଖୋଜିଆଣ ମାରି ।
କାମ୍ୟଶ୍ରାଦ୍ଧ କରିବାହିଁ ପିତୃକାର୍ଯ୍ୟ ଆଜ
ପିତାଠାରୁ ଆଜ୍ଞାପାଇ ଚଳଇ ଆତ୍ମଜ ।
ଅଶ୍ୱେକ ଆରୋହି କରେ ଧରି ଶରକାଣ୍ଡ
ବନସ୍ତରେ ଭ୍ରମଇ ସେ ଦକ୍ଷ ମାରକଣ୍ଡ ।
ଅନେକ ବନସ୍ତ ଗିରି କନ୍ଦର ଖୋଜିଲା
ବୁଲି ବୁଲି କାହିଁ ଗଣ୍ଡାଜୀବ ନ ପାଇଲା ।
ନିଶି ଉପବାସେ ସେହି ବୁଲନ୍ତେଣ ଶ୍ରମେ
ଯାନ୍ତେଣ ଦେଖିଲା ସେହୁ ଏକଇ ଆଶ୍ରମେ ।

ବାଳଖିଲ୍ୟ ବଂଶେ କୃପାଜଳ ମହାଋଷି
କହୁଥାନ୍ତି ଗଣ୍ଡାଟିଏ ଚନ୍ତ୍ର ସେହି ପୋଷି ।
ଋଷି ଯାଇଥାନ୍ତି ସନ୍ଧ୍ୟା କରିବା ନିମନ୍ତେ
ଗଣ୍ଡା ଚରୁଥିଲା ଭାରସୁର ପରବତେ ।
ଦେଖିଣ ଧାଇଁଲା ମାରକଣ୍ଡ ଭାରମଣି
ଗୋଡ଼ାଇ ଗୋଡ଼ାଇ ତାକୁ ପକାଇଲା ହାଣି
ଖଡ଼ଗ ପ୍ରହାରେ ଗଣ୍ଡା ହେଲା ବେନଖଣ୍ଡ
ଧନୁରେ ଭର କରିଣ ଆରେଇ ମାର୍କଣ୍ଡ ।
କୃପାଜଳ ସନ୍ଧ୍ୟା ସାରି ଲେଉଟି ଆସିଣ
ଦେଖିଲେ ଗଣ୍ଡାଟି ଭାର ଦୋନଯାଏ ପୁଣ ।
କୃପଜଳ ବୋଇଲେ ଏ ଆମ୍ଭର ଗଣ୍ଡାଟି
କପାଁରେ ଦୁଷ୍ଟ ହାଣିଲୁ ଏହାର ମୁଣ୍ଡଟି
ହତ୍ୟାଧର ହୋଇ ତୁହି ବଡ଼ ମନ୍ଦ ଅଟୁ
ଭରତ ଯୁଦ୍ଧରେ ଭୀଷ୍ମ ତୋର ମୁଣ୍ଡ କାଟୁ
ଭୀଷ୍ମ ଅରଜୁନ ହେନ ଯୁଦ୍ଧଭୂମି ମଧ
ଖେଚର ଭୂଚର ହୋଇ ନାଚବୁ କବନ୍ଧ ।
ମୋହର ଶାପ ତୋତେରେ ଫଳବ ପ୍ରତ୍ୟକ୍ଷ
ପୁଣି ଗଣ୍ଡାଭାର ଥୋଇ ବିଶ୍ୱାବସୁ ବକ୍ଷ ।
ବିନୟହୋଇଣ ତହୁଁ ମାର୍କଣ୍ଡ କହଇ
ଏ ଶାପରୁ କି ପ୍ରକାରେ ମୁକ୍ତ ହେବି ମୁହିଁ ।
ତା ଶୁଣି ବୋଇଲେ କୃପାଜଳ ମହାଋଷି
ଗଣ୍ଡା ଗୋଟି ନେଇ ତୋର ବାପକୁ ଦିଅସି ।
ପିତୃଲୋକଙ୍କୁ ତୋଷୁ ସେ ଅମାବାସ୍ୟା ଶ୍ରାଦ୍ଧେ
ତୁହି ମୁକ୍ତ ହେବୁ ମହାଭାରତର ଯୁଦ୍ଧେ ।
ଶତେବାର ଏହି ଯୁଦ୍ଧ ସରିବା ପର୍ଯ୍ୟନ୍ତେ
ଭୀଷ୍ମ ଶିର ଛେଦି ଦଣ୍ଡ ଦେଉଥିବେ ତୋତେ
ମୁକ୍ତି ହେବୁ ଶତେବାର ଶିରଚ୍ଛେଦ ହେଲେ
ବିଶ୍ୱାବସୁ ଦରଶନ ପାଇବୁ କୁ ଭଲେ ।
ଶୁଣି ମାରକଣ୍ଡ ଗଣ୍ଡା ଘେନି ଚଳିଗଲା
ପିତାଙ୍କ ଅଗ୍ରତେ ଯାଇ ସମସ୍ତ କହିଲା ।
ବନକନ୍ଦରରେ ଦେବ ଗଣ୍ଡା ନ ପାଇଲା
କୃପାଜଳଙ୍କର ଗଣ୍ଡା ନ ଜାଣି ମାଇଲା ।
କୋପେ ମୋତେ ଶାପଦେଲେ କୃପାଜଳଋଷି
ମଧ୍ୟସ୍ୱର୍ଗେ ଜାତହୁଅ ହୋଇଣ ମାନୁଷି ।
ଭରତ ଯୁଦ୍ଧେପଡିବୁ ତୁହି ଅନମିଷେ
କବନ୍ଧରୂପେ ନାଚବୁ ଭୀଷ୍ମ ଶରଘାତେ ।

ସେ ଯୁଦ୍ଧେ ଶିରଚ୍ଛେଦନ ହେବ ଶତଘାନ୍ତ
ତେବେ ସେ ଆସିବୁ ତୁହି ସ୍ୱର୍ଗ ଦ୍ୱାରସ୍ଥ ।
କୃଷ୍ଣାଜଳ ଋଷିଙ୍କର ଶାପ ଅଟୁ ପୂର୍ବ
ସେହୁ ମାରକଣ୍ଡ ଦକ୍ଷ କାମପାଳ ଏବେ ।
ଭୀଷ୍ମଙ୍କ ନାରଚେ ସେହି ମୁକତ ପାଇଲା
ସ୍ୱର୍ଗପୁରେ ଯାଇ ବିଶ୍ୱାବସୁଙ୍କୁ ଭେଟିଲା ।
ସୁଜ୍ଞଜନମାନେ ଏହା ହୃଦୟରେ ଭାବ
ଶ୍ରୀମହାଭାରତ ଏହୁ ସମରେ ଦୁର୍ଲ୍ଲଭ ।
କବନ୍ଧ ତଳେ ପଡ଼ିଣ ଗଡ଼େ ଯେତେବେଳେ
ଚହିଁଥିବା ସୈନ୍ୟ ସର୍ବେ ଆଶ୍ଚର୍ଯ୍ୟ ଗୁହିଁଲେ ।
ଧନୁର୍ଧର ବନ୍ଦୁଥିଲେ ବୀର ଧନଞ୍ଜୟେ
କବନ୍ଧ ନାଚନ୍ତେ ପାର୍ଥ ଚହିଁକ ଅନାଏ ।
ଏତକ ଛିଦ୍ର ପାଇଣ ଭୀଷ୍ମ ମହାରଥୀ
ଦଶସହସ୍ର ଯୋଦ୍ଧାମାରି ପଶ୍ଚିମ ମୂରତି ।
ରଥୀ ମହାରଥୀ ହସ୍ତୀ ଯୋଦ୍ଧା ଆଦି ଲୋଟି
ଯୁଦ୍ଧଭୂମିରେ ରକତ କର୍ଦ୍ଦମ ଯେ ଉଠି ।
ଜୟ ଶଙ୍ଖ ବାଇ ଭୀଷ୍ମ ହେଲେ ପୃଷ୍ଠଗତ
ଅର୍ଜ୍ଜୁନ ପୁଚ୍ଛିଲେ ଶୁଣ ଦେବ ଶିଖପତ ।
ଭୀଷ୍ମଦେବ ଯୁଦ୍ଧ ତ୍ୟାଗକଲେ କାହିଁପାଇଁ
ଗୋବିନ୍ଦ ବୋଇଲେ ବୀର ପାର୍ଥ ଶୁଣ ତୁହି ।
ମହାରଥୀ ଭୀଷ୍ମ ତୋର ଦଶସହସ୍ର ରଥୀ
ମାରିତଳେ ଲେଉଟାଇଲେ ଦେଖ ଦେଇ ଦୃଷ୍ଟି
ରଥର ବାମ ଡାହାଣେ ଦେଖ ବୀର ପାର୍ଥ
ପଦାତି ସହ ପଡ଼ିଲେ ଦଶସହସ୍ର ରଥ ।
ବୃଂସହସ୍ର ଗଜ ଯୋଦ୍ଧା ରଥୀ ସହସ୍ର ତିନି
ପଦାତି ଯେ ଦଶସହସ୍ର ଅୟୁତେ ସଇନ
ଦେଖି ସ୍ତମ୍ଭୀଭୂତ ହେଲା ବୀର ଧନଞ୍ଜୟ
ତିନି ଭୁବନେ ପାଇଲା ଲଜ୍ଜା ଅତିଶୟ ।
ମୁହିଁ ମରାଇଲି ବନ୍ଧୁ ସୋଦର ସମସ୍ତ
ଆବର ଜୀବନ ମୋର କିସ ପୁରୁଷାର୍ଥ ।
ନିର୍ଲ୍ଲଜ ହୃଦୟ କପାଁ ଯାଉନାହିଁ ଫାଟି
ଲଲାଟେ କର ମାରିଣ କାନ୍ଦଇ କିରୀଟୀ ।
ତୁହି ଜୀବନର ନାଥ ଜଗନ୍ନାଥଙ୍କର
ନିରେଖ ହୋଇଲା ମୁହିଁ ଦେଖନ୍ତେ ତୋହର
ଧରି ରଣ ଜୟକରି ଗଲେ କଉରବେ
ହସ୍ତିନାରେ ପଶିଲେ ସେ ବଡ଼ଇ ସମ୍ଭବେ ।

ଗୋବିନ୍ଦ ବୋଇଲେ ତୁ ନ କାନ୍ଦ ଫାଲଗୁନ
ଦେଖ ଆରେ ଧନଞ୍ଜୟ କୌରବ ସଇନ ।
ତୁମ୍ଭ ଜଣେ ସିନା ତାଙ୍କୁ ନ ପାରିଲୁ ରଣେ
ଭୀଷ୍ମ ମହାରଥୀଙ୍କର ସେନାପତିପଣେ ।
ଅଭିମନ୍ୟୁ ଶିଖଣ୍ଡୀ ସେ ଶ୍ୱେତ ଧୃଷ୍ଟଦ୍ୟୁମ୍ନ
ଏମାନେ ମାଇଲେ କେତେ ବହୁତର ସୈନ୍ୟ
ଦେଖ ହେ ଅର୍ଜୁନ ବୋଲି ଗୋବିନ୍ଦ ବୋଇଲେ
ମରିଥିବା କୁରୁସୈନ୍ୟ ଦେଖାଇଣ ଦେଲେ ।
ତାନେକ ଉପସର୍ଗେ ପଡ଼ିଅଛନ୍ତି ସଇନ
ତାହା ଦେଖି ଆନନ୍ଦିତ ହୋଇଲେ ଫାଲ୍‌ଗୁନ
ଦେବଦତ୍ତ ଶଙ୍ଖଶବ୍ଦ କଲେ ଦେବ ହରି
ହରଷେ ଚଳିଲେ ସୈନ୍ୟ ଇନ୍ଦ୍ରପ୍ରସ୍ଥ ପୁଣି ।
ସ୍ନାନ ଦେବାର୍ଚ୍ଚନ ଆଦି କଲେ ଯୋଦ୍ଧାମାନେ
ଅନେକ ଉତ୍ସବ ହେଲା ହସ୍ତିନା ଭୁବନେ ।
ଭୀଷ୍ମେ ପ୍ରଶଂସା କରଇ ରାଜା କୁରୁନାଥ
ଧନ୍ୟ ଧନ୍ୟ ଭୀଷ୍ମଦେବ ଶାନ୍ତନୁଙ୍କ ସୁତ ।
ମୋଠାରେ ଅଛୁ ଯଦ୍ୟପି ଏତେକ ସଦୟ
ତୁମ୍ଭର ପ୍ରସାଦେ ମୋର ଯିବ ସର୍ବଭୟ ।
ଦିନକରେ ବିନାଶିଲ ଦଶସହସ୍ର ରଥୀ
ଦଶଦିନ ଯୁଦ୍ଧକଲେ ପାଣ୍ଡବେ କି ବର୍ତ୍ତି ।
କୃଷ୍ଣ କଥାରେ ପାଣ୍ଡବେ କଲେ ପ୍ରତିଆଶା
ପାଣ୍ଡବେ ମରିବେ ନାହିଁ କୃଷ୍ଣର ଭରସା
ଏପରି ଭୀଷ୍ମେ ପ୍ରଶଂସା କରେ କୁରୁରାୟ
ଏବେ ଆସି ହୋଇଲାକ ସମ୍ପଦ ସମୟ ।
ଏକାଳେ ସଞ୍ଜୟେ ପୁଚ୍ଛେ ଅନ୍ଧ ନରନାଥ
ଭୀଷ୍ମଙ୍କର ପ୍ରଶଂସା କି ଶୁଭୁଛି ବହୁତ ।
ସଞ୍ଜୟ ବୋଇଲେ ତୁମ୍ଭେ ଶୁଣ ଧୃତରାଷ୍ଟ୍ର
ଏଣିକି ଘଟିବ ରାଜା ତୋତେ ବଡ଼ କଷ୍ଟ ।
ଦୁଇକ୍ଷୌଣୀ ଯୋଦ୍ଧା ମଲେ ଦୁଇଦିନ ରଣେ
ଭୀଷ୍ମଙ୍କୁ ପ୍ରଶଂସା ରାଜା କରୁଛନ୍ତି ଏଣେ ।
ତୋର ପୁତ୍ର ଦୁର୍ଦ୍ଧକ୍ଷ ଯେ ପଶିଲ ଶରଣେ
ନ ସହସ୍ର ଯୋଦ୍ଧା ମାଇଲା ସେହି ଏକଦିନେ ।
ଦ୍ରୁପଦସୁତ ଶିଖଣ୍ଡୀ ଅଟେ ମହାରଥୀ
ପାଞ୍ଚସହସ୍ର ଯୋଦ୍ଧା ସେହି ମାରେ ଏକ ଘାନ୍ତ
ଶ୍ୱେତକୁମର ବୋଲିଣ ବିରାଟର ବାଳ
ବାରସହସ୍ର ମାଇଲେ ସେ ରଥୀ ଏକାବେଳ ।

ସମରେ ପଶିଲା ଯାଇ ସେ ଧୃଷ୍ଟଦ୍ୟୁମ୍ନ
ତେରସହସ୍ର ରଥୀଙ୍କୁ ସେ କରିଲା ନିଧନ ।
ପାର୍ଥର ପୁତ୍ର ଅଟଇ ନାମ ଅଭିମନ୍ୟୁ
ଆଠସହସ୍ର ନାଶିଲା ସେ ହୋଇ ବାଳସୁନୁ ।
ଘଟୋତ୍କଚ ନାମରେ ହିଡ଼ିମ୍ବୀ ନନ୍ଦନ
ଏକଦିନ ମାଇଲା ସେ ଅଇବ୍ରତେ ସୈନ୍ୟ ।
ଅସଂଖ୍ୟ ଯୋଦ୍ଧା ପଡ଼ିଲେ କଳନା ନୁହଇ
କେ କେତେ ପଡ଼ିଅଛନ୍ତି ସଂଖ୍ୟା ଯେ ନାହିଁ
କହିତ ନୁହଇ ସ୍ୱାମୀ ଭୀମର ମହିମା
କୋଡ଼ିଏ ସହସ୍ର ଯୋଦ୍ଧା ମାଇଲାଟି ଭୀମା ।
ସଞ୍ଜୟ ମୁଖରୁ ରାଜା ଏହି ବାକ୍ୟ ଶୁଣି
ହରଷ ଛାଡ଼ି ତରସ୍ତେ ମନମଧ୍ୟେ ଗୁଣି ।
କାନ୍ଦଇ ରାଜନ ଶିରେ କରତାଡ଼ି ପୁଣି
ସଞ୍ଜୟ ବହୁ ପ୍ରବୋଧ କରେ ନୃପମଣି ।
ଏସନକ ସମୟରେ ହୋଇଲା ପ୍ରଭାତ
ଯେ ଯାହାର ସମୟରେ ହେଲେ ସର୍ବେ ରତ
ଶର ସନ୍ଧାନ ଉଦ୍‌ଯୋଗ ପାହିଗଲା ରାତ
ସ୍ନାନ ଆଦି ଶେଷକଲେ ଗଙ୍ଗାଙ୍କ ସନ୍ତତ ।
ଦଣ୍ଡ ସାଜ ଦଣ୍ଡ ସାଜ ଶୁଭିଲା ଚହଳ
ରଥ ଗଜ ଅଶ୍ୱ ସଜ କଲେ ସୈନ୍ୟବଳ ।
ବାଜଇ ଟମକ ଭେରୀ ଉଡ଼ଇ ନିଶାଣ
ମର୍ଦ୍ଦଳ ମହୁରୀ ଆଦି ବୀର ବାଦ୍ୟମାନ ।
ଉହାଡ଼ନ୍ତି ଛତ୍ରମାନ ଉଡ଼ାନ୍ତି ଆଲମ୍ବେ
ତର୍ଜ୍ଜନ୍ତି ଗର୍ଜ୍ଜନ୍ତି ବୀରେ ସିବାରେ ସମ୍ଭବେ ।
ବହୁ ଅଳଙ୍କାର ଘେନ ମାନଚକ୍ରବର୍ତ୍ତୀ
ବିଜେ କଲେ ସମ୍ମୁଖରେ ଭୀଷ୍ମଙ୍କର କତି ।
ବହୁରତ୍ନେ ଭୂଷଣ ଯେ କଲେ ଭୀଷ୍ମକାୟେ
ଭୀଷ୍ମ ଦିଶିଲେ ତ୍ରିପୁର ଅନ୍ତକର ପ୍ରାୟେ ।
ଭୀଷ୍ମଙ୍କର ରୂପ କାଳ ଅନଳ ସମାନ
ଭୟେ ବୁଜ ହୋଇଗଲା ସୈନ୍ୟଙ୍କ ନୟନ ।
ଶ୍ରୀଭୁଜେ ଧଇଲେ ସହସ୍ରବଳର କୋଦଣ୍ଡ
ଗୁଣଘୋଷ କରନ୍ତେ ଯେ କମ୍ପିଲା ବ୍ରହ୍ମାଣ୍ଡ ।
ଜୟ ଶଙ୍ଖ ଶବ୍ଦକଲେ ଭୀଷ୍ମ ମହାରଥୀ
ପୌଷ କୃଷ୍ଣ ଶନିବାର ପ୍ରତିପଦା ତିଥି ।
ମୃଗଶିରା ନକ୍ଷତ୍ର ଯେ ଶୁଭଲଗ୍ନ ବେଳ
ପରମ ଆନନ୍ଦେ ଭୀଷ୍ମ ଯୁଦ୍ଧେ ଅନୁକୂଳ ।

ଏଥୁଅନନ୍ତରେ ଶୁଣ ପାଣ୍ଡବଙ୍କ କଥା
ବିଷାଦ ଯୁଧିଷ୍ଠି ଦେଖି ସମର ବ୍ୟବସ୍ଥା ।
ପାଣ୍ଡବଙ୍କ ବଳମାନେ ଭାବନ୍ତି ବିଷାଦେ
ଭୀଷ୍ମଙ୍କ ଆଗେ ସମର୍ଥ ଅଛୁ କେଉଁ ହାଦେ ।
ବିରାଟର ନନ୍ଦନ ଯେ ଶ୍ୱେତ ମହାରଥୀ
ଯୁଧିଷ୍ଠିଙ୍କ ପଦ୍ମପାଦେ ପ୍ରଣମେ ଚଳିତ ।
ସ୍ୱାମୀ ଆଜ ସେନାପତି କର ଯେ ଆମ୍ଭଙ୍କୁ
କୁରୁବଳ ଜିଣିବି ମୁଁ ମାରିବି ଭୀଷ୍ମଙ୍କୁ ।
ଧୃତରାଷ୍ଟ୍ର ପଚାରିଲେ ଶୁଣ ହେ ସଞ୍ଜୟ
ଆଜର ଯୁଦ୍ଧେ ହୋଇବ କେବଣ ଉପାୟ ।
ତୁ ମୋହର ମନ୍ତ୍ରୀ ଭୂତ ଭବିଷ୍ୟତ ଜ୍ଞାତା
ଗତ ଆଗତ କହିବା ତୁମ୍ଭ ସମରଥା ।
ଜୟ କି ଅଜୟ ହେବ ଆଜର ସମର
ଏହା ଶୁଣିବାକୁ ଇଚ୍ଛା ହେଉଛି ମୋହର ।
ଧୃତରାଷ୍ଟ୍ର ବାକ୍ୟ ଶୁଣି କହନ୍ତି ସଞ୍ଜୟ
ଶୁଣ ଏବେ ସାବଧାନେ ଅମ୍ବିକା ତନୟ ।
ତୋହର ଆଗରେ ମୁହିଁ ଯାହା ବଖାଣିଲି
ଗତ ଯୁଦ୍ଧର ବାରତା ଥୋକାଏ କହିଲି ।
ଶ୍ୱେତକୁମାର ବୋଲଣ ବିରାଟ କୁମର
ସେନାପତି ହୋଇବ ସେ ଆଜର ସମର ।
ବହୁଯୁଦ୍ଧ ହେବ ଆଜ ଶୁଣ ଧୃତରାଷ୍ଟ୍ର
ବହୁ ଅପଚୟ ଜାଣ ହେବ ତୋର ଥାଟ ।
ମଘଦେଶର ରାଜା ସେ ନାମ ବୀରବାହୁ
ତିନସହସ୍ର ସୈନ୍ୟ କୁଳେ ପଡ଼ିବେଟି ସେହୁ ।
ଅରବିନ୍ଦ ଦେଶ ରାଜା ଅଟେ ମାନଭଙ୍ଗ
ପଡ଼ିବ ନ ଲକ୍ଷ ଯୋଦ୍ଧା କୁଳେ ରଣରଙ୍ଗ ।
କଳିଙ୍ଗ ଦେଶର ରାଜା ନାମ ବଜ୍ରକେତୁ
ପାଞ୍ଚକୋଟି ଯୋଦ୍ଧା ସହ ହେବ ତାର ମୃତ୍ୟୁ ।
ବିମଳାକ୍ଷ ଦେଶ ରାଜ ମଙ୍ଗଳନନ୍ଦିମି
ପାଞ୍ଚଲକ୍ଷ ଯୋଦ୍ଧା କୁଳେ ପଡ଼ିବ ସେ ଭୂମି ।
କନାଉଜ ଦେଶ ରାଜା ନାମ ଚନ୍ଦ୍ରଧ୍ୱଜ
ତିନସହସ୍ର ଯୋଦ୍ଧା କୁଳେ ପଡ଼ିବ ସେ ରାଜ ।
କାଞ୍ଚନ ଦେଶର ରାଜା ନାମ ଇନ୍ଦ୍ରଧ୍ୱଜ
ନବସହସ୍ର ଯୋଦ୍ଧା କୁଳେ ପଡ଼ିବ ସେ ଆଜ ।
ମନ୍ଦର ଦେଶର ରାଜା ନାମ ବିରୂପାକ୍ଷ
ତାହାର କୁଳେ ପଡ଼ିବେ ସଇନ ଯେ ଲକ୍ଷ ।

ଏମାନଙ୍କ କୁଳେ ଯୋଦ୍ଧା ଅନେକ ଅଛନ୍ତି
ଅସଂଖ୍ୟ ପଡ଼ିବେ ତହିଁ ସୈନ୍ୟ ଅଶ୍ୱ ହାତୀ ।
ପଞ୍ଚଦଣ୍ଡ ଘଡ଼ିଯାଏ ହୋଇବ ସମର
ତୋର ସୈନ୍ୟ ଜାଣ ଏତେ ହେବ ଅପହାର
ତୁମ୍ଭ ଯାହା ପଚାରିଲୁ କହିଲି ମୁଁ ତାହା
ଏପରି ସମର ଆଜ ହେବ ନରନାହା ।
ଶୁଣ ଆହେ ତଇତନ ସଞ୍ଜୟ ମହିମା
ସତ୍ୟଯୁଗରେ ଶୁଦ୍ରକ ନାମରେ ସେ ବ୍ରହ୍ମା ।
ଧୃତରାଷ୍ଟ୍ରକୁ ସଞ୍ଜୟ ଅଟେ ଦିବ୍ୟଚକ୍ଷୁ
ଗତ ଆଗତ ବାରତା ଜାଣଇ ପ୍ରତ୍ୟକ୍ଷୁ ।
ତେଣୁ ଧୃତରାଷ୍ଟ୍ର ତାକୁ ସକଳ ପୁଚ୍ଛନ୍ତି
ସମସ୍ତ ବିଷୟ ତାଙ୍କୁ ସଞ୍ଜୟ କହନ୍ତି ।
ଗାଲବ୍ୟନନ୍ଦନ ଭୂତ ଭବିଷ୍ୟତଜ୍ଞାତା
ତେଣୁ ବଖାଣଇ ଗତ ଆଗତ ବାରତା ।
ଶ୍ୱେତର ମହିମା ଯହୁଁ ଯୁଧିଷ୍ଠି ଶୁଣିଲେ
ସେଦିନ ଯୁଦ୍ଧରେ ତାକୁ ସେନାପତି କଲେ ।
ଅଷ୍ଟରତ୍ନ ଅଳଙ୍କାରେ କଲେ ବିଭୂଷଣ
ଶିରରେ ରତ୍ନ ମୁକୁଟ ବାନ୍ଧିଲେ ବହନ ।
ଶ୍ରୀକୃଷ୍ଣ ଯେପରି ପାରିଜାତ ହରଣରେ
ତେସନକ ଦିଶେ ଶ୍ୱେତ ଏ ରଣ-ଭୂମିରେ
ତହୁଁ ଅର୍ଜ୍ଜୁନ ବୋଇଲେ ଯୁଧିଷ୍ଠିଙ୍କୁ ଚାହିଁ
ଯାଙ୍କୁ ସେନାପତି କଲେ କିଛି ହେବ ନାହିଁ ।
ଗୋବିନ୍ଦ ବୋଇଲେ ତୁମ୍ଭ ଶୁଣ ଫାଲ୍‌ଗୁନ
ଅନେକ ଧ୍ୱଂସିଲ କାଲି କୌରବ ସଇନ ।
ଏହୁ ଯେବେ ହୋଇଥାନ୍ତା କାଲି ସେନାପତି
କୌରବ ସଇନ ଆଉ ନ ଥାନ୍ତେ ବରତି ।
ଆପଣେ ରଥୁ ଓହ୍ଲାଇ ଦେବ ଜଗନ୍ନାଥ
ମୁକୁଟ ବାନ୍ଧିଲେ ନେଇ ଶ୍ୱେତବୀର ମାଥ ।
ଶ୍ୱେତକୁ ବହୁ ପ୍ରଶଂସା କରି ଏହିପରି
ଜୟଶଙ୍ଖ ବଜାଇଲେ ଦେବ ନରହରି ।
ବହୁତ ସାନନ୍ଦ ହେଲେ ରାଜା ଯୁଧିଷ୍ଠିର
ଦେବଗଣେ ପୁଷ୍ପବୃଷ୍ଟି କଲେକ ଅପାର ।
ଶ୍ୱେତ ପ୍ରଣମିତ ହୋଇ କୃଷ୍ଣଙ୍କ ପଦ୍ମରେ
ବୋଲେ କୌରବ ଜିଣିବି ତୁମ୍ଭ ପ୍ରସାଦରେ ।
ଭୀଷ୍ମ ଦ୍ରୋଣଙ୍କ ସମ୍ମୁଖେ କରିବି ମୁଁ ରଣ
ଉତ୍ତମ ସାରଥି ମୋତେ ଦିଅ ଏକଜଣ ।

ଗୋବିନ୍ଦଙ୍କ ନିକଟରେ ଥିଲେକ ସାତ୍ୟକି
ବୋଇଲେ ସାରଥି ହୁଅ ଶ୍ୱେତର ତହିଁକି ।
ବାଳୁ ବାଉଳା ଯୋଦ୍ଧା ଏ ନ ଜାଣେ ସମର
ଲୁଟି ଶୁଟି କରି ରଥ ବାହିବୁ ଏହାର ।
ଶ୍ରୀକୃଷ୍ଣଙ୍କ ଆଜ୍ଞାପାଇ ବୋଲଇ ମାଧବ
ମୁହିଁ ଯେବେ ଶ୍ୱେତ ରଥେ ସାରଥି ହୋଇବ ।
ମୋହର ଆଗରେ ସେହି କରୁ ସତ୍ୟବ୍ରତ
ସଂଗ୍ରାମରେ ନ ଜିଣିଲେ ନ ଫେରେ ମୋ ରଥ
ଶୁଣିଣ ସାନନ୍ଦ ହେଲା ସୁଦେଷ୍ଣାର ବଳା
ସାତ୍ୟକି କଣ୍ଠରେ ଦେଇ ରତନର ମାଳା ।
ମୋର ସଦୃଶ ସାରଥି ପାଇଲି ମୁଁ ତୋତେ
ଆଜ ଏ ଯୁଦ୍ଧରେ କିଏ ସମ ହେବ ମୋତେ ।
ତୁ ଯେବେ ସାରଥିପଣେ ଏଡ଼େ ସାମରଥ
କଉରବ ସୈନ୍ୟ ଆଜ ହେବ ରସାଗତ ।
ସାତ୍ୟକିକୁ ଶ୍ୱେତ ଯହୁଁ ଏପରି କହିଲା
ସାତ୍ୟକି ରଥ ମଣ୍ଡନ କରିଣ ଆଣିଲା ।
ଆଭରଣେ ବୀରବେଶ ହୋଇଣ ବିରାଟି
ଯୁଧିଷ୍ଠିରଙ୍କ ପଦ୍ମପାଦେ ଯାଇକରି ଲୋଟି ।
ଶତେସସ୍ର ବାରଯାଏ ହୋଇ ପରଣାମି
ବୋଲେ ସର୍ବଶୁଭେ ମୋତେ ଆଜ୍ଞା ଦିଅ ସ୍ୱାମି
ବହୁ ଆନନ୍ଦ କଲ୍ୟାଣ କଲେ ଧର୍ମସୁତ
କୌରବଙ୍କୁ ଜିଣି ଅଭିମାନ ଫେଡ଼ ଶ୍ୱେତ ।
ଦଧିବାମନ ସୁମରି କଲେ ଅନୁକୂଳ
ରଥରେ ଧ୍ୱଜସ୍ଥ କଲେ ସୁଦେଷ୍ଣାର ବାଳ ।
ଆଗରେ ଅର୍ଜ୍ଜୁନ ବୀର ନନ୍ଦିଘୋଷ ସାଜ
ଶ୍ରୀକୃଷ୍ଣ ଯୋଚିଲେ ସେହି ରଥେ ଶ୍ୱେତବାଜୀ ।
ଶଙ୍ଖ ଶ୍ୱେତ ଗୋକ୍ଷୀର ଯେ ଜାମପାଳ ସ୍ୱର
ଶ୍ୱେତପକ୍ଷୀ ପ୍ରାୟେ ଶୂନ୍ୟେ ଯାନ୍ତି ଗତିକରି ।
ନନ୍ଦିଘୋଷ ପାଶେ ଧୃଷ୍ଟଦ୍ୟୁମନ ଶିଖଣ୍ଡୀ
ଶଙ୍ଖର ଭୁଲେ ଉତ୍ତର ଅଭିମନ୍ୟୁ ମଣ୍ଡି ।
ଶଙ୍ଖ ଉତ୍ତର ଏ ଦୁହେଁ ଶ୍ୱେତ ପଛେ ଯାନ୍ତି
ପୁଷ୍ପକ ସଦୃଶ ରଥପରେ ବସିଛନ୍ତି ।
ଚଳଯାନ୍ତି ହୟବର ଏକୁ ଏକ ତର୍ଜି
ଆକାଶ ବ୍ୟାପି ଉଡ଼ିଲେ ଆନନ୍ଦରେ ଗର୍ଜି ।
ବାଜନ ବାଜନ ଘୋର କଳେବର ଗଦା
ଭୀମ ଧରି ଗଲେ ସୈନ୍ୟ ଜରିବାକୁ ପଦା ।
ତାହାଙ୍କ ସଙ୍ଗେ ଯୁଦ୍ଧକୁ ଦୁର୍ଦ୍ଧର୍ଷ ଚଳିଲେ
ହିଡ଼ିମ୍ବୀ ନନ୍ଦନ ଘଟୋତ୍କଚହିଁ ଗଲେ ।
ଶ୍ୱେତ ହସ୍ତୀରେ ଆରୋହି ଦେବ ଧର୍ମସୁତେ
ବିରାଟ ଦ୍ରୁପଦ ସଙ୍ଗ କରିଲେ ବିଜୟେ ।
ବନ୍ଧୁ ସମ୍ବନ୍ଧେ ଚଳନ୍ତି ପାଣ୍ଡବ ସଇନ
ଆକାଶ କମ୍ପୁଛି ତାଙ୍କ ମୁଖରିବ ଧ୍ୱନ ।
ସମଦଣ୍ଡ ସଇନ୍ୟ ଯେ ହୋଇଲେ ନିକଟ
କୁରୁ ପାଣ୍ଡବଙ୍କ ବଳ ହେଲେ ଯାଇ ଭେଟ ।
ଭୀଷ୍ମଙ୍କ ସମ୍ମୁଖରେ ଆଜ ରହିବ କେ ପାରି
ଯେସନେକ ଗଜଯୂଥ ଆବୋରେ କେଶରୀ ।
କାଳାନଳ ପ୍ରାୟେ ଭୀଷ୍ମଙ୍କର ଚକ୍ଷୁ ବେନି
ଦେଖିକରି ତ୍ରାସ କଲେ ପାଣ୍ଡବ ସଇନ ।
ଗର୍ଜ୍ଜନ୍ତି ତର୍ଜ୍ଜନ୍ତି ତହିଁ କଉରବ ସାରେ
ରେରେକାର ଶବ୍ଦକରି ପଶିଲେ ସମରେ ।
ବାଜିଲାକ ରଣଗୋଳ ଭୀଷ୍ମାର୍ଜ୍ଜୁନ ବେନି
କର୍ଣ୍ଣର ସମ୍ମୁଖେ ଯାଇ ଭେଟିଲା ପାବନ ।
ପଞ୍ଚଷଠି ଯୋଦ୍ଧା ଘେନି ଦ୍ରୁପଦ ରାଜନ
ଦ୍ରୋଣଙ୍କର ଆଗେ ଯାଇ ଓଗାଳେ ବହନ ।
ସୋମଦତ୍ତ ସେ ପ୍ରତିଜ୍ଞା ଆଟେ କରୁଥିଲେ
ତାହାଙ୍କ ଆଗେ ଯାଇଣ ବିରାଟ ମିଳିଲେ ।
ବିରାଟର ନନ୍ଦନ ଯେ ଶ୍ୱେତ ମହାରଥୀ
ତା ରଥଧ୍ୱଜେ କେଶରୀ ଚରିଳ ଉଡ଼ନ୍ତି ।
ଉଡ଼ଇ ରଥେ ପତାକା ହୋଇ ଫରଫର
ଉଭୟ ବଳ ପ୍ରଶଂସା କରନ୍ତି ଅପାର ।
ଶ୍ୱେତର ପ୍ରତିଜ୍ଞା କୃପ ଆଚାର୍ଯ୍ୟ ଦେଖିଣ
ଗୁଣଘୋଷ ନାଦ କଲେ ତା ଆଗେ ଯାଇଣ ।
କୃପାଚାର୍ଯ୍ୟ ଦେଖିକରି ଶ୍ୱେତ ବୀରମୂର୍ତ୍ତି,
ବେଗରେ ଶର ବିନ୍ଧିଲେ କରି କୋପମତି ।
ପୁଣି ପଚାଶ ନାରାଚ ଘେନି କୃପରଥୀ
ବିନ୍ଧିଲେ ଶ୍ୱେତକୁ ଧରି କାଳାନଳ ମୂର୍ତ୍ତି ।
ପୁନରପି ପଞ୍ଚବିଂଶ ଶର ଘେନି କୋପେ
ଆକର୍ଷି ବିନ୍ଧିଲେ ଶ୍ୱେତ କୁମାର ସମୀପେ ।
ଦ୍ରୁତସିତ ଶ୍ୱେତବୀର କୃପ ଯୁଦ୍ଧ ଦେଖି
ବିନ୍ଧିଲା ବାଣ କୃପଙ୍କୁ କ୍ରୋଧ ଉପେକ୍ଷି ।
ଶ୍ୱେତ ବୋଇଲା ଜାଣିଲି ତୁମ୍ଭର ଏ ବଳ
ବଞ୍ଚିଅଛୁ ଶର ମୁହିଁ ଏହାକୁ ସମ୍ଭାଳ ।

ଏହିପରି କହନ୍ତେ ଯେ ବିରାଟର ସୁତ
ହାବୋଡ଼ା ଶରକୁ ଘେନି ବିନ୍ଧିଲା ତ୍ୱରିତ ।
ସେହି ଭପୁଙ୍କର ଶର ଗଲା ବେଗକରି
କୃପଙ୍କ ରଥରେ ପଡ଼ି ଦେଲା ତାକୁ ଚୂରି ।
ଲୋହମୟ ରଥ ଧ୍ୱଜ ହେଲା ମସିଗୁଣ୍ଡା
ସର୍ବେ ପ୍ରଶଂସିଲେ ଧନ୍ୟ ଶ୍ୱେତ ରଣଚଣ୍ଡୀ ।
ଆରେକ ରଥ ଆରୋହି ସୁଦେବର ନାତି
ଶତେକ ନାରାଚ ଘେନି ବିନ୍ଧିଲା ତଡ଼ତି ।
ନାରାଚ ଆସନ୍ତେ ଦୂରୁ କୁମାର ଦେଖିଲେ
ପଞ୍ଚାଶ ନାରାଚ ଘେନି ତାହା ନିବାରିଲେ ।
ଯେସନେକ ଆକାଶରୁ ପଡ଼ଇ ନିର୍ଘାତ
ସେପରି ପଡ଼ି ଭାଗିଲା କୃପଙ୍କର ରଥ ।
ପାଦଗତ ହୋଇଲେ ସେ କୃପ ମହାରଥ
ଯୁଦ୍ଧ ତ୍ୟାଗ କଲେ ତହୁଁ ହୋଇଣ ବିରଥ ।
କୋପରେ ଧାଇଁଲେ ତହୁଁ ବିରାଟର ବଳା
ହସ୍ତରେ ଧରି ଅଛଇ ଖଡ଼ଗର ଫଳା ।
ସାହସତେଜ ଜାଣି ଦିଶେ ବିରାଟ ନନ୍ଦନ
କୃପଙ୍କ କେଶ ଧଇଲା କରି ଆକର୍ଷଣ ।
କୋପେ ଉଠାଇଣ ବୀର ମାରନ୍ତେ କୃପଣ
ହୃଦରେ ଦେଖିଲା ତାର ବ୍ରାହ୍ମଣର ଚିହ୍ନ ।
କ୍ଷୀବସ୍ତ୍ର ଲାଞ୍ଛନ ଦେଖି ଚହ୍ଲିଲିକ ବାଳ
ବୋଇଲା ବ୍ରାହ୍ମଣ ନୋହୁଁ ଅଟୁ ତୁ ଚଣ୍ଡାଳ ।
କେବଣ ପାତକ ତୁମ୍ଭ କରିଥିଲୁ ପୂର୍ବେ
ସେଥିପାଇଁ ଏ ଭାରତେ ଯୁଦ୍ଧ କରୁ ଏବେ ।
ମୁହିଁ କହୁଅଛୁ ଏଥୁ ପଳାରେ ପାମର
ବିପ୍ର ନୋହିଥିଲେ ଆଜ କାଟନ୍ତି ତୋ ଶିର ।
ଛାଡ଼ିଦ୍ୟନ୍ତେ ପଳାଇଲେ କୃପ ମହାରଥୀ
ଯାଇଣ ମିଳିଲେ ସେହି ଅଶ୍ୱତ୍ଥାମା କତି ।
କୃପ ବୋଲେ ଅଶ୍ୱତ୍ଥାମା ମୋର ଦୁଃଖ ଦେଖ
ବିରଥ ହୋଇଲି ମୁହିଁ ପାରୁ ଯେବେ ରଖ ।
କୃପଙ୍କର ତୁଲେ ଥିଲେ ପାଞ୍ଚଶତ ଯୋଧୀ
ଅବଷଣେ ଶ୍ୱେତ ତାଙ୍କୁ ଶରମାନ ବିନ୍ଧି ।
ଯେଉଁପରି ଚୂତଫଳ ପଡ଼େ ବାତଘାତେ
ଯୋଦ୍ଧାଙ୍କର ଶିର ଛିଡ଼ିପଡ଼େ ସେହିମତେ ।
ଏକ ନାରାଚେ ପଡ଼ନ୍ତି ଦଶବିଂଶ ରଥୀ
ରକତେ କର୍ଦ୍ଦମ ହେଉଅଛି ବସୁମତୀ ।

ତାରାଗଣ ମଧ୍ୟେ ଯେହ୍ନେ ଚନ୍ଦ୍ର ପାଏ ଶୋଭା
ସେହ୍ନ ପ୍ରାୟ ଦିଶେ ଶ୍ୱେତକୁମାରର ପ୍ରଭା ।
ସହସ୍ରେକ ଶର ଘେନି ଧୀରବର ଦ୍ରୋଣି
ଶ୍ୱେତ କୁମରକୁ ତାହା ବିନ୍ଧିଲେକ ଟାଣି ।
ଦ୍ରୋଣପୁତ୍ର ଶର ଛିନ୍ଦେ ଗୁଣକୁ ଟଙ୍କାରି
ତାଙ୍କ ହସ୍ତର ବ୍ୟଗ୍ରତା କହି କେ ନ ପାରି ।
ବିରାଟ ନନ୍ଦନ ଅଟେ ଯୁଦ୍ଧେ ଜଟକ୍ଷିତା
ପ୍ରତିଅସ୍ତ୍ର ଶର ଛେଦେ ଶ୍ୱେତ ମହାରଥା ।
ପୁଣି ଅଯୁତେକ ଶର ଘେନିକରି ଦ୍ରୋଣି
ଶ୍ୱେତ ଉଦରକୁ ତାହା ବିନ୍ଧିଲେକ ଟାଣି ।
ଜୁଳୁଜୁଳା ପୋକ ଯେହ୍ନେ ଉଡ଼ନ୍ତି ଗଗନେ
ଶରମାନ ଦେଖା ଯାନ୍ତି ସେହ୍ନପରି ଶୂନ୍ୟେ ।
ଅଶ୍ୱତ୍ଥାମା ପ୍ରଶଂସଇ ଧନ୍ୟରେ ବିରାଟି
ଏହା କହି ବିନ୍ଧିଲା ସେ ବାଣ ଚଉଷଠି ।
କୋପେ ଲକ୍ଷସସ୍ର ବାଣ ବିନ୍ଧିଲେକ ଶ୍ୱେତ
ପୁଣି ଅଶ୍ୱତ୍ଥାମା ଶର ଛିନ୍ଦେ ଅଇବ୍ରତ ।
ଅଶ୍ୱତ୍ଥାମା ଅଟଇ ଯେ ଯୁଦ୍ଧେ ମହାଯୋଢି
ଅଦର୍ଯ୍ୟ,ପ୍ର ଶର ଶ୍ୱେତକୁମାରକୁ ବିନ୍ଧି ।
ପୁଣି ବିନ୍ଧିଲା ନାରାଚ ପାଞ୍ଚ ଅଇବ୍ରତ
ରଥୀ ସାରଥୀ ଆଦିଙ୍କୁ ଛିନ୍ଦେ ଦ୍ରୋଣପୁତ୍ର ।
ସାରଥି ଅଶ୍ୱକୁ ନ୍ୟୂନ ଦେଖି ବୀର ଶ୍ୱେତ
କୋପରେ ବିନ୍ଧିଲା ଶର ପାଞ୍ଚ ଅଇବ୍ରତ ।
ରଥୀଙ୍କୁ ଅଯୁତେ ସାରଥିକୁ ଅଇବ୍ରତ
ଶ୍ୱେତ ବିନ୍ଧଇ ନାରାଚ ହୋଇ କୋପଚିତ୍ତ ।
ବେନି ଶର ଆକାଶରେ ଭ୍ରାନ୍ତ ପରିତାଳ
ଝଲକ ଉଠଇ ଅଗ୍ନି ଯେହ୍ନେ ଦାବାନଳ ।
ପୁଣି ପାଞ୍ଚଶତ ଶର ଘେନି ବୀର ଶ୍ୱେତ
ବିନ୍ଧିକରି ଭଗ୍ନ କଲା ଅଶ୍ୱତ୍ଥାମା ରଥ ।
ପୁଣି ଯାଇ ଅନ୍ୟ ରଥ ଆରୋହିଲେ ଦ୍ରୋଣି
ଶତେ ଗଜ ଯୋଦ୍ଧା ଶ୍ୱେତ ପକାଇଲା ହାଣି ।
ଗଦା ମୁଦ୍‌ଗର ଖଡ଼୍‌ଗ ଗୁହୁଜ ମୂଷଳ
ଅଛିଲ ତହିଁ ନାରାଚ ଯେ ତେଜରେ ପ୍ରଜ୍ୱଳ ।
ବେନି ରଥୀଙ୍କର ଶର ନ ପାଇ ଦର୍ଶନ
ବୃରବାରେ ଆସି ମିଳିଗଲେ ସେହି ସ୍ଥାନ ।
ଶ୍ୱେତ ଶଙ୍ଖ ଉତ୍ତର ଯେ ବୀର ଅଭିମନ୍ୟୁ
ଧର୍ମରେ ଏକାଠ ହେଲେ ଏହି ବୃରସୂନୁ ।

ଯେସନେକ ପଞ୍ଚଅଗ୍ନି ଦହେ ତୃଣରାଶି
କୌରବ ସୈନ୍ୟଙ୍କୁ ତେହ୍ନେ ପକାଇଲେ ଧ୍ୱଂସି
ଏ ରୂପ ଘାତରେ ଧାମନ୍ତି ଭର ଏକଦୃଷ୍ଟି
ଜ୍ୱାଳାବଳ ବାଣମାନ କରଣ ସେ ବୃଷ୍ଟି ।
ଉଠିଲେକ ଦଣ୍ଡଭଗ୍ନ ଦେଖି ଦ୍ରୋଣ ଗୁରୁ
ଦେଖି ଅଭିମନ୍ୟୁ ତାଙ୍କୁ ଓଗାଳଲେ ଦୂରୁ ।
ଯୁଦ୍ଧେ ବିଶ୍ୱ ଜାମ ଦ୍ରାଜ୍ୟେ ବଶେ ପୃଥ୍ୱମଣି
ହୃଦରେ ରହ୍ନ ବରଗଜେ ତିମିରକୁ ଜିଣି ।
କରେ ଶୋଭାପାଏ ଅଜଗବ ନାମେ ଧନୁ
ଦେଖି ଦ୍ରୋଣ ପ୍ରଶଂସନ୍ତି ଧନ୍ୟ ଅଭିମନ୍ୟୁ ।
ଏଡେ ବଡ଼ ପ୍ରତିଜ୍ଞା ତୋ ଚଉଦ ବରଷେ
ଯୁଦ୍ଧବିଦ୍ୟା ସାଧିଲୁ ତୁ ଏଡ଼େକ ସାହସେ ।
ଆଉ ତୁଅ ଯୁଦ୍ଧେ ତୋର ସମସ୍ତ ନୁହଇ
ଅଜ୍ଞାନ ପୁଅ ତୋ ସଙ୍ଗେ ଯୁଦ୍ଧ ନ ଯୋଗାଇ ।
ଅଭିମନ୍ୟୁ ଛାଡ଼ି ଦ୍ରୋଣ ଗଲେ ଅପସର
ଶ୍ୱେତ ସମ୍ମୁଖରେ ମିଳିଲେ ଦ୍ରୋଣ ଧନୁ ଧର ।
ପ୍ରତିଜ୍ଞା ସାର୍ଥକ ଅଟେ ବିରାଟର ବଳା
ଦ୍ରୋଣଙ୍କୁ ଶର ବିନ୍ଧିଲା କ୍ଷତ୍ରୀ ଅନର୍ଗଳା ।
ନାଚତ ବର୍ଷଇ ଯେହ୍ନେ ବର୍ଷେ ମେଘମାଳ
କରେ ଧରିଅଛି ହେମ ଧନୁ ଅଦ୍ରୀବଳ ।
ଅଶ୍ୱତ୍ଥାମାକୁ ବିରଥ ଦ୍ରୋଣଗୁରୁ ଦେଖି
ଶର ବିନ୍ଧିଲେ ଶ୍ୱେତଙ୍କୁ ଅକ୍ରୋଧ ଉପେକ୍ଷି ।
ଅଶ୍ୱତ୍ଥାମା ଭୁଲେ ପଞ୍ଚଶତ ରଥୀ ଥିଲେ
ଶ୍ୱେତ ଶରେ ଶତରଥୀ ଭୂମିରେ ପଡ଼ିଲେ ।
ଦୁର୍ଦ୍ଦକ୍ଷ ନାଶିଲେ ତହୁଁ ବେନଶତ ରଥୀ
ଅଭିମନ୍ୟୁ ନାଶକଲେ ନବସହସ୍ର ରଥୀ ।
ଏତେକ ଯୋଦ୍ଧା ପଡ଼ିଲେ ଅଶ୍ୱତ୍ଥାମାଙ୍କର
ଶ୍ୱେତ ଦ୍ରୋଣଙ୍କ ସମର ହେଲା ଗୁରୁତର ।
ଶ୍ୱେତବୀର ସହସ୍ରେ ଶର ବିନ୍ଧିଲା ଦ୍ରୋଣଙ୍କୁ
ପୁଣ ଦ୍ୱିସହସ୍ର ଶର ବିନ୍ଧିଲା ଅଶ୍ୱଙ୍କୁ ।
ଶ୍ୱେତ ହସ୍ତର ବ୍ୟଗ୍ରତା ଜାଣି ନ ପାରି
ଦ୍ରୋଣଙ୍କୁ ବିନ୍ଧିଲା ପୁଣି ଶର ସହସ୍ର ଚାରି ।
ପୁଣି ପଞ୍ଚଷଠି ଶର ଧନୁରେ ପୂରାଇ
ଆକର୍ଷି ଦ୍ରୋଣେ ବିନ୍ଧିଲା ବୀର ବେଗେ ଧାଇଁ
ଅପୂର୍ବ ଲୁହାର ଶର ଅଟେ ତୀକ୍ଷ୍ଣମୁନା
ବିନ୍ଧିଲା ଭେଦିଲା ସେହି ଦ୍ରୋଣଙ୍କର ସେହ୍ନା ।

ଭରଦ୍ୱାଜ ସୁତ ପର୍ଶୁରାମ ସମକ୍ଷୀ
ଦ୍ରୋଣେ ଜିଣିବାକୁ ମର୍ତ୍ତ୍ୟପୁରେ କା ଶକତ ।
ଦୂରୁ ପାଣ୍ଡବେ ଯା ବିଦ୍ୟା ବଳେ ହେଲେ କ୍ଷତ୍ରୀ
ସେ ଦ୍ରୋଣ ସମ୍ମୁଖରେ ଶ୍ୱେତକୁମାର ସେ ରଥୀ
ଅତକ୍ଷଣେ ବିନ୍ଧୁଛନ୍ତି ଦ୍ରୋଣ ଶର ଘେନ
ଗ୍ରୀଷ୍ମେ ଯେହ୍ନେ ପରବତ ଦହଇ ସେ ବହ୍ନି ।
ହସ୍ତର ବ୍ୟଗ୍ରତା କେହୁ ଜାଣି ନ ପାରି
ତୂଣୁ କାଢ଼ି ବିନ୍ଧୁଛନ୍ତି ଶର ବ୍ୟଗ୍ରକରି ।
ଯେଉଁପରି ଆକାଶରୁ ପଡ଼ଇ ଜଳଧାର
ସେପରି ଗଗନୁ ପଡ଼େ ଦ୍ରୋଣଙ୍କର ଶର ।
ଶ୍ୱେତକୁମାରର ରଥ ହେଲା ଅଦୃଶ୍ୟହିଁ
ତାହା ଦେଖିଣ ବିରାଟି ଶର ଯେ ବିନ୍ଧଇ ।
ଦ୍ରୋଣଙ୍କ ଶର ଖୋଟଇ ଯେସନେ ତିମିର
ଶ୍ୱେତଙ୍କ ବାଣ ସୂର୍ଯ୍ୟରେ ଗଲା ଅପସର ।
ଶ୍ୱେତର ନାରାଚ ତହୁଁ ଆକାଶରେ ଯୋଡ଼ି
ଦ୍ରୋଣ ପ୍ରଶଂସା କରିଲେ ଧନ୍ୟରେ ବିରାଟି ।
ବାରୁଣୀ ଶର ଯେଉଁଣ ଦ୍ରୋଣ ବେଗେ ପେଷି
ସେ ଶର ଶ୍ୱେତକୁମାର ବେଗରେ ବିନାଶି ।
ନିଦ୍ରାଳ ବାଣକୁ ପୁଣି ପେଷିଦ୍ୟନ୍ତି ଦ୍ରୋଣ
ପ୍ରତିଅସ୍ତ୍ରେ ଶ୍ୱେତ ତାକୁ କଲେ ନିବାରଣ ।
କୋପେ ଦ୍ରୋଣଗୁରୁ ବଜ୍ରାଘାତ ଶର ପେଷି
କାଳାନଳ ବାଣେ ଶ୍ୱେତ ତାହାକୁ ବିନାଶି ।
ଲଘବ ଶରରେ ଦ୍ରୋଣ ନ ପାରିଲେ ଜିଣି
ବଡ଼ବାନଳ ଶରକୁ ପେଷିଲେ ସେ ଆଣି ।
ପର୍ଶୁରାମ ଜିଣିଥିଲେ ପୃଥ୍ୱୀ ଯେଉଁ ଶରେ
ଅର୍ଜ୍ଜୁନେ ପେଷିଲେ ତାହା କଣ୍ଠ ତ ସମରେ ।
ତ୍ରୈଲୋକ୍ୟ କମ୍ପଇ ଯେଉଁ ଶରର ସମକ୍ଷେ
ଧର୍ମଙ୍କୁ ଛାଡ଼ିଲେ ଗୁରୁ ସମର ସମ୍ମୁଖେ ।
ସହସ୍ରେକ ଶିଖା ବ୍ରହ୍ମାନଳ ଶର ଘେନ
ତାକୁ ଦେଖି ଉଭୁଜଲେ ଉଭୟ ସଇନ ।
ଅଇଲକ ନାରାଚ ଯେ ଶୂନ୍ୟପଥେ ଗର୍ଜ୍ଜି
ନିର୍ଘାତ କି ଗଗନରୁ ପଡ଼ଇ ଗଜରାଜ ।
ବହ୍ନିର ତେଜ ଦେଖିଣ ପଳାଇଲେ ବଳ
ସାତ୍ୟକ ଡାକିଲା ଶ୍ୱେତ ସମ୍ଭାଳ ସମ୍ଭାଳ ।
ତୋ ପ୍ରତିଜ୍ଞା ଯୁଧିଷ୍ଠିର ହେବ ଦେଖି ତୋଷ
ପାଣ୍ଡବେ ହରଷଯୁଦ୍ଧେ କଲେ ତୋତେ ଆଶ ।

ଶ୍ୱେତ ବୋଲେ ତୁମ୍ଭ ସାହା ହୋଇଥିବୁ ରଥେ
ଦେଖିବା ଅଜ କୌରବ ରହିବେ କେମନ୍ତେ
ଏ ଶର ଦେଖିଣ ତୁମ୍ଭ ନ କର ଯେ ଭୟେ
ସେ ମୋତେ ଦିଶୁଛି ଜୁକୁଜୁକା ପୋକ ପ୍ରାଏ
ଶ୍ୱେତକୁମାର ବୋଇଲା ଶୁଣ ହେ ସାରଥି
ଏକ୍ଷଣି ଦ୍ରକଟରେ ଦେଖ ମୁଁ ନଟ୍ଟି ।
ପୁଣି ମରୁତାସ୍ତ୍ର କୋପେ ଛାଡ଼ିଲାକ ଶ୍ୱେତ
ଅନଳ ଆସନ୍ତେ ଦୂରୁ ଘୋଟିଲାକ ବାତ ।
ପାଣ୍ଡବବଳଙ୍କୁ ଅଗ୍ନି ବାଣ ଆଦିଥିଲା
ବାୟୁ ବଢାରେ ତକ୍ଷଣେ ତହୁଁ ଲେଉଟିଲା ।
ସପ୍ତଶିଖା ହୋଇ ଅଗ୍ନି ଚଳିଲା ଲେଉଟି
ସେଥିରେ ଦହନ ହେଲା ଦ୍ରୋଣଙ୍କ ରଥଟି ।
କୌରବ ଥାଟରେ ଅଗ୍ନି ପଡ଼ିଲା ଝସାଇ
ବହୁରଥ ଧ୍ୱଂସ ହେଲା ଅଗ୍ନିତେଜ ପାଇ ।
ପବନ ବହନ୍ତେ ଯେ ନ ଲିଭଇ ଅନଳ
ପଳାଇଲେ କୁରୁପତି ହୋଇ ଅସମ୍ଭାଳ ।
ଅଡ଼ାଇ ପ୍ରହର ବେଳ ଆସି ଦିନକର
ତହୁଁ ପୁଣି ଅଗ୍ନି ତେଜ ହେଲା ଖରତର ।
କଉରବେ ପଳାନ୍ତେଣ ପାଣ୍ଡବେ ଗୋଡ଼ାନ୍ତି
ପବନ ବହନ୍ତେ ବୃଦ୍ଧି ହେଲା ଅଗ୍ନି କାନ୍ତି ।
ଦ୍ୱିଜ ସମଦଣ୍ଡ ପଳାଇଲେ ଏକମୁଖେ
ସୈନ୍ୟ ପଳାଉ ଅଛନ୍ତି ମନର ଦମ୍ଭଖେ ।
ଫଳା ଆଡ଼େଣୀ ଶଜଡ଼ ଗୁରୁଜ ଲଙ୍କିଆ
ଛାଡ଼ି ପଳାନ୍ତି ଯୋଦ୍ଧାଏ କେହି ନୋହି ଠିଆ
ସୈନ୍ୟ ପଳାବନ୍ତେ ଭୀଷ୍ମ ହୋଇଲେକ ଏକା
ବେଢ଼ନ୍ତି ଭୀଷ୍ମଦେବଙ୍କୁ ପାଇଲେ ସେ ଶଙ୍କା ।
ପାଣ୍ଡବ ସୁନ୍ଦର ବୀର ବୃକୋଦର ଉଠି
ଭୀଷ୍ମଙ୍କ ରଥ ଉପରେ ଗଦା ନେଇ ପିଟି ।
ଗଦା ବାଜନ୍ତେଣ ରଥ ହେଲା ବେନିଖଣ୍ଡ
ହୟ ସାରଥି ସହିତେ ହେଲେ ମସିଗୁଣ୍ଡ ।
ଭୀଷ୍ମ ମଣିନାଗ ନାମେ ହସ୍ତୀଏ ଆରୋହି
ପଛକୁ ଦୁଅଁଇଲେ ଭୀଷ୍ମ ଶସ୍ତ୍ରକୁ ପୂରାଇ ।
ଶର ଛନ୍ଦି ଛନ୍ଦି ପଛଘୁଞ୍ଚା ଦେଇ ଆସି
ବେନିକ୍ରୋଶ ପରେ ଯାଇ ନିଜ ଥାଟେ ମିଶି ।
ବେଳ ଆସି ଅବସାନ ଶ୍ରମେ ମହାକ୍ଷୁଧା
ଯୁଦ୍ଧ ଭରେ ଉଗ୍ରବଳ ଅଗ୍ନି ତେଜେ ବାଧା ।

ନ ପାରନ୍ତି ଶସ୍ତ୍ର ଧରି ନ ପାରନ୍ତି ଗୁଳି
ଡାକନ୍ତି ଶରଣ ଟଳୁ ରଖ ରଖ ବୋଲି ।
ପୁଣି ବୀର ଶିଖଣ୍ଡୀ ଯେ ବୀର ଧୃଷ୍ଟଦ୍ୟୁମ୍ନ
ଏଙ୍କେ ଶ୍ୱେତ ଉତ୍ତର ଯେ ଭୀମର ନନ୍ଦନ ।
ନରପେକ୍ଷ ସମର ଯେ ତାଙ୍କ ପିଲାବୁଦ୍ଧି
ଶରଣ ବୋଇଲେ ଦୁଇଗୁଣ ଶର ବିନ୍ଧି ।
ପଡନ୍ତେ ଯୋଦ୍ଧାଏ ତହିଁ ବହୁରଥ ରଥୀ
ଆବର ଅଶ୍ୱ ଯୋଦ୍ଧାଏ ବହୁତ ପଦାତି ।
ତେରକୋଶ ପରିଯନ୍ତେ ପଡ଼ିଲେ ମୂର୍ଦ୍ଧାର
ନଦୀଏ ବହିଲା ମୃତପିଣ୍ଡ ରକତର ।
ପଳେଇ ସୈନ୍ୟ ପଳାନ୍ତି ଶିରେ କର ତୋଳି
ଯୁଦ୍ଧକ୍ଷେତ୍ରେ ରକ୍ତଯୋଗୁଁ ମଳିଗଲା ଧୂଳି ।
ବହୁତ ସୈନ୍ୟ ପଡ଼ିଲେ କୌରବଙ୍କ ଥାଟେ
ମଣି ନ ପାରିଲେ କେହି ପାଣ୍ଡବ ନିକଟେ ।
ଯମୁନା ନଦୀରେ ସର୍ବେ ପଶିଲେକ ଯାଇ
କେ ଅବା ପଶିଲେ ଇନ୍ଦ୍ରପ୍ରସ୍ଥେ ଲୁଚିଦେଇ ।
ଦିନକର ମେରୁପୃଷ୍ଠେ ଉଢାଡ଼ ହୋଇଲେ
ଯମପ୍ରସ୍ଥ ରାଜ୍ୟଠାବେ ପାଣ୍ଡବେ ରହିଲେ ।
ସୂର୍ଯ୍ୟ ଅସ୍ତଗଲେ ହେଲା ବେନିଘଡ଼ି ରାତି
ଅନ୍ଧ ଆଗେ ଭୀଷ୍ମ ଦ୍ରୋଣ କର୍ଣ୍ଣ ଯେ ମିଳନ୍ତି
ସର୍ବେ ପ୍ରଶଂସା କରନ୍ତି ଶ୍ୱେତର ମହିମା
ସାଧୁ ସାଧୁ ରେ ଜଗତସୁତ ମହାତମା ।
ଧୃତରାଷ୍ଟ୍ର ପ୍ରଶଂସନ୍ତି ଧନ୍ୟ ହେ ସଞ୍ଜୟ
ତୁମ୍ଭରେ ମହାପଣ୍ଡିତ ଅଟ ଜ୍ଞାନମୟ ।
କାଲି ମୋତେ ଯାହା କହିଥିଲୁ ତୁ ନିଶାରେ
ପ୍ରତ୍ୟକ୍ଷ ଫଳିଲା ତାହା ଶୁଣିଲି କର୍ଣ୍ଣରେ ।
ଦ୍ରୋଣ ବୋଇଲେ ସଞ୍ଜୟ ଅଟେ ମହାଜ୍ଞାନୀ
ଭୂତ ଭବିଷ୍ୟତ ବର୍ତ୍ତମାନ ଜାଣେ ତିନି ।
ଏହା ଶୁଣି ଦୁର୍ଯ୍ୟୋଧନ କରି ଅତି ରାଗ
କାରେ କୋପଭର କାଲୁ ପାଶୁ କରେ ତ୍ୟାଗ
ମହାରାଗୀ ଅଟେ ପୁଣି ଦୁଷ୍ଟ ତା ପ୍ରକୃତି
କାହାକୁ କିଛି ନ କହେ ନିରସ ତା ମତି ।
ଭୂମିରେ ହସ୍ତ ତାଡ଼ଣ ଓଷ୍ଠେ ଦନ୍ତଚାପି
ଶ୍ୱେତର ପ୍ରଶଂସା ଶୁଣି ହେଲା ମହାକୋପୀ ।
ଜାନୁରେ କରକୁ ଠୁକି ରୋମ ଉଲ୍ଲସାଇ
ବାହାସ୍ଫୋଟ ମାରି କୋପେ ଦେହକୁ କମ୍ପାଇ ।

ଦୁଃଶାସନ ଦୁର୍ବିନ୍ଧ ସେ ଦୁର୍ମୁଖ ଦୁରନ୍ତ
ଦୁର୍ବଳ ଦୁର୍ମଦ ଆଦି ତାଙ୍କ ସୋଦରନ୍ତ ।
ଏମାନଙ୍କୁ ଗୃହିଁ ଦୁର୍ଯ୍ୟୋଧନ ଆଜ୍ଞା ଦେଲା
ଭୀଷ୍ମ ଆଉ ରାଜାମାନେ ଯାଆନ୍ତୁ ବୋଇଲା ।
ଅପଖ୍ୟାତ ଜନମିଲା ସଂସାରେ ମୋହର
ଅନେଶ୍ୱତ ଭାଇ ସେନ ଜଡ଼ିତ ସମର ।
ଭୀଷ୍ମ ଭୂରିଶ୍ରବା ଦ୍ରୋଣ ଆଦି ରଥୀ ଯାନ୍ତୁ
ରାଜାଦି ସୈନ୍ୟଙ୍କୁ ଘେନ ସକଳେ ଫେରନ୍ତୁ
ସଂସାରରେ ଅପଖ୍ୟାତ ନୋହୁ ମୋର ନାମେ
ଅନେଶ୍ୱତ ଭାଇ ଘେନ ପଶିବି ସଂଗ୍ରାମେ ।
ନିଜ କର୍ମକୁ ଆଦର ବୋଲେ ଧାର୍ତ୍ତରାଷ୍ଟ୍ର
କହୁଥିଲା ଏହି କଥା ଆଗରୁ ଯୁଧିଷ୍ଠି ।
ଅଜ୍ଞାନ ପଣରେ ସିନା କଲି ମୁହିଁ ମନ୍ଦ
ବହୁ ଲୋକ ଚୂର୍ଣ୍ଣ କରି ଆରମ୍ଭିଲି ଦ୍ୱନ୍ଦ୍ୱ ।
ବହୁଲୋକରେ ଇନ୍ଦୁର ନୋହେ କେବେ ମାର
ଘାଲେ କର ମାରେ ନିଜ କର୍ମ ନିନ୍ଦା କର ।
ବହୁତ ଯାଗ ହୋଇଲେ ମାରେ କି ସଞ୍ଚାଣ
ବହୁ ଅଜାପଲ ବ୍ୟାଘ୍ର ମାରିବେ କି ପୁଣ ।
ବହୁତ ବିଷୟେ ଜାଣ ନାଶ ଯାନ୍ତି ପ୍ରାଣୀ
ବହୁ ସ୍ତ୍ରିୟରେ ପୁରୁଷ ପାରନ୍ତି କି ଜିଣି ।
ମୁହିଁ ମୂର୍ଖ ନ ଜାଣିଣ କଲି ବହୁ ଚୂର୍ଣ୍ଣ
ବହୁତ ଗାଈ ମିଶିଲେ ନାଶିବେ ସେ ଷଣ୍ଢ ।
ବହୁତ ରାଜାଏ ଚୂର୍ଣ୍ଣ ହେଲେ ଅନୀତିରେ
ମୋହର ବଂଶ ବୁଡ଼ିବ ଏହାଙ୍କ ସାକ୍ଷାତେ ।
ଛାଗଳଦଳ ସମାନ ହେଲେ ମୋର ଆଠ
ବ୍ୟାଘ୍ର ସମ ପୁତ୍ର ଜନ୍ମ କରିଛି ବିରାଟ ।
ମୋହର ସୈନ୍ୟ ସକଳ ଉନ୍ମାଦନ ହେଲା
ପ୍ରବଳ ପବନ ଶ୍ୱେତ ତାକୁ ଲୋଟାଇଲା ।
ହସ୍ତୀପରେ ରହିଥିଲେ ମୋହର ଯେ ଆଠ
ଦୁଇପୁଣ ପଦେଯନ୍ତେ ନ ପାଇଲେ ବାଟ ।
କେଶରୀ ଦେଖି ପଳାନ୍ତି ଯେସନେ ଗଜଯୂଥ
ସେହିପରି ସୈନ୍ୟ ମୋର ହେଲେ ଇତସ୍ତତଃ
ନୋହିବ ମୋହର କାର୍ଯ୍ୟ ଘଟିଲା ଦୁର୍ଦ୍ଦଶା
ମେରୁ ଆଶ୍ରେ କଲି ମୁଁ ନ ପାଇଲି ଭରସା
ତୃଣ ସମାନ ହୋଇଲେ ମୋହର ସଇନ
ବିରାଟନନ୍ଦନ ହେଲା କାଳାନଳ ବହ୍ନି ।

ପ୍ରଚଣ୍ଡ ପବନ ମୋତେ ହୋଇଲା ସାତ୍ୟକି
ଲଙ୍କାକୁ ଧ୍ୱଂସିଲା ଯେହ୍ନେ ମାରୁତି ଏକାକୀ ।
ଏପରି ବହୁ ଚିନ୍ତାସି ବୋଲନ୍ତି ନୃପତି
ରାଗେ ସଭାରୁ ଉଠିଲେ ଦ୍ରୋଣ ମହାରଥୀ ।
ଦ୍ରୋଣ ବୋଇଲେ ତୁ ଶୁଣ ରେ ମାନଗୋବିନ୍ଦ
କାହାର ବୋଲ ନ କରି ଆରମ୍ଭିଲୁ ଦ୍ୱନ୍ଦ୍ୱ ।
ରାମ ରାବଣର ପୂର୍ବେ ହୋଇଥିଲା ଯୁଦ୍ଧ
ଲକ୍ଷ୍ମଣଙ୍କୁ ଇନ୍ଦ୍ରଜିତ ଯେସେ ନାଗବନ୍ଧ ।
ଲକ୍ଷ୍ମଣର ବକ୍ଷସ୍ଥଳେ ଶକତି ପଡ଼ିଲା
ଔଷଧ ପ୍ରସାଦେ ପୁଣି ଜୀବନ ପାଇଲା ।
ସୀତା ହରଣେ ରାମଙ୍କୁ ବିପତ୍ତି ପଡ଼ିଲା
କୈକେୟୀ ବିମାତା ଯୋଗେ ଏ ଦଶା ଘଟିଲା
ଦେବତାଏ ଜାଣି ମନ୍ଦ ଚାହିଁଲେ ରାମଙ୍କୁ
ରାବଣ ମାରିବ ରାମ ଗଲେ ଅରଣ୍ୟକୁ ।
ତୁହିରେ ମାନଗୋବିନ୍ଦ ନ ଜାଣୁ ଏମାନ
କପଟେ ଶକୁନି ମନ୍ତ୍ରୀ କରୁଛି ସେବନ ।
ବେଶ୍ୟାର ସଙ୍ଗେ ପଡ଼ିଲେ କାମୀ ନାଶଯାଇ
ତସ୍କର ସଙ୍ଗ କରିଲେ ବନ୍ଧନ ହୁଅଇ ।
ବଗର ପ୍ରସଙ୍ଗେ ଜଣ ନାଶଯାଇ ବପୁ
ରାଗ କଲିଲେ ଶରୀରେ ଜାତ ହୁଏ ରିପୁ ।
ପରପୁରୁଷରେ ନାଶ ଯାନ୍ତି ଯୁବାସ୍ତ୍ରିଶ
କୁଳସ୍ତ୍ରିଶ ନାଶଯାନ୍ତି ହୋଇଲେ ଦୋଷଶ
ସ୍ତ୍ରୀ ବଶେ ରହିଲେ ନର ହୁଏ ମୋହମତ୍ତ
କୁଟୁମ୍ବରେ ହୁଏ ସଦା ଗୃହର ବିବାଦ ।
ଅଥବା ଏଥିରୁ ଯେବେ ପାରୁ ଅପସରି
ବଂଶ ରକ୍ଷା ହେବ ଆଉ ଭୁଞ୍ଜିବୁ ତୁ ଶିରୀ ।
ଦୁର୍ଯ୍ୟୋଧନ ବୋଲେ ଗୁରୁ ନୁହଇଁ ଏମନ୍ତ
ତୁମ୍ଭେମାନେ ବୃଦ୍ଧଯାଅ ହୋଇଣ ନିସତ ।
ଦ୍ରୋଣ ବୋଇଲେ ରାଜା ତୋ ଚିନ୍ତାସ ଶୁଣିଲି
ଆମ୍ଭର ସମର ରାଯ୍ୟେ ଦେଖିବୁ ତୁ କାଲି ।
ଯେବେ ଶ୍ୱେତ ପ୍ରାଯ୍ୟେ ହେବେ ସହସ୍ରେକରଥୀ
ମୋହର ସମ୍ମୁଖରେ କେହି ନ ସିବେ ବରତି ।
ଅଥବା ଶ୍ୱେତକୁ ଯେବେ ନ ପାରିବ ମାରି
ସଂଗ୍ରାମେ ନ ସ୍ଥିବି ସତ୍ୟ ଯେ ମୋହର ।
ଏପରି ପ୍ରତିଜ୍ଞା ଦେହୁଁ ଦ୍ରୋଣଗୁରୁ କଲେ
ଧୃତରାଷ୍ଟ୍ରଙ୍କ ସମ୍ମୁଖରେ ପଣ୍ଡୁପୁତ୍ରେ ଥିଲେ ।

ଭୀମସେନ ବୋଲେ ଗୁରୁ କି ପ୍ରତିଜ୍ଞା କରି
ଏକା ଆମ୍ଭ ଭାଇ ସିନା କର ଏତେ ଦୂର ।
ପ୍ରତିଜ୍ଞା ଯେ କରିଥିଲେ ଭୀଷ୍ମ ମହାରଥୀ
ଦଶସହସ୍ର ଯୋଦ୍ଧା ସେହୁ ମାରିବାକୁ ନିତି ।
ଆଜିର ଯୁଦ୍ଧରେ ଜଣେ ନ ପାରିଲେ ମାରି
ରକ୍ଷା ନ ମାନିଲେ ସେହୁ ପ୍ରତିଜ୍ଞା ତାଙ୍କରି ।
କ୍ଷତ୍ରୀଙ୍କ ପ୍ରତିଜ୍ଞା ଯେବେ ଅନ୍ୟଥା ହୋଇବ
ମହତ ଲୋକର ଯେବେ ବଚନ ଟଳିବ ।
ବ୍ରାହ୍ମଣ ହୋଇଣ ଯେବେ କହେ ମିଥ୍ୟାକଥା
ଆପଣା ସତ୍ୟରକ୍ଷା ଯେ ନ କରେ ସର୍ବଥା ।
ରାଜାର ରାଜ୍ୟରେ ଯେବେ ନହିବ ଅନୀତି
ପୁତ୍ର ହୋଇ ପିତା ମାତାଠାରେ ଝଗଳନ୍ତି ।
ପ୍ରିଥିବ ସହିତ ଯେବେ ଉପୁଜେ ଅରିଷ୍ଟି
କପାଁ ଇନ୍ଦ୍ରଦେବ ତେବେ କରିବ ବା ବୃଷ୍ଟି
କଚ୍ଛପମୁଣ୍ଡ ପ୍ରସାରି ଯେହ୍ନେ ଗୁପ୍ତକରି
ଭୀଷ୍ମ ଦେବଙ୍କ ପ୍ରତିଜ୍ଞା ହେଲା ସେହ୍ନପରି ।
ଯେତେବେଳେ ଯାହା ଆସେ ବାଳକଙ୍କ ମନେ
ଅନ୍ୟଥା ନ ଭାବ ସେହୁ କହନ୍ତି ବଚନେ ।
ଭୀଷ୍ମଙ୍କର ପ୍ରତିଜ୍ଞା ତ ଏମନ୍ତ ହୋଇଲା
ଯାବତ କାଳକୁ ଏହି କଥା ଯେ ରହିଲା ।
ଜୟ ସଂସାରବଲ୍ଲଭ ତୁହି ବାସୁଦେବ
ତୁହି ସିନା ଜାଣୁ ନାଥ ଭାବ ସେ ଅଭାବ ।
ବ୍ରାହ୍ମଣ ହେଉ ଅଥବା ଶୂଦ୍ର ହାଦେ ହେଉ
ତବ ଲକ୍ଷ୍ୟ ନ କହିଲେ ମୁକ୍ତି ଅଛି କାହୁଁ ।
ଜ୍ଞାନାଜ୍ଞାନେ ହେଉ ଅବା ସବ୍ୟେ ଅପସବ୍ୟେ
ହିଂସ୍ରା ବା ଅହିଂସ୍ରା ହେଉ ଯେହୁ ହୃଦେ ଭାବେ
ସେ ଲୋକକୁ ତୁହି ନାଥ ମୁକତି ଯେ ଦେଉ
ସଚେତ ଅଚେତ ନାଥ ତୁହି ଯେ କରାଉ ।
ଭବ କରାଇଣ ନାଥ ନାଶ ଯେ କରାଇ
ସବୁ ଦେଖୁଅଛୁ ତୋତେ ନ ଦେଖନ୍ତି କେହି
ନ ଜାଣି ଲୋକେ ପଶନ୍ତି ନାନା ତୀର୍ଥ ପଥେ
ନ ଧରନ୍ତି ତୋ ମଧୁର ନାମ ହୃଦଗତେ ।
ସକଳ ତୀର୍ଥ ଅଛନ୍ତି ତୋ ପାଦକମଳେ
ବୁଲନ୍ତି ଲୋକେ କେବଳ ମନର ଚଞ୍ଚଳେ ।
ଗୁରୁଙ୍କର ଉପଦେଶ ତୋର ନାମଗୋଟି
କଲ୍ପବଟ ତଳେ ଅଛି ଯେତେ ତୀର୍ଥ କୋଟି ।

ପରମାନନ୍ଦ ପୁରୁଷ ତୁ କରୁଣାମୟ
କ୍ଷେତ୍ର ଜାଣି ନ ମାଡ଼ଇ ସୂର୍ଯ୍ୟର ତନୟ ।
ତୁହି ନାରାୟଣ ଦଣ୍ଡେ ବାସ କରୁ ଯହିଁ
ବହୁଯୁଗ ପର୍ଯ୍ୟନ୍ତେ ତୀର୍ଥ ସେ ବୋଲାଇ ।
ଅପୂର୍ବ କରିଣ ଏକ ଦ୍ୱାରିକା ରଚିଲ
ତାକୁ ଏକ ମହାତୀର୍ଥ କରିଣ ରଖିଲ ।
ଯହିଁ ପ୍ରଭୁ ନମିଷେକ କରନ୍ତି ବିଜୟେ
ଯାବଚନ୍ଦ୍ର ଯାଏ ମହାତୀର୍ଥ ସେ ବୋଲାଏ ।
ଲୀଳାରେ ଜନମ ତୁମ୍ଭେ ବାଳରୂପ ଧରି
କୁତୂହଳ ଭାବେ ପ୍ରଭୁ ନାନା ଖେଳା କରି ।
ତବ ନାମଗୋଟି ଆଉ ମମ ହୃଦଗତେ
ଚଉ ଭରଳତ ତାହା ନ ହୁଏ ଯେମନ୍ତେ ।
ଯେଉଁ ଆଜ୍ଞା ଦେଇଛନ୍ତି ମୋତେ ସେ ଅମ୍ବିକା
କୃପାଜଳ ନନ୍ଦନା ମୋ ହୃଦଦ୍ୱାର ଏକା ।
ଅଜପା ପଣ୍ଡିତ ମୁହିଁ ଅକର୍ମୀ ଅଟଇ
ଶ୍ରୀଚଣ୍ଡୀ ଶାରଳା ପାଦେ ସର୍ବଦା ଖଟଇ
ଯେଉଁ ଭାରତ ଝଣ୍ଡିକ କରିବଇଁ ଲେଖା
ଏଥେ ମା ଶାରଳା ଦେବୀ ହେଲେ ମୋର ସଖା
ମୋ ହୃଦେ ବସି କହନ୍ତେ ତେଣୁ ମୁଁ ଜାଣିଲା
ଶରଧା କରିଣ ଏହା ଯତନେ ଲେଖିଲା ।
ଗଙ୍ଗାକୂଳ ବାଲି କେହୁ ପାରେ ଅନ୍ତ କରି
କେହୁ ବା ଗଣି ପାରିବ ସମୁଦ୍ର ଲହରୀ ।
ଝଙ୍କଡ଼ବାସିନୀ ଚଣ୍ଡୀ ଶ୍ରୀ ଶାରଳା ଦେବୀ
ତାଙ୍କ ପାଦେ ବନ୍ଦଇଁ ମୁଁ ଶ୍ରୀ ଶାରଳାଦବ ।
ହେ ଜନେ ତରିବ ଯେବେ ଚିନ୍ତ ଆଦିମୂଳ
ସେହି ପ୍ରଭୁ ଅଛନ୍ତି ଯେ ଭକତବତ୍ସଳ ।
ସେହି ପ୍ରଭୁଙ୍କ ଯୁଗଳ ପାଦ ଅରବିନ୍ଦ
ରସପାନ କରୁ ସଦା ମୋ ମନ ଷଟ୍‌ପଦ ।
ଏହି ଆଶା ସବୁବେଳେ ଶାରଳା ଦାସର
ଏ ବାଞ୍ଛା ପୂର୍ଣ୍ଣ ଦେବ କି ହେ କରୁଣାକର ।

———

## ପଞ୍ଚମ ଦିନ ଯୁଦ୍ଧରେ ଦ୍ରୋଣଙ୍କ ବ୍ରହ୍ମାସ୍ତ୍ରରେ ଶ୍ୱେତର ପତନ

ବୈବସ୍ୱତ ଅଗସ୍ତିଙ୍କୁ ପୁଣି କଲେ ପୁଚ୍ଛା
ଭାରତ ଶୁଣିବା ପାଇଁ ମୋର ବଡ଼ ଇଚ୍ଛା ।

ପଞ୍ଚମ ଦିବସେ ଭୀଷ୍ମ ପର୍ବର ଯେ କଥା
କହ ମହାମୁନି ମୋତେ ତୁମ୍ଭେ ସର୍ବଜ୍ଞାତା ।
ଅଗସ୍ତି ବୋଲନ୍ତି ଶୁଣ ମନୁ ଦଣ୍ଡଧର
ଦୁର୍ଯ୍ୟୋଧନ ଅପ୍ରାଜୟେ ଚତୁର୍ଥ ଦିନର ।
ଅଦ୍ଭୁତ ସମର କଲା ଶ୍ୱେତ ଏକା ରଥେ
କୌରବେ ପଡ଼ିଲେ ତେରକୋଶ ପରଯନ୍ତେ
ଦଶସହସ୍ର ରାଜା ଆଉ ବିଂଶସହସ୍ର ହାତୀ
ପାଞ୍ଚଲକ୍ଷ ଅଶ୍ୱ ଯୋଦ୍ଧା ପାଞ୍ଚକ୍ଷୌଣୀ ରଥୀ ।
ଅସମର୍ଥ ହୋଇ ସର୍ବେ ପଡ଼ିଲେକ ଯୁଦ୍ଧେ
ସଇନ୍ୟ ପତିତ ହେଲେ ବତିଶ ପରାର୍ଦ୍ଧେ ।
ପଞ୍ଚଯଣ ସେ ଯେ ଖର୍ଦ୍ଧ ଦୁଇଯୂଣ ପ୍ରତି
ପାଞ୍ଚାଳ ଉତ୍ସର୍ଗରେ ପଡ଼ିଲେ ପଦାତି ।
ଯମପ୍ରସ୍ଥ ବୋଲି ନଦୀ ସରସ୍ୱତୀ କୂଳେ
ପାଣ୍ଡବେ ରହିଅଛନ୍ତି ବାଞ୍ଛାବଟ ତଳେ ।
ପୁଣ ପାଣ୍ଡବେ କୌରବେ ହେଲେ ଏକଯୋଗ
ରଜନୀ ବଞ୍ଚିଲେ ସର୍ବେ ହୋଇଣ ସଂଯୋଗ ।
ପୂର୍ବଦିଗେ ସୂର୍ଯ୍ୟ ଯହୁଁ ଉଦୟ ହୋଇଲେ
ବାସୁଦେବ ପାଞ୍ଚଜନ୍ୟ ଶଙ୍ଖଶବ୍ଦ କଲେ ।
ଆକାଶେ ଶୁଭିଲା ଯହୁଁ ହରି ଶଙ୍ଖଧ୍ୱନି
ସାଧୁରେ ପାଣ୍ଡବେ ପ୍ରଶଂସନ୍ତି ପଦ୍ମଯୋନି ।
ସ୍ନାନ ଆଦି ନିତ୍ୟକର୍ମ ସାରି ବେଗ ବେଗ
ପୂର୍ବ ପଶ୍ଚିମ ହୋଇଣ ରହି ବେନଭାଗ ।
ବାଜଇ ଯେ ବୀରତୂର ଟମକ ଦାଉଣ୍ଡି
ବୀରବେଶେ ଅଳଙ୍କାରମାନ ସର୍ବେ ମଣ୍ଡି ।
ତର୍ଜନ୍ତି ଗର୍ଜନ୍ତି ବୀର ଡାକ ନାମ ଧରି
ସାଜରେ ସାଜରେ ବୋଲି ବାଜଇ ମହୁରୀ ।
ନନ୍ଦିଘୋଷ ରଥରେ ଯେ ଶ୍ରୀକୃଷ୍ଣ ସାରଥି
ଧରୁ ଧଇଲେ ବଚସବାର୍ଯ୍ୟଙ୍କର ନାଥ ।
ଭୀମସେନ ରଥରେ ଯେ ସାରଥି ବିଜୟ
ବିଶ୍ୱାବସୁଙ୍କର ସେହୁ ଅଟଇ ତନୟ ।
ଭାଗ୍ୟବର ସାରଥି ଯେ ନକୁଳର ସାଥେ
ଅନଙ୍ଗ ସୁତ ସାରଥି ସହଦେବ ରଥେ ।
ଯୁଧିଷ୍ଠିରଙ୍କ ସାରଥି ଶାକଲ୍ୟ ବ୍ରାହ୍ମଣ
ବ୍ରହ୍ମାଙ୍କର ନାତି ସେହୁ ସୁତରେ ପ୍ରବୀଣ ।
ଧୃଷ୍ଟଦ୍ୟୁମ୍ନର ସାରଥି ଅରୁଣ ଅନୁଜ
ଦ୍ରୁପଦ ରଥେ ସାରଥି ଯେ ମକରଧ୍ୱଜ ।

ଜାମ୍ବୁନଦ ସାରଥି ଯେ ବିରାଟ ସଙ୍ଗତେ
ସାତ୍ୟକ ସାରଥି ଶ୍ୱେତକୁମାରର ରଥେ ।
ହରସାଗର ବୋଲିଣ ଦକ୍ଷ ଏକ ଥିଲା
ଦୁର୍ଦ୍ଧର୍ଷ ରଥରେ ସେହୁ ସାରଥି ହୋଇଲା ।
ସୁଭଦ୍ରାର ନନ୍ଦନ ଯେ ବୀର ଅଭିମନ୍ୟୁ
କେତୁକ ସାରଥି ତାର ବିଶ୍ୱାବସୁ ସୁନୁ ।
ଦ୍ରୁପଦ ନନ୍ଦନ ନାମ ଅଟଇ ଶିଖଣ୍ଡୀ
ସମର୍ଥକ ସାରଥି ଯେ ତାର ରଥ ମଣ୍ଡି ।
ହିଡ଼ିମ୍ବିକୀ ନନ୍ଦନ ଯେ ଘଟୋତ୍କଚ ବଳୀ
ତାହା ରଥରେ ସାରଥି ହେଲା କୃଷ୍ଣାବାଳୀ ।
ଶଙ୍ଖ ନାମରେ ରଥୀ ଯେ ବିରାଟର ସୁତ
ଚୈତନ୍ୟ ନାମେ ସାରଥି ବାହେ ତାର ରଥ ।
ଉତ୍ତରକୁମାର ଅଟେ ସୁଦେଷ୍ଣାର ବଳା
ତାହାର ରଥେ ସାରଥି ନାମ ଚନ୍ଦ୍ରକଳା ।
ଘଟୋତ୍କଚ ନନ୍ଦନ ଯେ ପାର୍ଥ ସମ ବୀର
ତାହାର ରଥେ ସାରଥି ନାମ ଦିବାକର ।
ଜରାସନ୍ଧ ସୁତ ସହଦେବ ଜୟସେନ
କୁମ୍ଭ ନିକୁମ୍ଭ ସାରଥି ଅଙ୍ଗିରା ନନ୍ଦନ ।
ଭୀଷ୍ମଙ୍କ ରଥେ ସାରଥି ନାମ ହନୁମତ
ଅରୁଣର ପଣନାତି ଇନ୍ଦ୍ରଙ୍କର ପୁତ୍ର ।
କ୍ଷତ୍ରିୟ ହରେଇମଲ୍ଲ ଅଟେ ବୀର କର୍ଣ୍ଣ
ଶୋଷକ ସାରଥି ତାର ରଥେ ବିଦ୍ୟମାନ ।
ଦ୍ରୋଣଙ୍କର ରଥରେ ଯେ ବିଷାଦ ସାରଥି
ଅଗ୍ନିଦେବଙ୍କର ସେହୁ ଅଟେ ପଣନାତି ।
କୃପଙ୍କର ସାରଥି ଯେ ଭାଗ୍ୟବର ଗୁରୁ
ବିଶ୍ୱଦେବଙ୍କ ସୁତ ସେ ଅଇଲା ସ୍ୱର୍ଗରୁ ।
ଅଶ୍ୱତ୍ଥାମା ରଥେ ଏକଜଟା ଯେ ସାରଥି
ଗୋରେଖ ନନ୍ଦନ ସେହୁ ମତ୍ସ୍ୟେନ୍ଦ୍ରଙ୍କ ନାତି ।
କୁଷ୍ମାଣ୍ଡ ପୁତ୍ର ଅନନ୍ତ ସଦାଶିବ ନାମ
ଶଲ୍ୟଙ୍କ ରଥେ ସାରଥି ସେହୁ ବିଦ୍ୟମାନ ।
ବୈଲୋଚନ ନାମେ ବସୁ ଅନଳର ପୁତ୍ର
ସାରଥି ହୋଇ ବାହିଲା ଭୂରିଶ୍ରବା ରଥ ।
ମହ୍ଲାର ଦେଶର ରାଜା ନାମ କଳାକେତ
ସୋମଦତ୍ତ ରଥରେ ସେ ହୋଇଛି ସାରଥି ।
ଜୟଧ୍ୱଜ ରଥେ ସୁତ ନାମ ବାଲ୍ମୀକି
ଅମ୍ବଷ୍ଠକର ସାରଥି ଯେ ରଥୀ ବୃନ୍ଦାଅର୍କ ।

କୁରୁକୁଳର ମଣ୍ଡନ ମାନଚକ୍ରବର୍ତ୍ତୀ
ତାହାର ରଥେ କୁମୁଦ ଅଟଇ ସାରଥି ।
ବାହୁଥିଲା ରବଣର ରଥ ସବୁକାଳେ
ଦୁର୍ଯ୍ୟୋଧନ ରଥ ସେହୁ ବାହିଲା ଏକାଳେ ।
ଭ୍ରାତା ପୁତ୍ର ସେ କୁମର ନାମ ଅପ୍ରମତ
ଅହର୍ନିଶି ବାହଇ ସେ ଦୁଃଶାସନ ରଥ ।
ଗାଲବ୍ୟଙ୍କର ନନ୍ଦନ ମନ୍ତ୍ରୀ ଯେ ସଞ୍ଜୟେ
ଧୃତରାଷ୍ଟ୍ରଙ୍କର ରଥ ସେହୁ ବାହୁଥାଏ ।
ସିନ୍ଧୁ ଦେଶର ନୃପତି ନାମ ଜୟଦ୍ରଥ
ତାହାର ସାରଥି ଅନୁପମ ମନମଥ ।
କର୍ଣ୍ଣାଟ ଦେଶର ରଜା ଅଟେ କର୍ଣ୍ଣକେଶୀ
ତା ରଥ ବାହେ କାମାକ୍ଷୀ ନାମରେ ଯେ ଦାସୀ
କାଶୀଦେଶ ରଜା ନାମ ଅଟେ କାମେଶ୍ୱର
ଭୈରବ ସାରଥି ଥାଏ ତାହାର ରଥର ।
ମାଳବ ଦେଶର ରଜା ନାମ କୃତବର୍ମା
ତାହାର ରଥେ ସାରଥି ମଳୟ ମହାତ୍ମା ।
ନର୍ଦ୍ଦର ଦେଶର ରଜା ନାମ ଗଣପତି
ତାହାର ରଥେ ସାରଥି ଅଟେ ଧନୁକେତ ।
ଅନେକ ରଥୀ ସାରଥୀ କହି କେ ସମର୍ଥା
ସଂକ୍ଷେପି କହିବାକୁ ମୁଁ ନୁହଇ ବକତା ।
ଅଛନ୍ତି କ୍ଷତ୍ରିୟମାନେ ମହା ମହାରୟେ
ଠିକ ଠିକକର ମୁହିଁ କହିଲ ଥୋକାଏ ।
ଏତେ ରଥିଙ୍କର ମଧ୍ୟେ ପାର୍ଥ ଶିରୋମଣି
ତାଙ୍କର ରଥ ସାରଥି ଦେବ ଚକ୍ରପାଣି ।
ଶ୍ୱେତହସ୍ତୀରେ ଆରୋହି ଭଜେ ଧର୍ମସ୍ୱାମୀ
ସମସ୍ତେ ବାହାର ହେଲେ ଚହୁଁ ରଣଭୂମି ।
ବିରାଟ ରଜନନ୍ଦନ ଶ୍ୱେତ ବଳବନ୍ତ
ଯୁଧିଷ୍ଠିର ବାନ୍ଧିଲେ ଯେ ମୁକୁଟ ତା ମାଥ ।
ବେନି ଥାଟର ମଧ୍ୟରେ ଶବଦ ଶୁଭିଲା
ବିରାଟ ନନ୍ଦନ ଶ୍ୱେତ ସେନାପତି ହେଲା ।
ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ଯେ ଉତ୍ତର ପଲାଣି
ସର୍ବଦଳ ମଧ୍ୟେ ଶ୍ୱେତ ଅଟେ ଆଗୁଆଣି ।
କୁରୁଦଳ ଆଗେ ଯାନ୍ତି ଭୀଷ୍ମ ସେନାପତି
ତାଙ୍କ ସମ୍ମୁଖରେ ମିଳିଲେ ଶ୍ୱେତ ମହାରଥୀ ।
ଭୀଷ୍ମ ବୋଇଲେ ଶୁଣିତ ବାଳୁତ ଅଜ୍ଞାନ
ତୋର ଭୂଜେ ନାହିଁ ମୋର ସମର ବିଧାନ ।

ସମରେ ଜିଣିଲେ ତୋତେ ନାହିଁ ପଉରୁଷ
ଯୁଦ୍ଧେ ବାଳକ ମାଇଲେ ହୁଏ ବଡ଼ ଦୋଷ ।
ଶୁଣିଣ ଶ୍ୱେତକୁମାର କୋପରେ ପ୍ରଜ୍ୱଳ
ଭୀଷ୍ମଙ୍କୁ ବିନ୍ଧିଲା ବୀର ବାଣ ଜ୍ୱଳାବଳ ।
ଅଦଭୁତେ ଶରବୃଷ୍ଟି ହୋଇଲା ଗଗନୁ
ଶ୍ୱେତକୁ ପ୍ରଶଂସା କଲେ ଗଙ୍ଗାଦେବୀ ସୂନୁ ।
ସାଧୁ ସାଧୁ ମହିମାରେ ସୁଦେଷ୍ଣାର ସୁତ
କାହା ପ୍ରସାଦେ ସମରେ ତୁ ଏଡ଼େ ସମର୍ଥ ।
ଶ୍ୱେତ କୁମାରକୁ ଆଡ଼ ହେଲେ ଭୀଷ୍ମ ରଥୀ
ଅର୍ଜ୍ଜୁନ ସମ୍ମୁଖରେ ଯାଇ ମିଳିଲେ ଝଟତି ।
ବିରାଟ ନନ୍ଦନ ଶ୍ୱେତ ରଣରଙ୍ଗେ ମଜ୍ଜି
ଉଭୟ ଥାଟେ ପଶିଲା ବୀର ଗଳଗାଜି ।
ସାତ୍ୟକି ସାରଥି ଚହୁଁ ବାହିଲା ତୁରଙ୍ଗ
ପବନ ସମାନେ ରଥ ବାହେ ବେଗ ବେଗ ।
ଯାଆନ୍ତେ ଭେଟିଲା ସେହୁ ବୀରବର କର୍ଣ୍ଣ
ଶ୍ୱେତ ଉପରକୁ ଶର କଲାକ ସନ୍ଧାନ ।
ଲହାଶରେ ଲାଗିଅଛି ଶଙ୍ଖଚିଲ ପକ୍ଷୀ
ଅପାର କାଳରୁ କର୍ଣ୍ଣ ତାହା ଥିଲା ରଖି ।
ଅଗ୍ନିଶର ପ୍ରାୟେ ବାଣ ପଞ୍ଚଷଠି ଗୋଟି
ପୂର୍ବବରଗ ଯେନ କର୍ଣ୍ଣ ତାହା କଲା ବୃଷ୍ଟି ।
ମେଦିନୀ ପୂରିଣ ତହିଁ ଯୋଟିଲାକ ବାଣ
ପ୍ରତିଦାନ କରି ଶ୍ୱେତ ଛେଦେ ପଞ୍ଚବାଣ ।
ପୁଣି କର୍ଣ୍ଣ ଯେନିଲା ଯେ ଶତେ ବଜ୍ରମୁନା
ଆକର୍ଷି ବିନ୍ଧିଲା ତାହା ହୋଇ କୋପମନା ।
ନାରଜ ଆସନ୍ତେ ଦୂରୁ ଦେଖିଲା ଯେ ଶ୍ୱେତ
କର୍ଣ୍ଣ ଶରକୁ ଛେଦିଲା କରି ପ୍ରତିଅସ୍ତ୍ର ।
କାମ୍ୟକ ଶର ପ୍ରହାର କଲା ବୀରଶ୍ୱେତ
ଶରଘାଏ କର୍ଣ୍ଣବୀର ହୋଇଲା ଅଚେତ ।
ଯେଉଁପରି ବିବରରେ ପଶନ୍ତି ଉରଗେ
କର୍ଣ୍ଣର ଶରୀରେ ଶର ପଶିଲା ସେ ବେଗେ ।
ସମ୍ଭାଳ ସମ୍ଭାଳ ବୋଲି ଶ୍ୱେତ ଡାକଦେଲା
ସମ୍ଭାଳି ନ ପାରି କର୍ଣ୍ଣ ମୂର୍ଚ୍ଛାରେ ପଡ଼ିଲା ।
ଶ୍ୱେତର ସାରଥି ରଥ ନେଲା ଅପସରି
ସେହିକ୍ଷଣେ ଭେଦ କର୍ଣ୍ଣ ଦେହ ରୁଧିରରେ ପୂରି ।
କର୍ଣ୍ଣ ପଳାଇ ଯାଆନ୍ତେ ବାଜିଲେ ସଇନ୍ୟ
କର୍ଣ୍ଣ ମାର କର୍ଣ୍ଣ ମାର ବୋଲି ଶୁଭେ ଧ୍ୱନି ।

କର୍ଣ୍ଣ ତୁଲେ ଅଠାଣୋଇ ସସ୍ର ଥିଲେ ରଥୀ
କେହ୍ନ ଜଣେ ନ ରହିଲେ ସେ ଶ୍ୱେତର କଡ
ଜାବୁଡ଼େ ଉଠିଲେ ବିରାଟର ତନପୁବେ
ଏକମୁଖେ ବାନ୍ଧିଲେ ସେ ଶର ଅପ୍ରମିତେ ।
ପଞ୍ଚାଶ ରଥୀ ବେଢ଼ିଲେ ତନ କୁମରଙ୍କୁ
ଅନର୍ଯ୍ୟାପ ବାଣମାନ ବାନ୍ଧିଲେ ତାହାଙ୍କୁ ।
ପଡ଼ିବାରୁ ବାଣମାନ ଆକାଶ ନ ଦିଶି
ଅମାବାସ୍ୟାରେ ଯେସନ ଅନ୍ଧକାର ନିଶି ।
ସୂଚିମୂନ ବାଣମାନ ଯେନଣ ବିରାଟି
ସେମାନଙ୍କ ଉପରକୁ କୋପେ କଲେ ବୃଷ୍ଟି ।
ଗଜ ଅଶ୍ୱ ପଦାତିରେ ପଡ଼ି ଶର ଭେଦି
ଶମନ ସଦନେ ଗଲେ ବହୁତର ଯୋଦ୍ଧୀ ।
ଶରଘାତୁଁ ଯେଉଁମାନେ ଉବୁରିଣ ଥିଲେ
ବିରାଟ ପୁତେ ତାହାଙ୍କୁ ଗୋଡ଼ାଇ ମାଇଲେ
ଅଶ୍ୱ ରଥେ ଗଜେ ଯେତେ ରଥୀମାନେ ଥିଲେ
ସେ ସର୍ବ ଶରଘାତରେ ଭାଜି ପଳାଇଲେ ।
ଧୃଷ୍ଟଦ୍ୟୁମନ ଶିଖଣ୍ଡୀ ତହୁଁ ବେଗେ ଆସି
ଦେଖିକର ଦ୍ରୋଣଗୁରୁ ନାରାଚ ବରଷି ।
ଉତ୍ତର କୁମର ହେଲା ଦୁଃଶାର ସ୍ଥମୁରେ
ଶିଖଣ୍ଡୀ ମିଳିଲା ଅଶ୍ୱତ୍ଥାମାର ଆଗରେ ।
ଅଶ୍ୱତ୍ଥାମା ଶିଖଣ୍ଡୀକି ବୋଲେ ଆରେ ଶୁଣ
ଆଜ ପଡ଼ିଅଛୁ ତୁହି ମୋହର ଆଗେଣ ।
ଭଲହେଲେ ତୁହି ଆସି ପଡ଼ିଲୁ ଆଗର
ତୋତେ ମୁଁ ମାଇଲେ ରଷ୍ଟ ଯିବ ଭୀଷ୍ମଙ୍କର
ପଗୁରୁ ପଗୁରୁ କୋପେ ଦ୍ରୋଣଙ୍କର ସୁତ
ଆକର୍ଷି ବାନ୍ଧିଲା ବେଗେ ଶର ଅପ୍ରମିତ ।
ପଡ଼ିଲେ ନାରାଚ ତଳ ବୃଷ୍ଟି ର ପରସ୍ପେ
ସେହ୍ଲା ଫୁଟି ଭେଦିଗଲା ଶିଖଣ୍ଡୀର କାସ୍ପେ ।
ଶୁଣ ଆହେ ଚଇତନ ଶିଖଣ୍ଡୀର ଗୁଣ
ସେମେ ସେମେ ଗଲାଅଛୁ କରୁଅଛୁ ରଣ ।
ଗନ୍ଧର୍ବାସ୍ତ୍ର ଶିଖଣ୍ଡୀକୁ କର୍ଣ୍ଣ ଦେଇଥିଲା
ସେ ଶର ଯେନଣ ଅଶ୍ୱତ୍ଥାମାକୁ ବାନ୍ଧିଲା ।
ଅଶ୍ୱତ୍ଥାମା ଯେତେ ଶରମାନ ଯୋଚିଥିଲା
ଗନ୍ଧର୍ବ ଅସ୍ତ୍ରରେ ତାହା ଛେଦନ ହୋଇଲା ।
ଅଶ୍ୱତ୍ଥାମା ଯୋଖିଥିଲା ତନସସ୍ର ବାଣ
ତାହା ସବୁତେ ଛେଦିଲା ହସ୍ତୁ ଧନୁର୍ଗୁଣ ।

ଗୁଣ ଭେଦି ବାମଭୁଜେ ଯାଆନ୍ତେ ନକଳ
ଅଶ୍ୱତ୍ଥାମା ଧନୁକକୁ ନ ପାରିଲା ତୋଳ ।
ଅଶ୍ୱତ୍ଥାମାର ତଅର୍ଥ ସାରଥି ଯେ ଦେଖି
ରଥ ଯେନ ପଳାଇଲା ସମର ଉପେକ୍ଷି ।
ଅଶ୍ୱତ୍ଥାମା ଯାଆନ୍ତେଣ ଭାଜିଲେକ ଦଳ
ଗୋଡ଼ାଇ କରି ଶିଖଣ୍ଡୀ ବାଣେ ଅନର୍ଗଳ ।
ପାଦଗଣ୍ଡରେ ଗୋଡ଼ାଇ ଧାମଇଁ ଶିଖଣ୍ଡୀ
ଯୋଦ୍ଧାଙ୍କ ଉପରେ ନେଇ ପିଟଇ ଭୁଷଣ୍ଡୀ ।
ଏକା ପ୍ରହାରକେ ମାରେ ଦଶବଂଶ ଦଳ
କରଇ ଯେ କୁତୂହଳ ପଦ୍ମାବକ୍ଷ ବାଳ ।
ଅଶ୍ୱ ଗଜ ରଥୀମାନେ ପଡ଼ିଲେ ଭୂତଳେ
ଭାଙ୍ଗିଲେ କୌରବ ବଳ ନ ରହି ସେଠାରେ
ଭୀଷ୍ମ ଅର୍ଜୁନର ରଣ ହୁଏ ଘୋରତର
ବାଣ ବରଷନ୍ତି ଜଣି ବରଷାର ଧାର ।
ହସ୍ତଲୁଣ୍ଠି ହସ୍ତ ଦେଖାବନ୍ତି ସେହୁ ବେନ
ତଳ ବଷ । ପ୍ରାପ୍ତ ଶର ବାନ୍ଧନ୍ତି ସେ ଯେନ ।
ବେନ କ୍ଷନ୍ୟୁ ମିଳିଣ ମହାଯୁଦ୍ଧ କଲେ
ସକଳ ସଇନ୍ୟ ତହିଁ ରହିଣ ଦେଖିଲେ ।
ବିରାଟର ନନ୍ଦନ ଯେ ଶ୍ୱେତ ମହାବଳୀ
ବାନ୍ଧଇ ନାରାଚ ଧନୁ ସର୍ବଦା କୁଣ୍ଡଳୀ ।
ଉଭୟ ଥାଟ ମଧ୍ୟରେ ଶ୍ୱେତ ଯେ ଶକତା
ସମର ସମ୍ମୁବେ ସେହୁ ନ ଯାଇ ଗଣିତା ।
ସାରଥି ବାହେ ତୁରଙ୍ଗ ଅତ୍ୟନ୍ତ ବେଗରେ
ରଥ ଛୁଟାଇଲା ନେଇ ଦ୍ରୋଣଙ୍କ ସ୍ଥମୁରେ ।
ଭରଦ୍ୱାଜଙ୍କ ନନ୍ଦନ ଧନୁର୍ବିଦ୍ୟା ଗୁରୁ
ଇନ୍ଦ୍ର ଦେବ ଶଙ୍କା କରେ ଯାର ଧନୁ ଧରୁ ।
ଶ୍ୱେତକୁ ଦେଖିଣ ପୂଚ୍ଛାକଲେ ଗୁରୁଦ୍ରୋଣେ
ପୃଥ୍ୱୀରେ କେ ଅଛୁ ମୋର ସଙ୍ଗେ କ୍ଷତ୍ରୀପଣେ
ତୁହିରେ ବାଳ୍ପିତପୁଷ୍ପ କହୁହିଁ ନ ଜାଣୁ
ସମର କରିବାକୁ ତୁ ଖେଳ ପ୍ରାପ୍ତ ମଣୁ ।
ଶ୍ୱେତ ବୋଇଲା ସେ କଥା ଛାଡ଼ ଆହେ ଗୁରୁ
ସ୍ଥଗଳର ପ୍ରାକର୍ମେ କି ଗୁଳହୁଏ ମେରୁ ।
ଶୁଣି କୋପେ ପ୍ରତିବାକ୍ୟ ଦଅନ୍ତି ଯେ ଗୁରୁ
ମୂଷି ସିନା ସ୍ଥଗଳ ରେ ତୁହି ଅଟୁ ମେରୁ ।
କେହୁ ଛେଳି କେହୁ ମେରୁ ଦେଖ ଆଜ ଯୁଦ୍ଧ
ଆଜ ରଣେ ତୋତେ ଯେବେ ନ କରେ ମୁଁ ବଧ

ଶ୍ୱେତକୁ ଛାଡ଼ିବ ଆଉ ରଣ ଉପେକ୍ଷିବ
ଛାଗଳ ପଦ ମୁଁ ଆଜୁଁ ମଞ୍ଚେ ବୋଲାଇବ ।
କାଳଚନ୍ଦର ପ୍ରାୟେକ ବୁଲାଇଣ ଆଣି
ବିନ୍ଧିଲେ ନାରାଚ ଗୁରୁ ଉକ୍ରୋଧ ଉପେକ୍ଷି ।
ଶତେ ତୀକ୍ଷ୍ଣମୁନା ଶକ୍ତି କାଳାନ୍ତକ ପ୍ରାୟେ
କୋପେଣ ପେଷିଲେ ଭରଦ୍ୱାଜଙ୍କ ତନୟେ ।
ଦେଖିଣ ଶ୍ୱେତ ବିନ୍ଧିଲା ତୀକ୍ଷ୍ଣଶର ଗୋଟି
ଦ୍ରୋଣଙ୍କର ଶକତିକୁ ପକାଇଲା କାଟି ।
ପୁଣି କୁମାର ବିନ୍ଧିଲା ଘେନି ତୀକ୍ଷ୍ଣମୁନା
ଘାଏଣ ଭେଦିଲା ତାହା ଦ୍ରୋଣଙ୍କର ସେନା ।
ନାରାଚ ବିନ୍ଧିବା ଦେଖି ଦ୍ରୋଣ ମହାରଥୀ
ସୂର୍ଯ୍ୟାବର୍ତ୍ତ ଶର ଘେନି ବିନ୍ଧିଲେ ଝଟତି ।
ନଦାଘ ଶର ସେ ମହାଅନଳର ପ୍ରାୟେ
ରଥ ଘୋଟି ବ୍ୟାପିଲା ସେ ଶ୍ୱେତବୀର କାୟେ
ଅମୃତ ଶର ବିନ୍ଧନ୍ତେ ବିରାଟ କୁମର
ତ୍ରିଭୁବନ ବ୍ୟାପିଗଲା କାମରୂପୀ ଶର ।
ଶରେ ଶର ପରିଚାଳ ହୋଇଲେକ ବେନି
ଦୁହିଙ୍କର ଗୁଣ ଘୋଷେ ପୂରିଲା ମେଦିନୀ ।
ଯେହ୍ନେ ଗଗନେ ଉଦୟ ହୋନ୍ତି ଅଂଶୁମାଳି
ସେହିପରି ଦିଶୁଅଛି ଶର ତେଜ ଝଳ ।
ତିରିଶ ନାରାଚ ପୁଣି ବିଦ୍ୟାଗୁରୁ ଘେନି
ତାହାକୁ ବିନ୍ଧିଲେ ବେଗେ ଶ୍ୱେତର ମୂର୍ଦ୍ଧନି ।
ପୁଣି ଶତେକ ନାରାଚ ପୂରାଇଣ ଦ୍ରୋଣ
ସାତ୍ୟକ ସାରଥି କ ଯେ ବିନ୍ଧିଲେ ତତ୍‌କ୍ଷଣ
ଚାରି ଅଶ୍ୱଙ୍କୁ ବିନ୍ଧିଲା ଚାରି ଚାରି ଶର
ସହସ୍ରେ ଶର ବିନ୍ଧିଲେ ଶ୍ୱେତର ଉପର ।
ଦ୍ରୋଣଗୁରୁଙ୍କ ନାରାଚ ନ ପଡୁଣୁ ରଣେ
କୋପରେ ବିନ୍ଧିଲା ଶ୍ୱେତ କାଳଚନ୍ଦ ବାଣେ ।
ଅନେକ ନାରାଚ ବିନ୍ଧିଥିଲେ ଦ୍ରୋଣଗୁରୁ
ଚନ୍ଦଘାତରେ ଛେଦନ ହୋଇଗଲା ଦୂରୁ ।
ଖଣ୍ଡା ଫିରିକ ନାରାଚ ଦ୍ରୋଣ ପ୍ରହାରିଲେ
ମୁଦୁଗର ବାଣେ ତାହା ଶ୍ୱେତ ନିବାରିଲେ ।
ସହସ୍ର ମୁନା ପେଷିଲେ ଦ୍ରୋଣ ସେନାପତି
ସୂର୍ଯ୍ୟାବର୍ତ୍ତ ଶରେ ତାହା ଶ୍ୱେତ ଯେ ନିପାତି
ଅରୁଣ କିରଣ ଜାଣ ତା ଜ୍ୟୋତି ପ୍ରକାଶି
ଦ୍ରୋଣଙ୍କର ଶର ଶ୍ୱେତ କୁମାର ବିନାଶି ।

କୋପେଣ ହାବୋଡ଼ାଶର ବିନ୍ଧୁ ଶ୍ୱେତବୀର
ଦ୍ରୋଣଙ୍କ ରଥେ ପଡ଼ିଲା ବିଜୁଳି ଆକାର ।
ପୁଣ ପୁଣ ଶ୍ୱେତବୀର ବିନ୍ଧେ ଗଳଗାଜ
ବାଣ ପଡ଼ନ୍ତେ ଦ୍ରୋଣଙ୍କ ରଥ ଗଲା ଭାଙ୍ଗ ।
ଆନ ରଥ ଆରୋହିଲେ ଭରଦ୍ୱାଜ ବଳା
ସମରେ ଗୁରୁ ବିନ୍ଧନ୍ତି ଶର ସସ୍ତ୍ରକଳା ।
ଦ୍ରୋଣ ଶ୍ୱେତ ଦୁହିଙ୍କର ଏମନ୍ତ ସମର
କହିବାକୁ ଅସମ୍ଭବ ଦେବେ ଅଗୋଚର ।
ଦୁଃସହ ସଂଗ୍ରାମ ହେଲା ଦୁଇ କ୍ଷତ୍ରିଙ୍କର
ରୁଧିରରେ ବିଲେପନ ଦୁହିଙ୍କ ଶରୀର ।
ଶରଦ କାଳରେ ଯେହ୍ନେ ଗର୍ଜ୍ଜେ ମେଘମାଳ
ସେହିପରି ଶବ୍ଦ ଶୁଣି ତ୍ରାସିଲେ ସକଳ ।
ଶର ଆତଯାତେ ଯେହ୍ନେ ବରଷଇ ପାଣି
କ୍ଷତ୍ରି ବର ସୁନ୍ଦର ସେ ବୀର ଚୂଡ଼ାମଣି ।
ବିଜୟେ ଶ୍ୱେତକୁମାର ଯୁଦ୍ଧେ ମହାରଥା
ଦୁଇବଳ ମଧ୍ୟରେ ସେ ଅଟଇ ଶକତା ।
କୋଟିଏକ ଯୋଦ୍ଧା ଘେନି ହିଡ଼ିମ୍ବୀ ଆତ୍ମଜ
ସମରେ ପଶିଲା ସେହି ଦୈତ୍ୟକୁଳ ରାଜ ।
ସେହି ଅସୁର ଅଟନ୍ତି ପୁଣି କାମରୂପୀ
ତିନିପୁର କ୍ଷଣକରେ ପାରନ୍ତି ସେ ବ୍ୟାପି ।
ବେନି ହସ୍ତେ ଗଜ ଧରି ବୁଲାଇଣ ପିଟି
ଉପରକୁ ଫୋପାଡ଼ିଣ ବିସ୍ତାରିଣ ପାଟି ।
ଅଶ୍ୱମାନଙ୍କୁ ଧରିଣ ବୁଲାଇ ପ୍ରଚଣ୍ଡ
ଉପରକୁ ଫୋପାଡ଼ିଣ ପାତନ୍ତି ସେ ଭୁଣ୍ଡ ।
ଅନେକ ନାରାଚମାନ ବିନ୍ଧନ୍ତି କୌରବେ
ତୁଣ୍ଡ ବିସ୍ତାରିଣ ତାହା ଗିଳନ୍ତି ଦାନବେ ।
ଦୈତ୍ୟଙ୍କୁ ଦେଖି ଭାଜିଲେ କଉରବ ସୈନ୍ୟ
ତାହା ଦେଖିଣ ଧାଇଁଲା ବୀର ଦୁଃଶାସନ ।
ସତୁରି ସତୁରି ଭାର ଗଦା ବେନି ହସ୍ତେ
ସନ୍ଧ୍ୟାକାଳେ ଯେସନେକ ଦିଶନ୍ତି ପର୍ବତେ ।
ରେ ରେ କାର କରିଣ ଯେ ଦୁଃଶାସନ ଉଠି
ଘଟୋତ୍କଚ ଉପରେ ଗଦା ଘେନି ପିଟି ।
ଗରଜିଣ ଉଠିଲା ସେ ହିଡ଼ିମ୍ବିକା ବାଳ
ବାଜନ୍ତେଣ ଗଦାଗୋଟି ହେଲା ବେନିଫାଳ
ହିଡ଼ିମ୍ବିକାର ନନ୍ଦନ ଗଦା ଘେନି ପିଟି
ସେ ଘାତରେ ଦୁଃଶାସନ ପଡ଼ିଲା ଲେଉଟି ।

ଗିରବର ପଡ଼ିଲା କି ଆସି ହୃଦଗତେ
ଦୁଃଶା ଅଚେତ ହୋଇଲା ଦୈତ୍ୟ ଗଦାଘାତେ
ମୋହରେ ପଡ଼ିଲା ଯହୁଁ ବୀର ଦୁଃଶାସନ
ଅସିପତ୍ର ଯେନ ଦୈତ୍ୟ ଧାଇଁଲା ବହନ ।
କ୍ଷଣକେ ଚେତା ପାଇଲା ଧୃତରାଷ୍ଟ୍ର ବଳା
ସାଷ୍ଟାମ ହୋଇଣ ସେହୁ ତହୁଁ ପଳାଇଲା ।
ଆରେ ଆରେ ବୋଲି ଧାଇଁ ଘଟୋତ୍କଚ ବୀର
ରହ ଆରେ ଦୁଃଶା କପାଁ ଉପେକ୍ଷୁ ସମର ।
ଏହିକ୍ଷଣି ତୋତେ ମୁହିଁ ମାରନ୍ତ ରେ ଦୁଃଶା
ତୋର ରକ୍ତକୁ ଦ୍ରୌପଦୀ କରଅଛି ଆଶା ।
ତୋ ଭୁଜକୁ ଉପାଡ଼ିବେ ବୀର ଭୀମସେନ
ସେ ରକ୍ତେ ପାଞ୍ଚାଳୀ କେଶ କରିବେ ବନ୍ଧନ
ପଳାଇ ଯା ଦୁଃଶାସନ ଲୁଚ ହସ୍ତିନାରେ
ଆଉକେଳେ ନ ପଶିବୁ ଏ ମହାସମରେ ।
ଭୀଷ୍ମଦେବ ଅର୍ଜୁନ ସମର କରନ୍ତି
ଅଗଣିତ ଶର ଦୁହେଁ ବନ୍ଧାବନ୍ଧି ହୁନ୍ତି ।
ଶ୍ୱେତକୁମାର ସମର ଦ୍ରୋଣଙ୍କର ତୁଲେ
ଦିନକର ନାଥ ଆସି ମଧ୍ୟେ ବିଜେ କଲେ ।
ଭରଦ୍ୱାଜଙ୍କ ନନ୍ଦନ ସମରେ ବିମୁଖ
ବନ୍ଧ ବନ୍ଧ ଗୁରୁ ମନେ ପାଇଲେଣି ଦୁଃଖ ।
ଶ୍ୱେତ କୁମାରକୁ କେବେ ଜିଣି ନ ପାରିଲେ
କୋପେଣ ଗୁରୁ ପୁନଶ୍ଚ ଧନୁକୁ ଧଇଲେ ।
କୁହୁକ ଶର ବନ୍ଧିଲେ କୋପେ ଦ୍ରୋଣଗୁରୁ
ସୂର୍ଯ୍ୟାବର୍ତ୍ତ ଶରେ ଶ୍ୱେତ ନିବାରିଲେ ଦୁରୁ
ପୁଣି ଅଗ୍ନି ବାଣ ବିନ୍ଧୁ ଭରଦ୍ୱାଜ ସୁତ
ଜଳଧାରା ଶରେ ତାହା ନିବାରିଲେ ଶ୍ୱେତ ।
ଅଗ୍ନିର ତେଜ ହୋଇଲା ଯହୁଁ ନିବର୍ତ୍ତନ
ସର୍ବେ ପ୍ରଶଂସନ୍ତି ଶ୍ୱେତ ମହିମା ତୋ ଧନ୍ୟ
ପୁଣି ପର୍ବତାଶରକୁ ପେଷିଲେକ ଗୁରୁ
ଗର୍ଜିଣ ପର୍ବତମାନ ପଡ଼ନ୍ତି ଶୂନ୍ୟରୁ ।
କୁମାର ଦେଖିଣ ଯହୁଁ ପରବତ ବୃଷ୍ଟି
ବଜ୍ର ଶରେ ତାହା ସବୁ ଛେଦିଲା ବସିଠି ।
ଦ୍ରୋଣ ପ୍ରଶଂସନ୍ତି ଶ୍ୱେତ ମହିମା ତୋ ଧମା
କେବଣ ଲକ୍ଷଣେ ଜାତ କଲା ତୋ ଜନମା ।
ଏହା କହି ଦ୍ରୋଣ ମେଘଶରକୁ ପେଷିଲେ
ପବନା ଶରରେ ଶ୍ୱେତ ତାହା ନିବାରିଲେ ।
ପବନ ଯୋଗେ ଉଡ଼ିଣ ଗଲେ ମେଘଗଣ
ବହୁତ ପ୍ରତିଜ୍ଞା କରେ ବିରାଟ ନନ୍ଦନ ।
ପନ୍ନଗ ଶର ପୂରାଇ ପେଷିଲେକ ଗୁରୁ
ପୃଥିବୀ ପୂରିଲେ ସର୍ପେ ଅନେକର ଫେରୁ ।
ଖଗବର ବାଣେ ଶ୍ୱେତ ତାହାକୁ ନିବାରି
ଦେଖିଣ ସର୍ପେ ବିବରେ ପଶିଲେକ ଡରି ।
ସଂଗ୍ରାମ ହୁଅନ୍ତେ ବେଳ ତୃତୀୟ ପ୍ରହର
ଯୁଦ୍ଧ କରଣ ବିମୁଖ ହେଲେ ବେନ ବୀର ।
ବହୁତ ପ୍ରଶଂସା ଗୁରୁ କରନ୍ତି ଶ୍ୱେତକୁ
ବାଳୁତ କୁମର ହୋଇ ଜିଣିଲା ଆମ୍ଭଙ୍କୁ ।
ପୁଣ ଦ୍ରୋଣ ମହାରଥୀ କରି ମହାକୋପେ
ଶରେକ ତୂଣୀରୁ କାଢ଼ି ବସାଇଲେ ଚାପେ ।
ବ୍ରହ୍ମଶର ବୋଲିଟି ଯେ ଅପାଲଟ ଶର
ତାକୁ ପେଷିଲେ ଶତ୍ରୁକୁ ନିଏ ଯମଘର ।
ରୁଦ୍ରଶର ଅମୋଘ ଯେ ବଜ୍ରମୂନା ଭେଦ
ଏ ଶର ପେଷିଲେ ନଶ୍ଚେ ଶତ୍ରୁ ହୁଏ ଛେଦ ।
ଏ ଶର କାଢ଼ିଲେ ଗୁରୁ ଅପମାନ ଭୟେ
ନ ମାରିଲେ ଶତ୍ରୁକୁ ଏ ନ ଫେରେ କେବେହେଁ
ସେହି ଅସ୍ତ୍ରକୁ ଯୋଚନ୍ତେ ଚାପେ ଗୁରୁଦ୍ରୋଣ
ଦେଖୁଥିଲେ ଆକାଶରେ ରହି ଦେବଗଣ ।
ବୋଇଲେ କଣ୍ଟତ ରଣେ ଏଡ଼େ ରାଗ ହୋଇ
ବ୍ରହ୍ମ ଅସ୍ତ୍ରକୁ ଧରୁଛି କ୍ଷୁଦ୍ର କ୍ଷତ୍ରୀ ପାଇଁ ।
ରେ ନିର୍ବୋଧ ଶୁଣ କହୁଁ ଶିଶୁ ଯେହୁ ମ.ର
ପ୍ରତିଜ୍ଞା ତା ନାଶ ଯାଉ ବ୍ରହ୍ମହତ୍ୟା ସର ।
ଧିକ ତୋର ଦ୍ରୋଣ ନାମ ଧିକ କ୍ଷତ୍ରି ପଣ
ଧିକ ତୋ ବାହୁକୁ ଯାହା ଧରୁ ବ୍ରହ୍ମବାଣ ।
କୋଟିଏ ସୂର୍ଯ୍ୟର ତେଜ ସେହି ବ୍ରହ୍ମଶର
ତାହା ଦେଖି ଦେବଲୋକେ ହୋଇଲେ ଅନ୍ତର
ଅସ୍ତ୍ର ଦେଖିଣ ହାସିଲେ ଉଭୟ ସଇନ୍ୟ
ତ୍ରିପୁର ଅନ୍ତକ ପ୍ରାୟେ ଦେଖାଗଲେ ଦ୍ରୋଣ
ଗୋବିନ୍ଦ ଡାକିଲେ ଥାଇ ନନ୍ଦିଘୋଷ ରଥେ
ହେ ସାତ୍ୟକି ଆମ୍ଭ କଥା ଶୁଣ କର୍ଣ୍ଣପଥେ ।
ଦ୍ରୋଣଗୁରୁ ପେଷୁଛନ୍ତି ଏବେ ବ୍ରହ୍ମଶର
ଶ୍ୱେତର ରଥକୁ ତୁମ୍ଭେ ଘୁଞ୍ଚାଅ ସତ୍ୱର ।
ଶୁଣିଣ ସାତ୍ୟକି ବେଗେ ରଥ ଘୁଞ୍ଚାଇଲା
କୃଷ୍ଣଙ୍କ କଥନେ ରଥ ଶୂନ୍ୟଗତ ହେଲା ।

ଶ୍ୱେତ ବୋଇଲା ସାତ୍ୟକି ଭଲୁ ହୀନକର୍ମ
କିସ ଅର୍ଥେ ଛଡ଼ାଇଲୁ ମୋହର ସଂଗ୍ରାମ ।
ଜନମୁଖେ ଅଛ୍ୟୋଗ ଯୁଦ୍ଧରେ ଅଯଶ
କ୍ଷତ୍ରୀଏ ଶୁଣିଲେ ମୋତେ ବୋଲିବେଟି କିସ
ସାତ୍ୟକି ବୋଇଲା ଦ୍ରୋଣ ବ୍ରହ୍ମଅସ୍ତ୍ର କଲା
ତାହା ଦେଖି କୃଷ୍ଣଙ୍କର ଶଙ୍କା ଜାତ ହେଲା ।
ଶ୍ୱେତ ବୋଲେ ଏସନକ ନୁହଇ ସାତ୍ୟକି
ବହନ ମୋ ରଥ ନଅ ଦ୍ରୋଣଙ୍କ ଛାମୁକି ।
ରଣେ ନସତ ହୋଇ କ କ୍ଷତ୍ରୀପଣ କଲେ
ଅଯଶ ଯଶ ହୁଅଇ ରଣରେ ପଶିଲେ ।
ଶୁଣିଣ ସାତ୍ୟକି ବେଗେ ନେଲା ରଥ ବାହି
ଦ୍ରୋଣଙ୍କ ସମ୍ମୁଖେ ଶ୍ୱେତ ରଥ କଲା ନେଇ
ବ୍ରହ୍ମଅସ୍ତ୍ର ତେଜ କୋଟି ପ୍ରଜ୍ୱଳିତ ଅଗ୍ନି
ଦେଖିଣ ସାତ୍ୟକି ତେଜିଁ ପଳାଇଲା ଅବନୀ ।
ବହୁ ତୀକ୍ଷ୍ଣ ଶରମାନ ବର୍ଷିଲା ବିରାଟି
କକଡ଼ା ମାସରେ ଯଥା ଘନ ହୁଏ ବୃଷ୍ଟି ।
ସେହି ନାରାଚେ ସମସ୍ତ ଦଗ୍ଧସ୍ୟ ହୋଇଲା
ଶ୍ୱେତ କକ୍ଷେ ବ୍ରହ୍ମଅସ୍ତ୍ର ଯାଇଣ ପଡ଼ିଲା ।
କୋଟିଏ ଅଗ୍ନିର ତେଜ ସେହି ବ୍ରହ୍ମଅସ୍ତ୍ର
ପଡ଼ିଣ ଶ୍ୱେତ ବୀରକୁ କରିଦେଲା ହତ ।
ତେରଖଣ୍ଡ ସମ୍ପୂର୍ଣ୍ଣ ଯେ ବନଙ୍କର ନାଥ
ଏ ବେଳେ ବ୍ରହ୍ମଅସ୍ତ୍ରରେ ଶ୍ୱେତବୀର ହତ ।
ଆକାଶ ମାର୍ଗରେ ଥିଲେ ଯେତେ ବ୍ରହ୍ମଲୋକ
ଦ୍ରୋଣଙ୍କୁ ଧିକ୍କାର କଲେ ସର୍ବ ବୃନ୍ଦାରକ ।
ଶ୍ୱେତକୁମାର ନିଧନ ଶୁଭିଲା ସମରେ
ଜୟଶଙ୍ଖ ବଜାଇଣ ଗଲେ କୁରୁଘରେ ।
ସାତ୍ୟକିଠାରୁ ବିରାଟ ସମସ୍ତ ଶୁଣିଲେ
ଆହା ପୁତ୍ର ବୋଲି ରାଜା ଭୂମିରେ ପଡ଼ିଲେ ।
ବାବୁରେ ଶ୍ୱେତ ତୁ ଅଟୁ ଏଡ଼େ ବଳବନ୍ତ
ବାଇଣି ବରଷେ ତୁହି ଏଡ଼େକ ଶକତ ।
ମୋତେ ମରଣ ନୋହିଲା ତୋର ମୁଖ ଚାହିଁ
ସମୁଦ୍ରେ ପଡ଼ିବି ବଳା ପ୍ରାଣେ ଆଶା ନାହିଁ ।
କୁଳର ମଣ୍ଡନ ବାବୁ କେଉଁଣେ ଚାଲିଗଲୁ
ଏ ମହାଭାରତ ରଣେ ଯଶ ବୁଡ଼ାଇଲୁ ।
ଭୀଷ୍ମ ଦ୍ରୋଣଙ୍କୁ ସମରେ ତୁ ହେଲୁ ଶକତ
ସେମାନ ସୁମରି ମୋର ହୃଦେ ଗୁରୁଚିନ୍ତା ।

ବହୁତ ଶୋକ କରନ୍ତି ପାଣ୍ଡବ ସହିତ
ଶ୍ୱେତ ଥିଲେ କୌରବେ କି ଯାଆନ୍ତେ ପ୍ରାଣଘେନି
ଶଙ୍ଖ ଉତ୍ତରର ଶୋକ କେହୁ କହିପାରି
କେଉଁ କତି ଗଲୁ ଛାଡ଼ି ଅନାଥ ତୁ କରି ।
ଏପରି ଶୋକ କରନ୍ତି ଶିରେ କର ଚାଡ଼ି
ତାର ମୃତ ପିଣ୍ଡଗୋଟି ନ ପାଆନ୍ତି ଲୋଡ଼ି ।
ବେଳ ଅବଶେଷେ ଅସ୍ତ ଗଗନ ବିହାରୀ
ରହିଲେ ପାଣ୍ଡବେ ଯାଇ ବରୁଣା ନଗରୀ ।
ସ୍ନାହାନ ଭୋଜନ ନାହିଁ ଦେବାର୍ଚ୍ଚନ କିଛି
ବିରାଟକୁ ଆଶ୍ୱାସନା କରନ୍ତି ଶ୍ରୀବତ୍ସି ।
ସେହି ଦେବ ମାୟାଧର ପରମପୁରୁଷ
ଯାହାର ବାକ୍ୟ ଶୁଣିଲେ ଶୋକ ହୁଏ ଧ୍ୱଂସ
ହରି ବୋଲନ୍ତି ହେ ରାଜା ଶୋକ କି କାରଣ
କ୍ଷତ୍ରିଙ୍କୁ ଶୋକ କରିବା ଅଟଇ ଅକାରଣ ।
ତୋହର ପୁତ୍ର ଶ୍ୱେତ ଯେ ପଡ଼ିଲାକି ରଣେ
ଦେଖ ତାକୁ ଦେବେ ନିଅନ୍ତି ପୁଷ୍ପକ ବିମାନେ
ଦେବ ଦୁନ୍ଦୁଭି ବଜାଇ ତାହାର ଅଗ୍ରତେ
ଖଟନ୍ତି ଯେ ବିଳାସିନୀ ତାଣ୍ଡବର ନୃତ୍ୟେ ।
ବିଦ୍ୟାଧରୀଏ ଚାମର ତାଳବୃନ୍ତ ଧରି
କୁବେର ଅମ୍ଳାନ ବସ୍ତ୍ର ଖଟେ ନେଇକରି ।
ଦେଖ ବୋଲି ବିରାଟଙ୍କୁ ଦେଖାନ୍ତେ ଶ୍ରୀବତ୍ସ
ଆକାଶେ ଚାହିଁ ଦେଖିଲେ ବିରାଟ ପ୍ରତ୍ୟକ୍ଷ ।
ଦେଖିଣ ସାନନ୍ଦ ହେଲା ବିରାଟ ନୃପତି
ଛାଡ଼ିଲା ଶୋକଅବସ୍ଥା ମନୁ ଗଲା ଭ୍ରାନ୍ତି ।
ଯହୁଁ ସେ ଦେଖିଲା ରାଜା ଶ୍ୱେତ ପୁରୁଷାର୍ଥ
ଦୁଃଖ ଛାଡ଼ିଣ ମନରେ ହୋଇଲା ଉସତ ।
ସାଧୁ ସାଧୁ ମହିମା ଏ ଭାରତର କଥା
ସାଧୁ ସେ ଯେତେ ପଡ଼ିଲେ ଯୁଦ୍ଧେ ମହାରଥା
ଜୀବନ ତାହାଙ୍କ ଧନ୍ୟ ବଂଶ ତାଙ୍କ ଧନ୍ୟ
କୋଟି ତୀର୍ଥ ସମ ନୁହେ ଭାରତ ସମାନ ।
ବହୁ ଜପ ଅଶ୍ୱମେଧ ତୀର୍ଥ ପର୍ଯ୍ୟଟନ
ନିତ୍ୟକର୍ମ ମନ୍ତ୍ର ନାନା ଉପାଧି ବିଧାନ ।
ଅନ୍ନଦାନ ବସ୍ତ୍ରଦାନ ଗଜ ଜଳଦାନ
ରଣଯଜ୍ଞ ଦାନକୁ ଏ ନୁହଇ ସମାନ ।
ବହୁତ ପାତକ ଯେବେ ହୋଇଥାଏ ବଂଶେ
ଆପେ ତରଇ ବସାଏ ବଂଶ ସ୍ୱର୍ଗଦେଶେ ।

କ୍ଷତ୍ରିୟ ହୋଇଣ ଯେବେ ହୋଇ ଶସ୍ତ୍ରଧାରୀ
ରଣଯଜ୍ଞ କଲେ କୋଟି ଅଶ୍ୱମେଧ ସରି ।
ତେସନ ପୁତ୍ର ଗୋଟିଏ ହୋଇ ଯେବେ ବଂଶେ
କୋଟିଏ ପୁରୁଷ ଘେନି ବସେ ସ୍ୱର୍ଗଦେଶେ ।
ଗୋବର୍ଦ୍ଧନଙ୍କର ବଚନେ ମତ୍ସ୍ୟ ଅଧିପତି
କୋପକୁ ଛାଡ଼ି କରିଣ ଲଭିଲ ତୃପତି ।
ଜୟ ତୁ ଯମଦଗ୍ନିର ସୁତ ପର୍ଶୁରାମ
ରେଣୁକାର ଗର୍ଭ ଜାତ କୃତାନ୍ତକ ସମ ।
ଲଲାଟେ ହରମନ୍ଦର ଶିରେ ଜଟାଭାର
ଭୁଜେ ଅଜଗବ ଧନୁ ପର୍ଶୁ ଶୋହେ କର ।
ପୀତବର୍ଣ୍ଣର କାଛୋଟି କଟିରେ ଶୋଭିତା
ଯଜନ ଯାଜନ ଆଉ ନିଗୁଣ ପଇତା ।
ଆହାର ମୈଥୁନ ନିଦ୍ରା ଏ ତିନି ତିଆଗୀ
ବେନି କର୍ଣ୍ଣରେ କୁଣ୍ଡଳ ମହାନନ୍ଦେ ଯୋଗୀ ।
ପ୍ରଜାଙ୍କ ହିତେ ଧର୍ଣ୍ଣିକୁ ବାନ୍ଧିଲେ ଜାନୁରେ
ତେଣୁ ଜାନୁଧର୍ଣ୍ଣି ନାମ ବହିଲେ କ୍ଷିତିରେ ।
ବୀରମାନଙ୍କ ବିକ୍ରମ ନ ଦେଖି ଯେ ତୋଳେ
ସହସ୍ରବାହୁ ନାଶଗଲା ତୁମ୍ଭ କୋପାନଳେ ।
ବକାସୁର ନାଶଗଲା ଯାହା କୋପାନଳେ
ତାହାର ପାଦରେ ଏବେ ଶିର ମୋର ଲୁଟେ
ସ୍ୱରଭାଇ ମାତା ଶିର କମଳକୁ କାଟି
ପିତା ଯମଦଗ୍ନିଙ୍କର ଆଜ୍ଞାକୁ ନ ମେଣ୍ଟି ।
ପୁଣି ବିନୟେ ପିତାଙ୍କୁ ମାଗିଲେ ଯେ ବର
ମାତାସହ ଜିଆଇଲ ସ୍ୱର ସହୋଦର ।
ପିତାଶତ୍ରୁ ସହସ୍ରାର୍ଜ୍ଜୁନ ସଙ୍ଗେ ହୋଇ ବାଦୀ
ତାହାର ଶିରକମଳ ପକାଇଲ ଛେଦି ।
ମନ୍ତ୍ରଗୁରୁ ଦେବଗୁରୁ କ୍ଷତ୍ରିଙ୍କର ଗୁରୁ
ଜାତଗୁରୁ ଅଗ୍ନିଗୁରୁ ଅଟ ବିଦ୍ୟାଗୁରୁ ।
ଏକବିଂଶ ବାର ତୁମ୍ଭେ ଏ ମହୀମଣ୍ଡଳେ
ନିକ୍ଷତ୍ର କରିଲ ଦେବ ନିଜ ଭୁଜବଳେ ।
ଏକ କୁଠାରକେ ହେଲେ ସମସ୍ତେ ପ୍ରାଭବୀ
ରୁଧିର ତର୍ପଣ କରି ତୋଷିଲ ଭୈରବୀ ।
ବୈକୁଣ୍ଠ ଠାକୁର ତୁମ୍ଭେ ଦେବଙ୍କ ଦେବତା
ଅନନ୍ତ କୋଟି ପୃଥ୍ୱୀରେ ଘରକୁ ହରନ୍ତା ।
ପରିଧାନ ଯାର କୃଷ୍ଣସାର ଚର୍ମଗୋଟି
ବ୍ୟାଘ୍ର ଲଞ୍ଜ ଗୋଟି ଯାର କଟିରେ କାଛଟି ।
ପଦ୍ମାବତୀ ବଲ୍ଲଭ ଯେ ବସ୍ତୁ ତାର ବୁଝି
ଏକା ନାସ୍ତିକେ ସପ୍ତଦ୍ୱୀପ ପାରେ ସାଧି ।
ରଜତ କୁମୁଦ ଚକ୍ଷୁ ମଧ୍ୟେ କଳାଡୋଳା
ବକପନ୍ତି ଯେଉଁପରି ଦିଶେ ମେଘମାଳା ।
ବଘବମ୍ବ ତାରିଲ ଯେ ଗଜ ଖଗ ବାଦେ
ଯତି ହେଲ ପର୍ଶୁରାମ ଅବତାର ମଧ୍ୟେ ।
ଅଭିନବ ସୁନ୍ଦର ସେ ଜଳଧର ମୂର୍ତ୍ତି
ଅଜପା ସାଧନ ନାଥ କଲ୍ପାନ୍ତର ସ୍ଥିତି ।
ଆପୁର୍ଜ୍ୟୋତି ଧନୁର ଯେ ଅଟେ ଶିଶୁମୂନା
ଶୂନ୍ୟରୁଦ୍ର ଆକର୍ଣ୍ଣିତ ଯେ କବଚ ସେହ୍ଲା ।
ପରିଧେୟ ସୁବସନ ରକ୍ତବର୍ଣ୍ଣ ଆଖି
ଯାର ନୀଳାମ୍ବର ରୂପେ କମଳହିଁ ସାକ୍ଷୀ ।
ତ୍ରୈଲୋକ୍ୟ ସଞ୍ଚିତ ଯେ ବ୍ରହ୍ମାଣ୍ଡ ଶିରୋମଣି
ପରଂଗତି ଦିଏ ଯେହ୍ନ ମାଗନ୍ତେଣ ପ୍ରାଣୀ ।
ଚନ୍ଦ୍ରଅଛି ସୁଧାରସ ଯା ବଦନ ଗୋଟି
ମମ ପୁଣ୍ୟବଳେ ପ୍ରଭୁ ତାହାଙ୍କୁ ମୁଁ ଭେଟି
ତାମ୍ରମୁଖ ଅମୃତାକ୍ଷ ଅଟେ ଯାର ଦୃଷ୍ଟି
କହିଲି ମୁଁ ଶ୍ରୀଭରତ କୃଷ୍ଣଲୀଳା ଏଠି ।
ଶୂଦ୍ରମୁନି ଶାରଳା ଯେ କରଇ ବିନତି
ପର୍ଶୁରାମ ଚରଣରେ ସଦା ତାର ମତି ।

—*—

## ଷଷ୍ଠଦିନ ଯୁଦ୍ଧେ ଭୀଷ୍ମଙ୍କ ଅମୋଘ ଶକ୍ତି ପ୍ରେରଣ ଓ ଶ୍ରୀକୃଷ୍ଣଙ୍କ ଚକ୍ରଦ୍ୱାରା ତାହା ଛେଦନ ଏବଂ ବଳରାମଙ୍କ ତୀର୍ଥ ଭ୍ରମଣ

ଶୁଣ ବୈବସ୍ୱତ ମନୁ କହନ୍ତି ଅଗସ୍ତି
ଷଷ୍ଠ ଦିବସ ଯୁଦ୍ଧର ଯେଉଁପରି ସ୍ଥିତି ।
କୌରବ ପାଣ୍ଡବ ଦୁହେଁ ବଡ଼ଇ ମୁରାଟ
ସମରେ ମିଳିଲେ ଯାଇ ଦୁଇବଳ ଥାଟ ।
ହୋଇଲା ସଂଗ୍ରାମ ତହିଁ ଭୀଷ୍ମ ଅର୍ଜ୍ଜୁନର
ଅନୁକ୍ଷଣେ ବିନ୍ଧନ୍ତି ସେ ତୀକ୍ଷ୍ଣ ତୀକ୍ଷ୍ଣ ଶର ।
ଶ୍ୱେତର ମୃତ୍ୟୁ ହୁଅନ୍ତେ ସଙ୍ଗରେ ବିରାଟ
ଶଙ୍ଖ ଉତ୍ତରକୁ ଘେନି ବାହିଲା ସେ ଥାଟ ।
ସମରକୁ ବାହାରିଲେ ଦ୍ରୁପଦ ନୃପତି
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ସଙ୍ଗତେ ଅଛନ୍ତି ।
ଜରାସନ୍ଧ ସୁତ ସହଦେବ ନରପତି
ତେଇଶ ଅକ୍ଷୌହିଣୀବଳ ଅଣୀକ୍ଷୋଣୀ ହସ୍ତୀ ।

ଗଜ ଯୋଦ୍ଧା ଯେବେ ଗଲେ ପତ୍ସ୍ୱଶ ପର୍ବ୍ଦ
କଳିଙ୍ଗସେନର ଭୁଲେ ଲଗାଇଲେ ଯୁଦ୍ଧ ।
ଉଦ୍ରମଣ୍ଡଳ ରାଜା ମାନଚକ୍ରବର୍ତ୍ତୀ
ନର୍ଦ୍ଦର ଦେଶର ରାଜା ନାମ ଗଣପତି ।
ଏହି ବେନରାଜା ତହିଁ କରିଲେ ସମର
କୃତବର୍ମା ସଙ୍ଗତରେ ନୃପ ଗଣେଶ୍ୱର ।
ପଞ୍ଚାଳ ଦେଶର ରାଜା ଅନଙ୍ଗ ନୃପତି
ତା ଭୁଲେ ସମର କଲା ଭୀମ ଚକ୍ରବର୍ତ୍ତୀ ।
ହିଡ଼ମ୍ବିକା ସୁତ ଘଟୋତ୍କଚ ରାକ୍ଷସ
ଅଳମ୍ବୁଷ ଭୁଲେ ଯୁଦ୍ଧ କରେ ସେ ବିଶେଷେ ।
ଅଳାୟୁଧ ଶିଖଣ୍ଡୀର ପ୍ରବଳ ସମର
ଲେଖନ୍ତେ ଏ ନ ସରଇ ଯୁଦ୍ଧ ଅଗୋଚର ।
ସମର ସ୍ଥାନେ ପ୍ରବେଶ ପାଣ୍ଡବ ଯେ ଭୀମ
କାଳଦଣ୍ଡ ଘେନ ଯେହ୍ନେ ଆକର୍ଷଇ ଯମ ।
ବାଆନ ବାଆନ ଭାର ଗଦା ଘେନି ହସ୍ତେ
ସର୍ବେ ଅପସରି ଯାନ୍ତି ଭୀମକୁ ଦେଖନ୍ତେ ।
ଯେତେକ ଯୋଦ୍ଧା ପଡ଼ନ୍ତି ତାହାର ଆଗରେ
ପଠାନ୍ତି ଯମ ସଦନେ ଗଦା ବିଘାତରେ ।
ଭରଦ୍ୱାଜଙ୍କ ନନ୍ଦନ ଦ୍ରୋଣ ମହାରଥି
ତାଙ୍କ ଭୁଲେ ଯୁଦ୍ଧ କଲେ ଦ୍ରୁପଦ ନୃପତି ।
ଧୃଷ୍ଟଦ୍ୟୁମନ ସମର ଅଶ୍ୱତ୍ଥାମା ଭୁଲେ
ସମର ସମ୍ଭବେ ସେହି ପୃଥ୍ୱୀ କମ୍ପାଇଲେ ।
ଭୀଷ୍ମଙ୍କ ସମର କଥା କେହୁ କହିପାରି
ମୁହୂର୍ତ୍ତିକେ ଅର୍ଜ୍ଜୁନକୁ ଶରେଶର ମାରି ।
ପଣ୍ଡୁର ପୁତ୍ର ଅର୍ଜ୍ଜୁନ କକ୍ଷା ଜଗଜ୍ଜେଠି
ତାହାଙ୍କ ବାଣେ ଭୀଷ୍ମଙ୍କ ଦେହ ଗଲା ଫୁଟି ।
ଅନେକ ସମ୍ପାରେ ତହିଁ ହୁଅଇ ସମର
ଦିନକର ନାଥ ହେଲେ ଦୁଇ ଯେ ପ୍ରହର ।
ମକର ମାସେ ଆଦିତ୍ୟ ମହାତେଜ ଜ୍ୟୋତି
ଅନଳ କିରଣ ଜିଣି ଦିଶେ ଶରକାନ୍ତି ।
ଫଳେ ଫଳେ ପରତାଳ ହୁନ୍ତି ଶର ବେନ
ବରଷାର ଧାରାପରି ବହଇ ବହନ ।
ଯୁଦ୍ଧେ ବିମୁଖ ହେଲେଣି ପାର୍ଥ ମହାମତି
ତୂଣୀରୁ ଗାଙ୍ଗେୟ ତହୁଁ କାଢ଼ିଲେ ଶକତି ।
ତୂଣୀରୁ କାଢ଼ନ୍ତେ ସେହୁ ଥିଲା ଏକମୂର୍ତ୍ତି
ହସ୍ତରେ ଘେନନ୍ତେ ହେଲା ବିଂଶମୂର୍ତ୍ତି ଶକ୍ତି ।

ଧନୁର୍ଗୁଣେ ବସାଇଲେ ନେଇ ଯେତେବେଳେ
ଏକଶତ ମୂରତି ସେ ହେଲା ତେତେବେଳେ
ଆକର୍ଷଣ ଯେତେବେଳେ କଲେ ଭୀଷ୍ମ ରଥୀ
ସେ ସମୟେ ଶକ୍ତି ହେଲା ସହସ୍ର ମୂରତି ।
ଦେବତା ହେଉ ଅଥବା ଅସୁର ଯେ ହେଉ
ଏ ଶକ୍ତି ଘାତେ ବର୍ତ୍ତି ନ ପାରିବେ କେହୁ ।
ହେ ରାଜା ସେହୁ ସମୟେ ଗଙ୍ଗାଙ୍କ ତନୟ
ତ୍ରିପୁର ଅନ୍ତକ ପ୍ରାୟ ଦିଶେ ତାଙ୍କ କାୟ ।
ଯେତେବେଳେ ଛାଡ଼ି ଦେଲେ ଗଲା ସେହିଶକ୍ତି
ସେ ସମୟେ ହୋଇଲା ସେ କୋଟିଏ ମୂରତି
ସହସ୍ର ସୂର୍ଯ୍ୟ ଉଦେ କି ହେଲେ ତେଜ ଜିଣି
ତେଜରେ ଅନ୍ତର ହେଲେ ଦେବ ଦିନମଣି ।
ଦେଖି ଅପସରି ଗଲେ କୌରବ ସଇନ
ବହୁଦୂରେ ଦୁର୍ଯ୍ୟୋଧନ ରହେ ତାଙ୍କୁ ଘେନି
ପାଣ୍ଡବଙ୍କ ସୈନ୍ୟମାନେ ବେଗେ ଗଲେ ଘୁଞ୍ଚି
ଏକାମାତ୍ରକ ସେଠାରେ ଅର୍ଜ୍ଜୁନ ରହିଛି ।
ଷଡ଼ଯୂଣ ଯାଏ ଭାଜିଗଲେ ବେନବଳ
ବେନିରଥୀ ନିଶ୍ଚଳରେ ଅଛନ୍ତି କେବଳ ।
ଗୋବିନ୍ଦ ବୋଇଲେ ବାବୁ ଶୁଣ ଫାଲ୍ଗୁନ
ସଂସାର ଦହନ ଶରଦ୍ୱନ୍ଦେ ଭୀଷ୍ମ ଘେନି ।
ଏହିକ୍ଷଣି ଏ ସଂସାର ହୋଇବ ଦହ୍ୱଯ୍ୟ
କୋଟିଏ କିରଣ ଅଟେ ଯେଉଁ ଶକ୍ତି ତେଜ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି କରି
ଆଜର ଯୁଦ୍ଧରେ ପ୍ରାଣ ନ ରହେ କାହାରି ।
ଏଥିପାଇଁ ପ୍ରତିଶର ଅଛି କି ହେ ପାର୍ଥ
ସମସ୍ୟା ନ ଦେଇ ପାର୍ଥ ହୁଅନ୍ତେ ମୌନବ୍ରତ ।
ଅର୍ଜ୍ଜୁନର ମନୋଭାବ ଜାଣି ଦେବରାଜ
ଏହିକ୍ଷଣି ନନ୍ଦିଘୋଷ ହୋଇବ ଦହ୍ୱଯ୍ୟ ।
ହୃଦଗତେ ଚିନ୍ତିଲେ ଯେ ଦେବ ନାରାୟଣ
ଧାତକାରେ ପ୍ରବେଶିଲା ଚକ୍ରସୁଦର୍ଶନ ।
ଧ୍ୟାନେ ତାକୁ ଆଜ୍ଞା ଦେଲେ ଦେବ ଚକ୍ରପାଣି
ଭୀଷ୍ମଙ୍କର ଶକତିକୁ ପଳା ବେଗେ ହାଣି ।
ପାର୍ଥକୁ ଗୋଚର ଏହା ନୋହିଲା ଯୁକତେ
ହନୁମାନ ଦେଖିଲା ସେ ନନ୍ଦିଘୋଷ ରଥେ ।
ହନୁ ପ୍ରଶଂସେ ପାଣ୍ଡବେ ତୁମ୍ଭେମାନେ ଧନ୍ୟ
ପ୍ରାଣୁ ଅଧିକ ତୁମ୍ଭଙ୍କୁ କଲେ ନାରାୟଣ ।

ଅଦୃଶ୍ୟରେ ଚକ୍ର ଗଲା କରି ଶୂନ୍ୟ ଗତି
ଦହ୍ନଯ୍ୟ କରଲା ଯାଇ ଭୀଷ୍ମଙ୍କ ଶକତି ।
ଶକତି ନାଶିଣ ଚକ୍ର ହେଲା ଅନ୍ତର୍ଦ୍ଧାନ
ଦେଖିଣ ଭୀଷ୍ମ ଛାଡ଼ିଲେ ହସ୍ତୁଁ ଧନୁ ତୂଣ ।
ରଥ ଘୁଞ୍ଚାଇଣ ଯାଇ ଦୁର୍ଯ୍ୟୋଧନ ଭେଟି
ପାଣ୍ଡବେ ଶରଣ ପଶ ଆହେ ଧାର୍ତ୍ତରାଷ୍ଟ୍ରି ।
ଯଦ୍ୟପି ଯାଇ ଶରଣ ନ ପଶ ଅଥବା
ରାଜ୍ୟ ଛାଡ଼ି ପଳାଇ ତୁ ପ୍ରାଣ ରଖ ବାବା ।
ଦୁର୍ଯ୍ୟୋଧନ ବୋଲେ କିସ କାରଣେ ଏ କଥା
କହିଲ ତାହା ବୁଝାଇ କହନ୍ତୁ ସର୍ବଥା ।
ଭୀଷ୍ମ ବୋଲେ ଆରେ ଶୁଣ ଶୁଣ ଦୁର୍ଯ୍ୟୋଧନ
ପାଣ୍ଡବଙ୍କୁ ନାଶିବାକୁ କରିଥିଲ ମନ ।
ମହାତେଜା ଅନର୍ଯ୍ୟାପ ଶକତି ଧରିଣ
ମନ୍ତ୍ର ସହିତରେ ତାକୁ କଲି ମୁଁ ପ୍ରେରଣ ।
ବ୍ରହ୍ମା ରୁଦ୍ର ବରୁଣ ସେ କୁବେର ପବନ
କାହାର ବଳେ ସେ ଶକ୍ତି ନୋହେ ନିବାରଣ
ପ୍ରଥମେ ଦହନ୍ତା ସେହି ନନ୍ଦିଘୋଷ ରଥ
ଛତ୍ରଅଶ୍ୱ ଧ୍ୱଜେ ହନୁ କୃଷ୍ଣ ଆଉ ପାର୍ଥ ।
ଦ୍ୱିତୀୟେ ଦହନ୍ତା ଶକ୍ତି ପାଣ୍ଡବ ସଇନ
ଯୁଧିଷ୍ଠି ଆଦି ଆଜ କି ଯାନ୍ତେ ପ୍ରାଣ ଦେନ ।
ଅର୍ଜ୍ଜୁନର ବଳେ ତାହା ନୋହେ ନିବାରଣ
ଚକ୍ର ଧରି ଶ୍ରୀକୃଷ୍ଣ ତା ଛେଦିଲେ ଆପଣ ।
ସେହି ଯେବେ କି ନଷ୍ଟସ୍ତେ ପଶିଲେ ସମରେ
କିସ ଆଉ ସମର ଯେ ତାହାଙ୍କ ସଙ୍ଗରେ ।
ଅନନ୍ତ ବ୍ରହ୍ମାଣ୍ଡେ ଦୈତ୍ୟ ଯେ କଲେ ନିଧନ
ତାହାଙ୍କ ତୁଲେ ସମର କିବା ପ୍ରୟୋଜନ ।
ଏହା ଶୁଣି ବିସ୍ମୟ ହେଲା ମାନଚକ୍ରବର୍ତ୍ତୀ
ବଳରାମଙ୍କୁ ସ୍ମରଣ କଲେକ ତୁରିତ ।
ଆସନ କମ୍ପିଲା ଯହୁଁ ଜାଣିଲେ ମୂଷଳୀ
ଧାତକାରେ କୁରୁକ୍ଷେତ୍ର ବିଜେ ଦେବ ହଳୀ ।
କୌରବେ ପ୍ରଣାମ କଲେ ବଳରାମ ଦେଖି
ସମସ୍ତ ଯୋଦ୍ଧାଏ ଯାନବାହନ ଉପେକ୍ଷି ।
କାମପାଳଙ୍କ ଚରଣେ ସର୍ବେ ପରଣାମି
ତୁମ୍ଭ ଶରଣେ ପାଣ୍ଡବେ ଯୁଦ୍ଧ କଲୁ ସ୍ୱାମୀ ।
ବୋଇଲେ ଶ୍ରୀକୃଷ୍ଣ ତବ ଚରଣକୁ ଛୁଇଁ
ଭାରତ ସମରେ ଅସ୍ତ୍ର ନ ଧରିବ ମୁହିଁ ।

ଗତଜନ୍ମ ଦୋଷ ସେହି ଖଣ୍ଡିବା ନିମନ୍ତେ
ସାରଥି ହୋଇଣ ଥିବି ନନ୍ଦିଘୋଷ ରଥେ ।
କହିଥିଲେ ଯୁଦ୍ଧେ ଯେବେ ଶସ୍ତ୍ର ମୁଁ ଧରଇ
ଜନ୍ମେ ଜନ୍ମେ ତୁମ୍ଭ ପାଦେ ଦ୍ରୋହ ଯେ କରଇ
ସେହି କଥାମାନ ହରି ସର୍ବ କଲେ ତେଜ୍ୟା
ଆପଣେ ଚକ୍ର ଧଇଲେ ଯୁଦ୍ଧେ ଦେବରାଜା ।
ତୁମ୍ଭେ ଦେବ ପାଣ୍ଡବଙ୍କୁ ହକାର ଏକ୍ଷଣ
ତାଙ୍କୁ ପଞ୍ଚରାଜ୍ୟ ମୁହିଁ କରିବି ଅର୍ପଣ ।
ସହସ୍ରେ ପାଣ୍ଡବ ହେଲେ ନାହିଁ ମୋର ଭୀତି
କପାଇଁ କୃଷ୍ଣଙ୍କ ସଙ୍ଗେ ହୋଇବ ଅପ୍ରୀତି ।
ତୁହି ଗଦାଗୁରୁ ମୋର ଶିରେ ହସ୍ତ ଦେଲୁ
ହେ କାମପାଳ ସମୟେ ରକ୍ଷି ନ ପାରିଲୁ ।
କୃଷ୍ଣ ଆଶ୍ରୟେ ମୋ ରାଜ୍ୟ ନେଲେ ପଞ୍ଚଭ୍ରାତ
ତୁମ୍ଭଙ୍କୁ ଆଶ୍ରେକରି ମୁଁ ହୋଇଲି ଅନାଥ ।
ଏପରି କହି ଶୁତିଲେ ତହିଁ ଗଡ଼ଘାଲି
ଶିରେ ହସ୍ତଦେଇ ସର୍ବେ ହାହା ହାହା ବୋଲି
କୌରବଙ୍କର ଅବସ୍ଥା ବଳରାମ ଦେଖି
ରକତ କୁମୁଦ ପ୍ରାୟେ କଲେ ବେନି ଆଖି ।
ଡାହାଣେ ମୂଷଳ ବାମେ ବଜ୍ରର ଲଙ୍ଗଳ
ଯୋଗେଶ୍ୱର କାଦମ୍ବରୀ ପାନେ ମତ୍ତଭୋଳ ।
ମେରୁ ତୁଲ୍ୟ ଶୋଭାପାଏ ଶିରେ ସପ୍ତଫେଣି
କୋପେଣ ଗର୍ଜ୍ଜନ୍ତି ମେଘନାଦ ପ୍ରାୟେ ଜାଣି ।
ଭୟରେ ସ୍ୱର୍ଗ ତେଜିଣ ଗଲେ ବୃନ୍ଦାରକେ
କୋପ ଦେଖି କଉରବେ ରହିଲେ ନିଃଶଙ୍କେ
କାଳଚକ୍ର ପ୍ରାୟେ ବୁଲେ ତାଙ୍କ ବେନିଡୋଳ
ଆପଣେ ସଂଗ୍ରାମେ ବିଜେ ହେବ କାମପାଳ ।
ମହାପ୍ରତାପେ ଡାକନ୍ତି ସ୍ୱାମୀ ବଳଦେବ
ଆରେ ଆରେ କୃଷ୍ଣ ଆରେ ଆରେରେପାଣ୍ଡବ
ଦେଖନେ ନିର୍ଘାତ ଖସି ପଡ଼ଇ ଆକାଶୁ
ଟେକ୍ଷେ ପୃଥିବୀ କମ୍ପିଲା ବଳଦେବ ଆସୁଁ ।
ରଥଧ୍ୱଜ ପରେ ଥାଇ ହନୁ ଯେ ଡାକିଲେ
ସମ୍ଭାଳ ହୋ ପାର୍ଥ କୋପେ ରାମ ବିଜେକଲେ
ଗୋବିନ୍ଦ ଦେଖିଲେ ନନ୍ଦିଘୋଷ ରଥେ ଥାଇ
ହଳ ମୂଷଳ ବୁଲାଇ ରାମ ଛନ୍ତି ଧାଇଁ ।
ଗୋବିନ୍ଦଙ୍କ ମୁଖ ଚାହିଁ ବୋଲେ ବୃକୋଦର
କିସ ଅର୍ଥେ ପଶିଲେକ ଯୁଦ୍ଧ ମାଳାମ୍ବର ।

ଗଦା ବୁଲାଇଣ କୋପେ କାଳଦଣ୍ଡ ପାଣି
ଗର୍ଜ୍ଜେ ଭୀମ ଯେହ୍ନେ ସିଂହ ପରାକ୍ରମ ଜାଣି ।
ରାମଙ୍କ କୋପ ଦେଖିଣ କୋପେ ଧନଞ୍ଜୟ
ଶତ୍ରୁର ସଦକ୍ଷେ ଯେହ୍ନ ତାକୁ କସ ଭୟ ।
ହିଡ଼ିମ୍ବିକ ସୁତ ଘଟୋତ୍କଚ ମହାବଳୀ
ଧାମଇଁ କୋପେ ଅସୁର ଶାଳ ଶିଳ ତୋଳି
ରଥ ଉପରୁ ଡେଇଁଣ ବେଗେ ଜଗନ୍ନାଥ
ଭୀମସେନେ କୋଳାଗ୍ରତ କଲେକ ତୁରିତ ।
ଆରେ ଭୀମ ବଳଦେବେ କୋପ ତୁ ନ କର
ତାହାଙ୍କ ସହିତ ଯୁଦ୍ଧ ନୁହଇ କେଭର ।
ମୋହର ଶପଥ ତୁମ୍ଭ ସମରେ ନ ବଡ଼
ଯାନ ବାହନ ତେଜିଣ ସର୍ବେ ଶସ୍ତ୍ର ଛାଡ଼ ।
କୋଟିଏ ସିଂହର ଅଟେ ଯାର ପରାକ୍ରମ
ତାହାଙ୍କ ତୁଲେ ଆମ୍ଭର କସ ଯେ ସଂଗ୍ରାମ ।
ହନ୍ତେ ପ୍ରୟୋଜନ ନାହିଁ ତାହାଙ୍କର ତୁଲେ
ହସ୍ତି ନା ଛାଡ଼ଲେ ଯେହ୍ନ କୋପରେ ଲଙ୍ଘନେ
ଯେଉଁ ଦେବ ରଙ୍ଗାଅବତାରେ କୁତୁହଳୀ
ଜଗନ୍ନାଥ ନାଥ ସେହ୍ନ ରାମ ବନମାଳୀ ।
ଜଗତଜନ ସୋଦର ସବୁଙ୍କୁ ବୋଧିଲେ
ତାଙ୍କ ବଚନେ ସେମାନେ ଶାନ୍ତକୁ ଲଭିଲେ
ଭୀମାର୍ଜ୍ଜୁନ ଆଦି ସର୍ବେ ଛାଡ଼ିଲେକ ଶର
ଶସ୍ତ୍ରହୀନେ ପ୍ରଣମିଲେ ରାମଙ୍କ ପୟର ।
ନାରାୟଣ ପାଣ୍ଡବଙ୍କୁ ଘେନି ପୁଣି ପୁଣି
ନିଷ୍ଫଳ କରି ବହୁ କଲେକ ଦଇମା ।
କୃଷ୍ଣେ ବଳରାମ ଦେଖି ରାଗାନ୍ୱିତ ହୋଇ
କିଛୁ ନ କହି ରହିଲେ ଆୟୁଧ ବୁଲାଇ ।
ପୁଣି ତାଙ୍କ ପାଦେ ହରି ହୋଇ ନିଉଛାଳ
ବିନୟ ଭାବେ ପୁଚ୍ଛିଲେ ଦେବ ବନମାଳୀ ।
ହେ ଅନନ୍ତ ଯୋଗେଶ୍ୱର ଦେବ ହଳଧର
ଅକାରଣେ କିମ୍ପା ପ୍ରଭୁ ଏଡ଼େ କୋପ କର ।
ଭକତବତ୍ସଳ ତୁମ୍ଭେ ତୁଅ ଶାନ୍ତମୂର୍ତ୍ତି
ଦୋଷ ଅନୁରୂପେ ଦେବ ବୁଝି ଦିଅ ଶାସ୍ତି ।
ବୋଲନ୍ତି ଯେ କାମପାଳ ଶୁଣ ଚକ୍ରଧର
କୌରବଙ୍କ ସଙ୍ଗେ କିମ୍ପା କଲୁ ତୁ ସମର ।
ଆଜର ଯୁଦ୍ଧେ ବଧିବି ମୁହିଁ ପାଣ୍ଡବଙ୍କୁ
କୌରବଙ୍କ ଫେଡ଼ିବି ମୁଁ ସମସ୍ତ ଦୁରିତ ।

ଦ୍ୱାରକାରେ ନିୟମ ତୁ କଲୁ ପାଦଛୁଇଁ
ବୋଇଲୁ ସଂଗ୍ରାମେ ଶସ୍ତ୍ର ନ ଧରିବି ମୁହିଁ ।
ଆଜ ସମର ତୁ କଲୁ କିମ୍ପା ଶସ୍ତ୍ର ଧରି
ଭୀଷ୍ମଙ୍କ ଅସ୍ତ୍ର ନାଶିଲୁ ଦେବ ମଧୁହାରି ।
ଭୀଷ୍ମଙ୍କୁ ବିନ୍ଧିଲୁ ଶର ପାଣ୍ଡବେ ଆବୋରି
କହ ଦେଖି କୃଷ୍ଣଚନ୍ଦ୍ର କଲୁ ତୁ କପଟ ।
ଶ୍ରୀକୃଷ୍ଣ ବୋଲନ୍ତି ଦେବ ବୁଝି କୋପ କର
ମୁହିଁ ତ ଭୀଷ୍ମଙ୍କ ତୁଲେ ନ କଲି ସମର ।
ତୁମ୍ଭେ ଅକାରଣେ ଦେବ କୋପ ନ କରିବା
ଦ୍ରୋଣ କର୍ଣ୍ଣ ଆଦି ଛନ୍ତି ପଚାରି ବୁଝିବା
ଦ୍ୱାରକାପୁରେ ନିୟମ କରିଥିଲି ଯାହା
ତାହା ଲଙ୍ଘିଥିଲେ ଦେବ ହୋଇବି ଦୋରେହା
ପାଣ୍ଡବଙ୍କୁ କୋପ ଦେବ ତୁମ୍ଭର କି ଅର୍ଥେ
ବଜ୍ର ମୂଷଳେ ଚ୍ଛେଦନ କରି ଦେବ ମୋତେ
ଏତେ ବୋଲି କଲେ ରାମ ଚରଣେ ଦଇମା
ପୁଚ୍ଛିବା ପାଇଁକି ଗଲେ ତହୁଁ ହଳପାଣି ।
ଦ୍ରୋଣ ଭଜେ କରିଛନ୍ତି ରଥର ଉପରେ
କାମପାଳ ପଚାରିଲେ ତାହାଙ୍କୁ ସତ୍ୱରେ ।
ଆହେ ଦ୍ରୋଣ ଭୀଷ୍ମ ତୁଲେ ଯୁଝିଲେ କି ହରି
ଏହା ଦେଖିଥିଲେ ତୁମ୍ଭେ କହ ସତ୍ୟକରି ।
ବଳରାମଙ୍କ ଅଗ୍ରତେ କହିଲେକ ଦ୍ରୋଣ
ମୁହିଁ ଦେଖିନାହିଁ ଯୁଦ୍ଧ କଲେ ନାରାୟଣ ।
କର୍ଣ୍ଣଙ୍କୁ ପୁଚ୍ଛିଲେ ତୁମ୍ଭେ ଥିଲ ଆଗୁଆଣି
ଦେଖିଲ କି ହୋ ସମର କଲେ ଚକ୍ରପାଣି ।
କର୍ଣ୍ଣ ବୋଇଲା କେସନେ ମିଥ୍ୟା କହିବଇଁ
ଶ୍ରୀକୃଷ୍ଣ ହସ୍ତରେ ଶସ୍ତ୍ର ମୁହିଁ ଦେଖିନାହିଁ ।
କୃପ ଅଶ୍ୱତ୍ଥାମା ଏହି ଦୁହିଙ୍କୁ ପୁଚ୍ଛିଲେ
ଶଲ୍ୟ ଆଉ ଭୂରିଶ୍ରବା ସ୍ୱାଙ୍କୁ ପଚାରିଲେ ।
ବଳରାମଙ୍କ ଅଗ୍ରତେ କହିଲେ ସମସ୍ତେ
ଅସ୍ତ୍ର କେହି ନ ଦେଖିଲୁ ବାସୁଦେବ ହସ୍ତେ
ଦୁର୍ଯ୍ୟୋଧନଙ୍କୁ ପୁଚ୍ଛନ୍ତି ଦେବ ବଳରାମ
ତୁହି କି ଦେଖିଲୁ କୃଷ୍ଣ କରିଲେ ସଂଗ୍ରାମ ।
ବଳରାମଙ୍କୁ କହଇ ଶ୍ରୀ ମାନଗୋବିନ୍ଦ
ମୁଁ ଦେଖିନାହିଁ ଶ୍ରୀକୃଷ୍ଣ କରିବାର ଦ୍ୱନ୍ଦ୍ୱ ।
ଏକ ଦୃଷ୍ଟିରେ ମୁହିଁ ତ ତାଙ୍କୁ ଚାହିଁଥିଲି
ଶସ୍ତ୍ର ଧରିବାର ତାଙ୍କୁ କେବେ ନ ଦେଖିଲି ।

କେବେହେଁ ତ ନାରାୟଣ ସମର ନ କଲ
ମିଥ୍ୟା ନ କହିବ ଦୁର୍ଯ୍ୟୋଧନ ଯେ ବୋଇଲ
ଏ ମହାଭାରତ ଯୁଦ୍ଧେ ମିଥ୍ୟା କେ କହିବ
ଜ୍ଞାନ ଥାଉଁ ନରକକୁ କେ ବାଞ୍ଛା କରିବ ।
ଆହେ ଦେବ ହଳଧର ଦ୍ରୋହ କଲି ତୋତେ
ଭୀଷ୍ମ ରଣ କଲେ ଷଷ୍ଠ ଦିବସ ପର୍ଯ୍ୟନ୍ତେ ।
ଆଜ ଯାଏ କୃଷ୍ଣ ହସ୍ତେ ଶସ୍ତ୍ର ଦେଖି ନାହିଁ
ତୁମ୍ଭ ଆଗେ ଦେବ କେହ୍ନେ ମିଥ୍ୟା କହିବଇଁ
ଶୁଣିଣ ବିସ୍ମୟ ହେଲେ ଦେବ ହଳଧାରୀ
ଭୀଷ୍ମଙ୍କୁ ପୁଚ୍ଛିଲେ ଶସ୍ତ୍ର ଧଇଲେ କି ହରି ।
ଭୀଷ୍ମ ବୋଇଲେକ ତୁମ୍ଭେ ବିହନ୍ତା ବିଧାତା
ତୁମ୍ଭର ଛାମୁରେ ଦେବ କେ କହିବ ମିଥ୍ୟା ।
ଅମୋଘ ଶକତି ମୁହିଁ ଆକର୍ଷି ବିନ୍ଧିଲି
କୃଷ୍ଣ ଯୁଦ୍ଧ କରିବାର ନେତ୍ରେ ନ ଦେଖିଲି ।
ହେ ରାମ ଯେବଣ ଶକ୍ତି ମାଇଲି ପାର୍ଥକୁ
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ନୁହେ ତାହା ନାଶିବାକୁ
ତନ୍ହ ଛଡ଼ା ସେ ଶକ୍ତିର ନୁହଇ ବିନାଶ
ତାହା ଶୁଣି ବୋଲୁଛନ୍ତି କମଳାବିଳାସ ।
ଅର୍ଜ୍ଜୁନ କି ମୋର ଅସ୍ତ୍ର ବେଭାର ନ କରେ
ନିଜେ ଦେଖିଛ ସୁଭଦ୍ରା ହରଣ କାଳରେ ।
ଏବେ ତ ପ୍ରତ୍ୟକ୍ଷେ ସବୁ ବୁଝିଲ ଆପଣ
ଅସ୍ତ୍ର ଶସ୍ତ୍ର ଧରି ମୁହିଁ କରିବାର ରଣ ।
ଏହା ଶୁଣି ବଳଦେବ କୋପରେ ପ୍ରଜ୍ୱଳ
ଭୀଷ୍ମଙ୍କ ମୁଖକୁ ଚାହିଁ କୋପିଲେ ମୁଷଳୀ ।
ରାଗେ ଥରଥର ଊର୍ଦ୍ଧ୍ୱେ ବହଇ ନିଃଶ୍ୱାସ
ଆକର୍ଷି ଧଇଲେ ରାମ ଭୀଷ୍ମଙ୍କର କେଶ ।
ବେଗେ ବୁଲାଇ ପିଠନ୍ତେ ନେଇ ବଜ୍ରହଳ
ଧାଇଁଯାଇ ଗୋବିନ୍ଦ ଯେ ତାଙ୍କୁ କଲେ କୋଳ
ପ୍ରଭୋ ତ୍ରୈଲୋକ୍ୟ ଠାକୁର ପୃଥ୍ୱୀ ଶିରୋମଣି
ଭୀଷ୍ମଙ୍କୁ ବୃଥାରେ କପାଁ କୋପ କର ସ୍ୱାମି ।
ଦେଖୁଛ ଏ ଅଯାଚିକ ଅଯୁକ୍ତିକ ପାପୀ
ତୁମ୍ଭ ହସ୍ତେ ମଲେ ପାପୁଁ ତରିବ ଅଦ୍ୟାପି ।
ଏ ଛାରକୁ କୋପ କପାଁ କର କାମପାଳ
ଆପଣେ ଶ୍ରୀକରେ ହରି ଛଡ଼ାଇଲେ ବାଳ ।
ଦୁର୍ଯ୍ୟୋଧନ ସତ୍ୟ କଲା ତୁମ୍ଭର ପାଖରେ
ଶସ୍ତ୍ର ଧରି ନାହିଁ ମୁହିଁ ଭାରତ ସମରେ ।
ତୁମ୍ଭ ପାଦ ଛୁଇଁ ମୁହିଁ ସତ୍ୟ କରିଥିଲି
ଭାରତ ସମରେ ଅସ୍ତ୍ର ନ ଧରିବି ବୋଲି ।
ସତ୍ୟ କେବେ ଲଙ୍ଘି ନାହିଁ କହୁଛି ତୁମ୍ଭଙ୍କୁ
ରାମଙ୍କୁ ପ୍ରବୋଧି ନେଲେ ଛଡ଼ାଇ ଭୀଷ୍ମଙ୍କୁ ।
ଭୀଷ୍ମଙ୍କୁ ତେଜ୍ୟା କରିଣ ରାମକୃଷ୍ଣ ବେନି
ଚଳିଲେ ସଙ୍ଗରେ ଘେନି ଭୀମ ଫାଲ୍‌ଗୁନି ।
ମାନଗୋବିନ୍ଦ ଅଗ୍ରତେ ବୋଲନ୍ତି ଯେ ହଳୀ
ଏକଇ ସୋଦର ତୁମ୍ଭେ ନ କର ଯେ କଳି ।
ଅକାରଣେ କି ନିମନ୍ତେ କର ରଣଯାଗ
ରଣ ତ୍ୟାଗକର ଦିଅ ଯୁଧିଷ୍ଠିର ଭାଗ ।
ତୁ ପଞ୍ଚ କଟକେ ଲକ୍ଷ ଯୋଜନେ ନୃପତି
କାହିଁପାଇଁ ସମରରେ ବଳାଉଛୁ ମତି ।
ଆସ ଦୁଇଜଣଙ୍କୁ ମୁଁ ମିଳାଇଣ ଦେବି
ପଡ଼ା ଦୁଇଖଣ୍ଡ ଦେଇ ପାଣ୍ଡବେ ତୋଷିବି ।
ବଳରାମଙ୍କ ବଚନେ ବୋଲେ ଦୁର୍ଯ୍ୟୋଧନ
ତୋ ବାହାକୁ ଆଶ୍ରା କରି ଆରମ୍ଭିଲି ରଣ
ମଧ୍ୟସ୍ଥ ହେବା ପାଇଁକି ସ୍ମରିଲି କି ତୋତେ
ଏତେ ହୀନବୀର୍ଯ୍ୟ ବୋଲି ମଣିଲୁ କି ମୋତେ
ବେଳହୁଁ ନାସ୍ତି କରିଛି ମୁହିଁ ଯେଉଁ କଥା
ତୁମ୍ଭର ବଚନେ ମୁଁ ନ କରଇ ସର୍ବଥା ।
ଏହା କହି ଶଙ୍ଖନାଦ କରିଣ ଲେଉଟି
ହସ୍ତିନାପୁରେ ବିଜୟ ରାଜା ଧାର୍ତ୍ତରାଷ୍ଟ୍ରି ।
କୃଷ୍ଣ ବଳରାମ ଆଉ ବୀର ଧନଞ୍ଜୟ
ଇନ୍ଦ୍ରପ୍ରସ୍ଥେ ଯାଇଣ କରିଲେ ବିଜୟ ।
ବଳରାମ ବୋଇଲେକ ଶୁଣ ତୁ ଅଚ୍ୟୁତ
ଏ ମହାଭାରତ ତୁହି କର ସମାପତ ।
ପାଣ୍ଡବଙ୍କୁ ରକ୍ଷା କଲୁ ତୋହର ବୁଦ୍ଧିରେ
ନିଶ୍ଚୟ ନାଶ ହୋଇବେ କୌରବେ ସମରେ
ଭୀଷ୍ମ ଆଜ ଯେଉଁ ଶର କଲେକ ପ୍ରେରଣ
ତୋହ ବିନା ତାକୁ କିଏ କରନ୍ତା ବାରଣ ।
ପାଣ୍ଡବମାନଙ୍କୁ କଷ୍ଟ ପଡ଼ିବ ଯେ ବେଳେ
ଶସ୍ତ୍ର ଧରି ନବାରିବୁ ତୁହି ତେତେବେଳେ ।
ଦେବଅସ୍ତ୍ରକୁ ବିନ୍ଧିବେ ଭୀଷ୍ମ ଆଉ ଦ୍ରୋଣ
ଅଦୃଶ୍ୟେ ଚକ୍ରେ ଛେଦିବୁ ତୁ ତାହା ଆପଣ ।
ସଙ୍କଟେ ସ୍ମରିବ ମୋତେ ସେ ମାନଗୋବିନ୍ଦ
ତୋହର ମୋହର ହେବ ଅକାରଣେ ଦ୍ୱନ୍ଦ୍ୱ ।

ସମସ୍ତ ସମ୍ଭାର ମୁହିଁ ସମର୍ପିଲି ତୋତେ
ତୀର୍ଥେ ମୁଁ ଯାଉଛୁ ଯୁଦ୍ଧଶେଷ ପରଯନ୍ତେ ।
ଏପରି କୃଷ୍ଣଙ୍କୁ କହି ରେବତୀରମଣ
ସର୍ବ ତେଜ୍ୟାକରି ଗଲେ ପ୍ରୟାଗ ତୀର୍ଥେଣ ।
ଜୟ ଜୟ କାମପାଳ ରେବତୀରମଣ
ଦେବତାମାନେ ବନ୍ଦନ୍ତି ଯାହାର ଚରଣ ।
ପରମାନନ୍ଦ ପୁରୁଷ ତାହାଙ୍କ ବିହାରି
ଦୃଷ୍ଟି ବିନ୍ଦ ବାନର ଲଙ୍ଗଳେ ନବାର ।
ଅମ୍ବା ତ୍ରଳମ୍ବା କଦମ୍ବା ଯେଉଁ ସାର ତିନ
ସ୍ୟାଙ୍କୁ ସଂହର ଉଦରଅଛୁ ତୁ ମେଦନୀ ।
ସ୍ଫଟିକ ମଣ୍ଡଳ ପରେ ସପ୍ତଫଣି ସ୍ଥିତ
ପବନାଘାତେ ସେମାନେ କରୁଥାନ୍ତି ନୃତ୍ୟ ।
ଦକ୍ଷିଣେ ଲଙ୍ଗଳ ବାମେ ସୌନନ୍ଦ ମୂଷଳ
କାଦମ୍ବରୀ ପାନେ ସଦା ଘୋର ମତ୍ତ ଭୋଳ
ବିରାଜନ୍ତି ଚନ୍ଦ୍ରଚୂଡ଼ ମୁକୁଟ କୁଣ୍ଡଳ
ଷଷ୍ଠଦଶ ଲୋଚନରେ ବିରାଜେ ଉଲ୍ଲୋଳ ।
ଲୋକେଶ୍ୱର ବୁଦ୍ଧି ଯେ ଅଜପାମନ୍ତ୍ରେ ସିଦ୍ଧି
ଅଦ୍‌ଭୁତେ ମାୟା ମୁଦ୍ରାସବୁ ପାରୁ ରୁନ୍ଧି ।
ପରମାନନ୍ଦ ପୁରୁଷ ସାଧିଲୁ ଉଜାଣି
ଟେକଣ ଚଞ୍ଚଳ ଅଙ୍ଗ ନାଭିମେଳେ ଆଣି ।
କାମିନୀ କନ୍ଦର୍ପନାଥ ଅଭୟ ମେଖଳା
ପ୍ରଳୟ ଉଦ୍ଧାର ନାଥ ପ୍ରସନ୍ନ ଧବଳା ।
ଯୋଗେଶ୍ୱର ପୁରୁଷ ତୁ ସର୍ବଜନ ଚିନ୍ତା
କର୍ତ୍ତବ୍ୟ କର୍ମରେ ନାଥ ମହାବଳବନ୍ତା ।
କୋଟିଏ ମହାତୀର୍ଥର ଯେଉଁ ସ୍ୱାମୀ ମୂଳ
କୋଟି ତୀର୍ଥେଣ ପୁଷ୍କରିଯୁକ୍ତ ପାଦତଳ ।
ମୁହିଁ ମାନବ ମୋହର କିସ ଯେ ଭରସା
ବଳରାମ ଚରଣକୁ ନତି ମୋର ଆଶା ।
ରେବତୀସୁତ ଚରଣେ ସର୍ବଦା ମୁଁ ସେବି
ଶୂଦ୍ର ଶାରଳା ଦାସ ଯେ ଏଥେ କହେ ଭାବି ।

---

## ଭୀଷ୍ମ ଓ ଅର୍ଜ୍ଜୁନଙ୍କ ସପ୍ତମ ଦିନ ଯୁଦ୍ଧ

ଏଥୁଅନ୍ତେ ଜନେ ଶୁଣ ଭାରତ କାହାଣୀ
ଅଗସ୍ତିଙ୍କ ପାଖେ ବସିଥିଲେ ନୃପମଣି ।
ବ୍ରହ୍ମବେତ୍ତା ଯୋଗେଶ୍ୱର ମୁନିଙ୍କୁ ଅନାଇ
କୈବଲ୍ୟ ପବିତ୍ର ହୋଇଣ ବିନୟୀ ।
ଷଷ୍ଠ ଦିବସର ଅନ୍ତେ ହୋଇଲା ଯେ କଥା
କୃପାକର ମୁନିବର କହ ସେ ବାରତା ।
ରାଜାର ଭକତି ଦେଖି କହନ୍ତି ଅଗସ୍ତି
ଏଥୁଅନ୍ତେ ଯାହା ହେଲା ଶୁଣ ନରପତି ।
ଯହୁଁ ବଳରାମ କଲେ ପ୍ରୟାଗକୁ ବିଜେ
ପାଣ୍ଡବ ଘେନ ଜୟନ୍ତା ବିଜେ ଦେବରାଜେ
ସ୍ନାନ ନିତ୍ୟକର୍ମ ଆଦି ସାରିଲେ ମଣୋହି
ସର୍ବଯୋଦ୍ଧା ଭୀଷ୍ମ କଥା ଭ୍ରାନ୍ତି କୁହାକୁହି ।
ତିମିର ବିଦାରି ଉଦେ ହେଲେ ଦିନମଣି
ପ୍ରଭାତେ ମାନଗୋବିନ୍ଦ ଆଟକୁ ପଳାଣି ।
ଭୀଷ୍ମଙ୍କୁ ମୁକୁଟ ଦେଇ କଲେ ସେନାପତି
କର୍ଣ୍ଣ ଦ୍ରୋଣ କୃପ ଶଲ୍ୟ ସାଜିଲେକ ହାତୀ ।
ଅନେକ ନିଶାଣ ଉଡ଼େ ଟମକ ଯେ ବାଜେ
ସମଦଣ୍ଡ ସାଜ ମାନଗୋବିନ୍ଦ ଯେ ବିଜେ ।
ସମୁଦ୍ର ମନ୍ଥନେ ଯେହ୍ନେ ଯାନ୍ତି ବୃନ୍ଦାରକେ
ତେହ୍ନେପ୍ରବେଶ ହୋଇଲେ ଯୁଦ୍ଧେ ଏକେ ଏକେ
ନନ୍ଦିଘୋଷ ରଥେ ବିଜେ କଲେ ବନମାଳୀ
ଅର୍ଜ୍ଜୁନକୁ ଘେନ ଦେବ ସମରରେ ମିଳି ।
ଶ୍ୱେତ ହସ୍ତୀରେ ଆରୋହି ବିଜେ ଧର୍ମସୁତ
ଉଭାରିଲେ ଅଧୋମୁଖ ହୋଇ ଗଜଯୂଥ ।
ଅଜଗବ ଧନୁ ଧରି ବିଜେ ଗଙ୍ଗାସୁତ
ରଥ ଆରୋହଣ ଯାଇ ଭେଟିଲେକ ପାର୍ଥ ।
ଗୁଣଘୋଷ ଶବ୍ଦରେ କମ୍ପେ ଭୂମିଦେବୀ
ବାଜଇ ଯେ ବଜ୍ରଘୋଷ ଦାଉଣ୍ଡି ଦୁନ୍ଦୁଭି ।
ଗଜ ଧାମନ୍ତେ ଯୋଦ୍ଧାଏ ଶୂନ୍ୟେ ଉଡ଼େ ଧୂଳି
ଆକାଶେ ଅଦୃଶ୍ୟ ହେଲେ ଦେବ ଅଂଶୁମାଳି
ଶୁଣ ଆହେ। ମହାରାଜା ଭୀଷ୍ମଙ୍କ ମହିମା
ବିଶ୍ୱାବସୁଙ୍କ ସଦୃଶେ ଯାହାଙ୍କ ଗାରିମା ।
ଅଜଗବ ଧନୁ ଯାର ହସ୍ତେ ଶୋଭିବନ
ଟାଣି ପାର୍ଥକୁ ବିନ୍ଧନ୍ତି ତୀକ୍ଷ୍ଣ ଶରମାନ ।
ଲୋହିତାକ୍ଷ ଶର ଆଉ ଶର ତୀକ୍ଷ୍ଣ ମୁନା
ଆକର୍ଷି ବିନ୍ଧିଲେ ଭୀଷ୍ମ ଅର୍ଜ୍ଜୁନର ସେହ୍ନା ।
ପୁଣି ପଞ୍ଚବିଂଶ ବଜ୍ରମୁନା ବାଣ ଘେନ
ପାର୍ଥ ଉପରକୁ ତାହା ବିନ୍ଧିଲେକ ଟାଣି ।

ପୁନରପି ପାଞ୍ଚଶତ ପୁରାଇଣ ଶର
ଭୀଷ୍ମ ବିନ୍ଧନ୍ତେ ଦେଖିଲେ ତାହା ଚକ୍ରଧର ।
ପୁଣ ପୁଣ ଗାଙ୍ଗେୟ ଯେ ବିନ୍ଧି ତୀକ୍ଷ୍ଣ ଶର
ଦଶାଶଏ ଶର ବିନ୍ଧି ଅଶ୍ୱଙ୍କ ଉପର ।
ଆସନ୍ତ ନାରାଚମାନ ଶୂନ୍ୟପୁର ଘୋଟି
ପଞ୍ଚଷଠି ଶରେ ତାହା ଛେଦିଲେ କଷାଟି ।
ଭୀଷ୍ମଙ୍କର ବାଣମାନ ଛେଦି ସବ୍ୟସାଚୀ
ପୁନରପି ଧନଞ୍ଜୟ ଗାଣ୍ଡୀବ ଆମଞ୍ଚି ।
ପୃଥ୍ୱୀ ଟଳମଳ ହେଲ ଧନୁଗୁଣ ଘୋଷେ
ବୃନ୍ଦାରକଗଣେ ଦେଖି ହାସିଲେ ଆକାଶେ ।
କୁଠାର ଆୟୁଧ ପୁଣି ଗାଙ୍ଗେୟ ବିନ୍ଧିଲେ
କୋଦାଳ ଶରରେ ପାର୍ଥ ତାହାକୁ ଛେଦିଲେ
ପୁଣି ଗାଙ୍ଗେୟ ସହସ୍ରେ ଶର କରେ ଧରି
ଅର୍ଜ୍ଜୁନକୁ ବିନ୍ଧିଲେ ତା ଅତି କୋପକରି ।
କଙ୍କପକ୍ଷ ପରିଧାନ ଶର ତୀକ୍ଷ୍ଣମୁନା
ପାର୍ଥ ବିନ୍ଧନ୍ତେ ଭେଦିଲା ଭୀଷ୍ମଙ୍କର ସେହ୍ନା ।
ଦେଖନ୍ତେ ଅର୍ଜ୍ଜୁନ ଶର ଶାନ୍ତନୁ ନନ୍ଦନ
ପୁନଶ୍ଚ ଶତେକ ନାରାଚ ବିନ୍ଧିଲେ ଅର୍ଜ୍ଜୁନ ।
ଅନର୍ଘ୍ୟାଘ ଶର ତହୁଁ ବିନ୍ଧନ୍ତେ ଗାଙ୍ଗେୟ
ଅର୍ଜ୍ଜୁନ ନାରାଚେ ତାହା ବ୍ୟର୍ଥ ସମୁଦାୟ ।
ପଞ୍ଚଶ ନାରାଚ ଘେନ ଭୀଷ୍ମ ମହାରଥୀ
ଅରଜୁନ ଉପରକୁ ବିନ୍ଧିଲେ ଝଟତି ।
କୌମୋଦକୀ ଗଦା ଶର ଘେନ ଫାଲ୍ଗୁନ
ଭୀଷ୍ମଙ୍କ ଉପରେ ତାହା ବିନ୍ଧିଲେକ ଟାଣି ।
ଗଙ୍ଗାଙ୍କ ନନ୍ଦନ ତାହା ଦୂରରୁ ଦେଖିଲେ
କାମ୍ୟକ ପଞ୍ଚଶରରେ ତାହାକୁ ଛେଦିଲେ ।
ସମରେ ମିଳିଲେ ଆସି ଶିଖଣ୍ଡୀ କୁମାର
ଅଶ୍ୱତ୍ଥାମା ସହିତରେ କରିଲେ ସମର ।
ଦଶାଶତେ ନାରାଚକୁ ବିନ୍ଧି ଅଶ୍ୱତ୍ଥାମା
ଦୁଇବଳଙ୍କୁ ଘୋଟିଲା ଭାରତର ବ୍ରହ୍ମା ।
ଚୌଷଂଶ ନାରାଚ ଘେନ ଦ୍ରୁପଦର ବଳା
ଅଶ୍ୱତ୍ଥାମା ଉପରକୁ କୋପରେ ବିନ୍ଧିଲା ।
ପୁଣ ଚଉଷଠି ଶର ଧନୁରେ ପୁରାଇ
ଶିଖଣ୍ଡୀକୁ ଅଶ୍ୱତ୍ଥାମା ବିନ୍ଧିଲା ନଠାଇ ।
ଶିଖଣ୍ଡୀ ବିନ୍ଧିଲା କୋପେ ପାଶୁପତ ବାଣ
ନିଦାଘ କାଳରେ ଯେହ୍ନେ ଆଦିତ୍ୟ କିରଣ ।

ଦ୍ରୋଣଙ୍କ ନନ୍ଦନ ତାହା ଦେଖିଲେକ ଦୂରେ
ଛେଦିଲେ ତାହା ନିଦାଘ ବାଣ ଅନଳରେ ।
ବେନିଶର ହୋଇଲେକ ମଧ୍ୟେ ପଡ଼ିତାଳ
ଉଠିଲେକ ବହ୍ନି ତହୁଁ ଗଗନ ମଣ୍ଡଳ ।
ପୁଣି ପର୍ବତ ଶରକୁ ଘେନ ଅଶ୍ୱତ୍ଥାମା
ବିନ୍ଧନ୍ତେ ଆକାଶେ ହାସକଲେ ବେଦବ୍ରହ୍ମା ।
ପର୍ବତମାନେ ଆସନ୍ତି ହୋଇଣ ପ୍ରଚଣ୍ଡ
ଭାଜିଲେ ପାଣ୍ଡବ ଦଳ ଘୋଟିଲା ବ୍ରହ୍ମାଣ୍ଡ ।
ରଥ ଗଜ ଅଶ୍ୱ ପରେ ପଡ଼ି କରେ ଧୂଳି
ଶିଖଣ୍ଡୀ ରଖ ବୋଲିଣ ଶୁଭଇ ବୋବାଳି ।
ଦ୍ରୁପଦର ନନ୍ଦନ ସେ କଷ୍ଟ ଜାଣିଲେଟି
ବଜ୍ରଶର ପେଷିଦେଲା ପରବତ କାଟି ।
ଶିଖଣ୍ଡୀ ପେଷିଲା ତହୁଁ ପାଶୁପତ ବାଣ
ସମୁଦାୟ ପରବତ ଗଲେକ ଭାଙ୍ଗିଣ ।
ବୀରସୁନ୍ଦର ଶିଖଣ୍ଡୀ ଉଠେ ଗଳଗାଜ
ରଣେ ଯୋଦ୍ଧାମାନେ ତହୁଁ ପଳାଇଲେ ଭାଜି
ବେନିବୀରେ ଘୋରତର କରନ୍ତି ସମର
ଅସ୍ତାଚଳେ ପ୍ରବେଶିଲେ ଦେବ ଦିନକର ।
ଅତ୍ୟନ୍ତ ସମର ହେତୁ ହେଲା ମହାବାଧା
ଉଭୟ ସୈନ୍ୟଙ୍କୁ ତହିଁ ଲାଗେ ମହା କ୍ଷୁଧା ।
ବେଗେ କର୍ଣ୍ଣିକୁଠାରକୁ ଘେନିଣ ଗାଙ୍ଗେୟ
ଧନୁରେ ବସାଇଲେ ସେ ଶର ମୃତ୍ୟୁଞ୍ଜୟ ।
ସହସ୍ର କୋଟି କିରଣ ତେଜେ ପରକାଶି
ଦିଗପାଳ ଲୋକେ ତାହା ଦେଖି ମନେ ହସି
ତେଜ ଦେଖିଣ ନୟନ ବୁଜିଲେ ସମସ୍ତ
ରଥେ ଥାଇ ଅର୍ଜ୍ଜୁନର କମ୍ପେ ବେନି ହସ୍ତ ।
ଭୁଜ କମ୍ପମାନ ହେଉ କମ୍ପିଲା ଶରୀର
ନନ୍ଦିଘୋଷ କମ୍ପିଲା ଯେ ଦେଖିଲେ ଶ୍ରୀଧର ।
ନନ୍ଦିଘୋଷ ରଥ ଚକ ଅଚଳ ଅଟଇ
ଉଲ୍କାପାତ ହୋଇବାରୁ ପୃଥିବୀ କମ୍ପଇ ।
ବିଜୟ କର୍ଣ୍ଣିକୁଠାର ପଡ଼ି ଧାତକାରେ
ଦଶସହସ୍ର ଯୋଦ୍ଧା ଯେ ନାଶିଲା ସେଠାରେ ।
ରକତରେ କରଦମ ହୋଇଲା ବସୁଧା
ରଣଜୟ କରିଗଲେ ଭୀଷ୍ମ ମହାଯୋଦ୍ଧା ।
ଜୟ ଶଙ୍ଖ ବଜାଇଲେ କୌରବ ସଇନ
କାନ୍ଦୁଛେ ମାନଗୋବିନ୍ଦ ସର୍ବ ସୈନ୍ୟ ଘେନ ।

ସୈନ୍ୟଙ୍କ ହତ ଦେଖିଣ ଅର୍ଜୁନ ଦୁଃଖିତ
ଶୋକ ଅବସ୍ଥାରେ ସୈନ୍ୟ ହୁଅନ୍ତି ଆରତ ।
ପ୍ରବେଶ ପାଣ୍ଡବ ଯାଇ ଜୟନ୍ତୀ ଭୁବନ
ବିକଳରେ ଫାଲ୍‌ଗୁନ ବିରସ ବଦନ ।
ସ୍ନାନ ଦେବାର୍ଚ୍ଚନ ଆଦି ଷଟ୍‌କର୍ମ ସାରି
ସାଧୁ ହୋ ଗାଙ୍ଗେୟ ବୋଲି ସମସ୍ତେ ଉଚ୍ଚାରି
ଅନେକ ରତ୍ନ ଘେନିଣ ଦୁର୍ଯ୍ୟୋଧନ ରାଜା
ଭୀଷ୍ମଙ୍କ ସନ୍ନିଧେ ରଖି କଲା ପାଦପୂଜା ।
ସଞ୍ଜୟ କୋଇଲେ ରାଜା ଧୃତରାଷ୍ଟ୍ର ଶୁଣ
ଭୀଷ୍ମ ଆଜ ନାଶିଲେକ ବହୁତ ସଇନ୍ୟ ।
ଜୀବନ ତାହାର ଧନ୍ୟ ଧନ୍ୟ ବୀରପଣ
ଆକାଶରେ ପ୍ରଶଂସନ୍ତି ସୁର ସିଦ୍ଧଗଣ ।
ଭୀଷ୍ମଙ୍କ ପରାୟେ ରାଜା ଥିଲେ ପଞ୍ଚରଥୀ
ନବଦ୍ୱୀପ ଜିଣି ଏହୁ କରନ୍ତେ ନରପତୀ ।
ଆଜର ଯୁଦ୍ଧ ଯେ ହେଲା ଦେବେ ଅଗୋଚର
କ୍ରୋଧ ଚେଷ୍ଟା କରଣ କଲେକ ସମର ।
ଯାହା ମୁଁ ଦେଖିଲି ରାଜା ଭୀଷ୍ମ ବୀର ରଣ
ନିଶ୍ଚେ ଜାଣିଲି ପାଣ୍ଡବଙ୍କ ଘଟିବ କଷଣ ।
ଏବେ ପଣ୍ଡୁପୁତ୍ରେ ନାହିଁ ଭୀଷ୍ମଙ୍କର ଦୟା
ପଞ୍ଚରାଜ୍ୟ ଭୋଗକର ହୋଇଣ ନିର୍ଭୟା ।
ପାଇଲ ହୋ ପଞ୍ଚରାଜ୍ୟ ହୋଇଣ ନିର୍ଭୟ
ଏବେ ସେ ଜାଣିଲି ନାହିଁ ପାଣ୍ଡବଙ୍କ ଜୟ ।
ମନ୍ତ୍ରୀର ବଚନେ ରାଜା ହୋଇଲେକ ତୁଷ୍ଟ
ଭୀଷ୍ମଙ୍କୁ ବହୁ ପ୍ରଶଂସା କଲେ ଧୃତରାଷ୍ଟ୍ର ।
ହେ ମଧୁସୂଦନ ଦୁଷ୍ଟ ନିସୂଦନ କାଶ
ଛେଦନ ନ କର କପା ମୋର ପାଞ୍ଚ ଅରି ।
ସେମାନେ ମୋର ମନକୁ ଅସ୍ଥ ନ କରନ୍ତି
ସର୍ବଦା ନାନା ବିପତ୍ତି କୁପଥେ ନଅନ୍ତି ।
ତହିଁରୁ କପର ମୁହିଁ ପାଇବ ମୁକତ
ଏହି ସଦବୁଦ୍ଧି ଦିଅ ଆହେ ଜଗନ୍ନାଥ ।
ଏତିକି ପ୍ରାର୍ଥନା ତବ ଚରଣ କମଳେ
ଶାରଳାଦାସର ମତି ରହୁ ସୁନିଶ୍ଚଳେ ।

---

## ଭୀଷ୍ମଙ୍କର ଅଷ୍ଟମର୍ଦ୍ଦନ ଯୁଦ୍ଧ ଓ ଅଗ୍ନିଙ୍କଠାରୁ ଶରପ୍ରାପ୍ତି

ଏଥୁଅନନ୍ତରେ ପୁଣି ମନୁ ନରନାଥ
ଅଗସ୍ତିଙ୍କ ଶ୍ରୀଚରଣେ କରି ପ୍ରଣମିତ ।
ପୁଚ୍ଛିଲେ ଅଷ୍ଟମର୍ଦ୍ଦନ ଯୁଦ୍ଧ ସମାଚାର
କୃପାକର କହ ମୁନି ଘେନ ଭକ୍ତି ମୋର ।
ଶ୍ରୀମହାଭାରତ ଭୀଷ୍ମ ପର୍ବର ଯେ ବାଣୀ
ଶୁଣିଣ ତରିବ ଏହି ଭବତରଙ୍ଗିଣୀ ।
ଅଗସ୍ତି କହିଲେ ଶୁଣ ମନୁ ମହୀପତି
କହିବା ଅଷ୍ଟମର୍ଦ୍ଦନ ଯୁଦ୍ଧ ଯେଉଁ ରୀତି ।
ଏ ସମୟେ ଦିନମଣି ବିଜେ ଉଦେଗିରି
ଦଣ୍ଡ ସାଜ ଦଣ୍ଡ ସାଜ ବାଜଇ ମହୁରି ।
କୁରୁପତି ଶ୍ରୀଭୁଜରେ ଅର୍ଘ୍ୟ ଯେ ଘେନିଣ
ଭୀଷ୍ମଙ୍କୁ ପ୍ରଶଂସା କଲେ ବିନୟ ହୋଇଣ ।
ସାଜନ୍ତି କୌରବବଳ ଉନ୍ମତ୍ତ ହୋଇଣ
ଗଣନା କରି ନ ହୁଏ ଅପ୍ରମିତ ସୈନ୍ୟ ।
ପୌଷମାସ କୃଷ୍ଣପକ୍ଷ ପଞ୍ଚମୀର ତିଥି
ଦଣ୍ଡ ଘେନି ଯୁଦ୍ଧେ ବିଜେ ମାନଚକ୍ରବର୍ତ୍ତୀ ।
ନନ୍ଦିଘୋଷ ରଥକୁ ଯେ ସାଜିଲେ ଶ୍ରୀହରି
ରଥରେ ଯୋଚିଲେ ନେଇ ଶ୍ୱେତ ଅଶ୍ୱ ଚାରି
ଦେବଦତ୍ତ ଶଙ୍ଖ ଆଉ ପାଞ୍ଚଜନ୍ୟ ବାଜେ
ଶୁଭ ଅନୁକୂଳେ ରଣସ୍ଥାନେ କଲେ ବିଜେ ।
ନିଦାଘ ଆଦିତ୍ୟ ଜିଣି ଭୀଷ୍ମଙ୍କର ମୂର୍ତ୍ତି
ଗଗନରେ ବିରାଜଇ ତାହାଙ୍କର ଜ୍ୟୋତି ।
ନଉସହସ୍ର ବଳ ଧନୁ ଭୀଷ୍ମଙ୍କର ହସ୍ତେ
ବ୍ରହ୍ମାଣ୍ଡ କମ୍ପୁଛି ଶର ଆମଞ୍ଚିବା ମାନେ ।
ପୃଥ୍ୱୀ ଟଳ ଟଳ ହେଲା ଭୀଷ୍ମ ଗୁଣନାଦେ
ବ୍ରହ୍ମାଣ୍ଡ ପୂରିଲା ସୈନ୍ୟଙ୍କର ମୁଖଶବ୍ଦେ ।
ସହସ୍ର ଶର ଧନୁରେ ଯୋଚିଣ ଗାଙ୍ଗେୟ
କୋପେ ବିନ୍ଧେ ଯହିଁ ଛନ୍ତି ଶ୍ରୀକୃଷ୍ଣ ବିଜୟ ।
ପୁଣି ଗାଙ୍ଗେୟ ସହସ୍ରେ ନାରାଚ ପୂରାଇ
କପିକେତନ ଧ୍ୱଜକୁ ବିନ୍ଧିଲେ ନଠାଇ ।
ବଦନ୍ତି କେଶବ ତୁମ୍ଭେ ଦେଖ ଫାଲ୍‌ଗୁନ
ଦୁଇସହସ୍ର ଶର ଭୀଷ୍ମ ବିନ୍ଧିଲେ ଏକ୍ଷଣି ।
ପୁଣି ଭୀଷ୍ମ ଗୁଣେ ଯୋଚି ଦୁଇଶତ ବାଣ
ହନୁମନ୍ତ ପରେ ତାହା ବିନ୍ଧେ କରି ଟାଣ ।
ହସ୍ତର ବ୍ୟଗ୍ରତା କେହି ଦେଖି ତ ନ ପାରେ
ଆକାଶେ ଅଦୃଶ୍ୟ ହେଲେ ଗଗନ ବିହାରୀ ।
ନାରାୟଣଙ୍କ ବଚନେ ପୁଚ୍ଛିଲେ କିରୀଟୀ
ଆଦିତ୍ୟ ଅସ୍ତ ଗଲେ କି ନିଶା ଆସେ ଘୋଟି ।

ଶୁଣିଣ ଶ୍ରୀଧର ତାଙ୍କୁ ଏ ଉତ୍ତର ଦେଲେ
ସମରେ ସମ୍ମୁଖ ପାର୍ଥ ହେଲୁ କ ବୋଇଲେ ।
ଅନର୍ଯ୍ୟାପ ଶରମାନ ଗାଙ୍ଗେୟ ବନ୍ଧିଲେ
ତେଣୁକର ସୂର୍ଯ୍ୟଅସ୍ତ୍ର ପଣ୍ଡାପ୍ୟେ ବର୍ଷିଲେ ।
କପିକେତନେ ବନ୍ଧନ୍ତେ ଶର ସସ୍ତ୍ରନ
ପ୍ରତ୍ତଶରେ ଛେଦିଲେ ତା ବୀର ଫାଲଗୁନ ।
ସରଥିକ ଗ୍ରହିଁ ଲକ୍ଷେ ନାରାଚ ପୂରାଇ
ବନ୍ଧଲେ ଅୟୁତ ବାଣ ପୁଣ ବ୍ୟଗ୍ର ହୋଇ ।
ଅର୍ଜ୍ଜୁନକୁ ପେଷନ୍ତେ ସେ ଶର ଅଇବ୍ରତ
ବାବଲ ଶରେ ଛେଦିଲେ ତାହା ବୀରପାର୍ଥ ।
ସମରେ ପଶିଲା ଆସି ବୀର ବୃକୋଦର
ବିଶ୍ୱରୂପ ପ୍ରକାଶିଲା ନୃସିଂହ ପ୍ରକାର ।
ଅଧରେ ଦନ୍ତ ଚାପିଣ ଶୂନ୍ୟେ ଶିର ଲାଗି
ଦେଖିଣ କୌରବ ବଳ ପଳାଇଲେ ଭାଙ୍ଗି ।
ସୈନ୍ୟ ପଳାଅନ୍ତେ ଦୂରୁ ଦେଖିଲା ଶକୁନ
ଭୀମକୁ ଭେଟାଳେ ଯାଇ ଲକ୍ଷେଯୋଦ୍ଧା ଘେନ
ଭୀମ ଆନନ୍ଦ ହୋଇଲା ଶକୁନକୁ ଦେଖି
ବକପଲ ଦେଖି ଯେସନ୍ତେ ଧାଏଁ ଶ୍ୟେନପକ୍ଷୀ ।
ଗଦା ବୁଲାଇଣ ବେଗେ ଭୀମସେନ ଉଠି
ଶକୁନର ରଥେ ତାହା ବଜ୍ରସମ ପିଟି ।
ଗଦାର ଆଘାତେ ରଥ ଚୂର୍ଣ୍ଣ ହୋଇଗଲା
ରଥୁଁ ଡେଇଁଣ ଶକୁନ ବେଗେ ପଳାଇଲା ।
ଗଦାକୁ ପିଟିଣ ଭୀମ ଶେଷ କଲା ସୈନ୍ୟ
ପଳାଏ ଶକୁନ ଭୟେ ନରାଶ ହୋଇଣ ।
ଭୀମସେନ ଡାକେ ମାମୁଁ କ୍ଷଣେମାତ୍ର ରହ
ହାରଣ ପଳାଅ କପାଁ ନ କର ଉପାୟ ।
ଗାଡ଼େ ଯାଇ ବୃକୋଦର ରଥେ ଗଦା ପିଟି
ଆକର୍ଷିଣ ପିଟନ୍ତେ ସେ ଗଲା ଧୂଳି ଉଠି ।
ଭଜ ଯୋଦ୍ଧାଙ୍କର ରଥ ହେଉଅଛି ଧୂଳି
ବିହମିଣ ଗଦାବର ପିଟୁଅଛି ବଳୀ ।
ରଥ ସାରଥି ଯେ ଚୂନା ହାନ୍ତ ଏକେ ଏକେ
ଭୟେ ସମର ଉପେକ୍ଷି ପଳାଇଲେ ଥୋକେ ।
କରେ ଧରି ଗଜଦନ୍ତ ବୁଲାଇ ପାବନ
ଗଜଙ୍କ ଉପରେ ପିଟେ ହୋଇ ମହାତମି ।
ବେଲୁବେଳ ଗଜଙ୍କୁ ସେ ବୁଲାଇ ପ୍ରଚଣ୍ଡ
ପିଟନ୍ତେ ସେ ହୋଇ ଯାଉଛନ୍ତି ମସିଗୁଣ୍ଡ ।

ସମର ବଧାତେ ଦୂରେ ବହଇ ପବନ
ରକତରେ ପୃଥିବୀ ଯେ ହୋଇଲା କର୍ଦ୍ଦମ ।
ତାହା ଶୁଣିଣ ଶକୁନ ଆରୋହିଲା ଗଜ
ଧନୁ ଟଙ୍କାରି ଭୀମକୁ ବନ୍ଧିଲା ନାରାଜ ।
ଶର ପଡ଼ନ୍ତେ ପାତିଲା ଭୀମ ବାମଅଙ୍ଗ
ଭୀମ ଅଙ୍ଗେ ପଡ଼ି ଶର ହୋଇଗଲା ଭଙ୍ଗ ।
ତହୁଁ ଗଦା ବୁଲାଇଣ ଭୀମ କୋପାନଳେ
ଧାଡ଼କାରେ ପିଟିଲା ଯେ ହସ୍ତୀ ବକ୍ଷସ୍ଥଳେ ।
ଦାରୁଣ ପ୍ରହାରେ ହସ୍ତୀ ପଡ଼ିଗଲା କ୍ଷିତି
ପଳାଏ ଶକୁନ ତହୁଁ ହୋଇ ପାଦଗତି ।
ତହୁଁ କୋପରେ ଧାଇଁଣ ପବନ ଦୁଲାଳ
ଧାଡ଼କାରେ ଧଇଲେ ସେ ଶକୁନର ବାଳ ।
ଦକ୍ଷିଣରେ ଗଦା ବାମେ ଶକୁନର କେଶ
ବୁକୁରେ ଆଣ୍ଠୁ ଦେଇଣ କରଇ ଜିଜ୍ଞାସ ।
ଅନେକ ଅବସ୍ଥା ମାମୁଁ ହେଗିଅଛୁ ଆମ୍ଭେ
ତୋ ବୁଦ୍ଧିରେ ପଡ଼ି ମଉ ସବ କଉରବେ ।
ସୁମର ସୁମର ମାମୁଁ ତୋ ଇଷ୍ଟଦେବତା
ଡାକ କୌରବଙ୍କୁ ତୋତେ କେ ଅଛୁ ରଖିତା
ତୋର ହୃଦ ବିଦାରିବ ଏହି ନଖେ ମୋର
ପିଇଣ ଶୋଣିତ ଆଜ ତୋଷିବ ଉଦର ।
ଶକୁନ ନିଧନ ବୋଲି ଶୁଭିଲକ ଧ୍ୱନି
ମାନଗୋବିନ୍ଦ ଉଠିଲା ଏହି ବାକ୍ୟ ଶୁଣି ।
ଅନେଶତ ଭାଇଙ୍କୁ ସେ ଘେନଣ ସଙ୍ଗର
ଦୁଃଶାସନ ଭେଟିଲା ସେ ଭୀମର ଆଗର ।
ବୀର ବିକ୍ରମ ଦେଖାଇ ଯାନ୍ତେ ଦୁଃଶାସନ
ଶକୁନକୁ ଉପେକ୍ଷିଣ ଧାଏଁ ଭୀମସେନ ।
ଭୀମ ଗୁଡ଼ିଦ୍ୟନ୍ତେ ତହୁଁ ଶକୁନ ପଳାଇ
କୌରବ ସୈନ୍ୟଙ୍କ ମଧ୍ୟେ ଲୁଚିଲା ସେ ଯାଇ
ଦୁଃଶାସନ ଦୁର୍ଜ୍ଜୟ ସେ ପଳାଇଲେ ତ୍ରସ୍ତେ
ସମରେ ଗୋଳ ହୋଇଲା ଗଜ ଅଶ୍ୱ ରଥେ ।
ଧାମନ୍ତେଣ ଉଡ଼ିଲା ସେ ଚରଣର ଧୂଳି
ତିମିରରେ ଆଚ୍ଛାଦିତ ହେଲେ ଅଂଶୁମାଳି ।
ବାରଣ ନ ଗଲା ତହିଁ ପର କେ ଆପଣା
ତହିଳ ଧଡ଼ୋକାରେ ଯେ ସର୍ବେ ହେଲେ ବଣା
କେଣେ ଇନ୍ଦ୍ରପ୍ରସ୍ଥ କେଣେ ଜଇତା ବାରୁଣା
ପଥ ନ ପାଇଣ ସର୍ବେ ହୋଇଲେକ ବଣା ।

ଯାହାକୁ ଯେ ଯହିଁ ଦେଖେ ପ୍ରହାରଇ ଗଦା
ପଡ଼ିଲେକ ବହୁ ସୈନ୍ୟ ବର୍ଷିଲାକ ପଦା ।
ଗଜେ ଗଜ ପଡ଼ି ତହିଁ ହେଲେ ଛଟପଟ
ଅଶ୍ୱଙ୍କର ମୁଖ କଣ୍ଠ ଭଙ୍ଗ ଦେଲେ ଥାଟ ।
ଅଶ୍ୱେକ ଆରୋହି ତହିଁ ନକୁଳ କୁମର
ଶଲ୍ୟଙ୍କ ତୁଲେ କରିଲେ ସମର ଅପାର ।
ଅନେକ ଶର ବର୍ଷିଲେ ଶଲ୍ୟ ମହାରଥୀ
ନକୁଳର ସୈନ୍ୟମାନେ ଲଭିଲେ ବିକୃତି ।
ରାଗେ କୁମାର ମାରିଲା ନବନଶି କୁନ୍ତ
ଚନ୍ଦ୍ରପ୍ରାୟେକ ଘୂରିଲା ଶଲ୍ୟଙ୍କର ରଥ ।
ରଥରୁ ଡେଇଁ ପଡ଼ିଲେ ଶାକଲ୍ୟର ରାଜା
ବହୁତ ସମର କଲେ ମାତୁଳ ଭଣଜା ।
ରଥ ବୁଲାଇ ନକୁଳ ଦୂରେ ଫିଙ୍ଗିଦେଲା
ବେନି ଯୋଜନରେ ରଥ ପଡ଼ି ଚୂନା ହେଲା ।
ଶଲ୍ୟଙ୍କୁ ନକୁଳ କଲେ ବହୁତ କଷ୍ଟାଳ
ରଣରଙ୍ଗେ ଶଲ୍ୟଙ୍କର ଧଇଲେ ସେ ବାଳ ।
ବାମକରେ ବାଳ ଧରି ଡାହାଣେ କଟାରି
ନକୁଳ ବୋଇଲେ ଇଷ୍ଟ ସୁମର ତୋହରି ।
ତା ଦେଖି ଧାଇଁ ଅଇଲା ସହଦେବ ମନ୍ତ୍ରୀ
ମାତାଙ୍କ ଭାଇ ଏ ଆମ୍ଭ ମଉଳା ହୁଅନ୍ତି
ଏହାଙ୍କୁ ଉପେକ୍ଷା ତୁମ୍ଭେ କରିବା ହେ ଭାଇ
ପ୍ରାଣ ଘେନି ସମରୁ ଏ ଯାଆନ୍ତୁ ପଳାଇ ।
ତାହା ଶୁଣିଣ ନକୁଳ ଛାଡ଼ିଦେଲା ବାଳ
ପଳାଇଲା ଶଲ୍ୟ ରଥୀ ହୋଇ ଅସମ୍ଭାଳ ।
କନକ ରଥ ଆରୋହି ସହଦେବ ବୀର
ଅଶ୍ୱତ୍ଥାମା ସଙ୍ଗେ ଯାଇ କଲେକ ସମର ।
ମାଦ୍ରୀସୁତ ସହଦେବ ମନ୍ତ୍ରୀ ଚୂଡ଼ାମଣି
ଭୂତ ଭବିଷ୍ୟତ ବର୍ତ୍ତମାନ ସବୁ ଜାଣି ।
ସମରେ ଅନିବାରଣ ଅଟେ ଅଶ୍ୱତ୍ଥାମା
ଅସ୍ତ୍ର ପ୍ରତିଅସ୍ତ୍ର ଜାଣେ ସେହି ମହାତମା ।
ଶରେ ଶର ବନ୍ଧାବନ୍ଧ ହେଉଛନ୍ତି ବେନି
ବେନିଶର ହାକୋଡ଼ନ୍ତେ ଉଠଇ ଯେ ବହ୍ନି ।
ନକୁଳ ଦୁଃଶାସନ ଯେ ହେଲେ ଦୁହେଁ ଭେଟ
ନକୁଳ ଯେ ଏକା ଦୁଃଶା ସଙ୍ଗେ ବହୁ ଧାଟ ।
ଗାନ୍ଧାରୀ ନନ୍ଦନ କରେ ଧରି ଘେନି ଗଦା
ଦୁଇବଳ ମଧ୍ୟେ ସେହୁ ଅଟେ ମହାଯୋଦ୍ଧା ।

ଦୁହେଁ ମହାବଳବନ୍ତ କ୍ଷତ୍ରୀ ମହାମଲ୍ଲ
ପାଷାଣକୁ ଭେଦୁଅଛି ଦୁହିଙ୍କର ବୋଲ ।
ନକୁଳ ବୋଇଲା ଶୁଣ ଦେବ ଦୁଃଶାସନ
ସହୋଦର ଅନ୍ୟୋଅନ୍ୟ ହେଲୁ ଅକାରଣ ।
ଦ୍ରୌପଦୀକୁ ବିବସନ କଲୁ ସଭାତଳେ
ତାର କେଶ ଧରି ଘେନିଗଲୁ ବାହୁବଳେ ।
ଆଜଯାଏ ତାର କେଶ ରହିଛି ମୁକୁଳ
ସେହିଦିନୁ ଅବନ୍ଧନ ଅଛି ଏହା ବାଳ ।
ଉପାଡ଼ିଣ ତୋର ଦକ୍ଷ ଭୁଜ ବୃକୋଦର
ଶୋଣିତକୁ ନଉଡ଼ିବେ ଦ୍ରୌପଦୀ କେଶର ।
ତୋର ଭୁଜ ଶୋଣିତରେ କେଶକୁ ପଖାଳି
ତେବେ ସେ କେଶ ବାନ୍ଧିବେ ଦ୍ରୁପଦ ଦୁଲାଳି
ଭୀମସେନ ଠାକୁରଙ୍କ ଦୃଢ଼ବ୍ରତ ଏହି
ଆମ୍ଭର ହସ୍ତରେ ତେଣୁ ତୋର ମୃତ୍ୟୁ ନାହିଁ ।
ଗାନ୍ଧାରୀ ନନ୍ଦନ ଶୁଣି କୋପରେ ପ୍ରଜ୍ୱଳି
ଚଉଷଠି ଭାର ଗଦା ବୁଲାଇଣ ତୋଳି ।
ଯେସନେକ ବର୍ଷାକାଳେ ହୋଏ ଝଡ଼ବାତ
ସେ ବାତେ ଉଡ଼ି ପଡ଼ିଲେ ଦୂରେ ଗଜଯୂଥ ।
ମାଦ୍ରୀନନ୍ଦନ ବୁଲାଏ ନବନଶି କୁନ୍ତ
ସେ କୁନ୍ତ ଆଘାତେ ସୈନ୍ୟ ମରିଲେ ବହୁତ
ଦୁଃଶା ଉପରେ ନକୁଳ କୁନ୍ତ ପ୍ରହାରିଲା
ତାହା ଦେଖି ଦୁଃଶାସନ ଆଡ଼ ହୋଇଗଲା ।
ଦୁଃଶା ନକୁଳ ରଥରେ ଗଦାକୁ ପିଟିଲା
ନକୁଳ ସେହି ରଥକୁ ବଞ୍ଚାଇଣ ନେଲା ।
ପୁଣି କୁନ୍ତ ବୁଲାଇଣ ମାଦ୍ରୀଦେବୀ ବଳା
ରଥ ଉପରୁ ଓହ୍ଲାଇ ସତ୍ୱରେ ଧାଇଁଲା ।
ଦୁଃଶାସନ ରଥପରେ କୁନ୍ତ ନେଇ ପିଟି
ବେନିଖଣ୍ଡ ହୋଇ ଦୁଃଶା ରଥ ଗଲା ଫାଟି ।
ଦୁଃଶାକୁ ବିରଥୀ ଦେଖି ଦ୍ରୋଣି ଆବୋରିଲା
ସହଦେବ ନକୁଳର ପାଶରେ ରହିଲା ।
ନକୁଳ ଯେ ସହଦେବ ଏକ ସଙ୍ଗେ ଚଳି
ତାଙ୍କ ଆଗେ ଯୁଦ୍ଧେ କେହି ନ ପାରନ୍ତି ମିଳି
ଏହିପରି ସମର ଯେ ହେଲା ଘୋରତର
ବେଳ ଅବସାନେ ଅସ୍ତ ହେଲେ ଦିନକର ।
କୃପାଚାର୍ଯ୍ୟଙ୍କର ରଣ ଦୁର୍ଦ୍ଧର ତୁଲେ
ବହୁତ ସମର ତହିଁ ଏହି ଦୁହେଁ କଲେ ।

ଦ୍ରୋଣ ଆଉ ଦ୍ରୁପଦର ହୋଇଲା ସଂଗ୍ରାମ
ଅମାତ ରଣ କରନ୍ତି ଦୁହେଁ ଛାଡ଼ି ଧର୍ମ ।
ଉଭୟ ମଧ୍ୟେ ପଡ଼ିଲେ ବହୁତର ରଥୀ
ଅନେକ ଯେ ପାଶଦଣ୍ଡ ଅନେକ ପଦାତି ।
ଭୀଷ୍ମ ଅନ୍ଧକାର ଶର ବହୁ କଲେ ବୃଷ୍ଟି
ଅନ୍ଧକାର ଘୋଟିଅଛି ନ ଦିଶଇ ସୃଷ୍ଟି ।
ପର କେ ଆପଣା ବୋଲି ନ ପାରିଲେ ଚିହ୍ନି
ଆପଣା ଆପଣା ମଧ୍ୟେ ହେଲେ ହଣାହଣି ।
କେଣେ ଯେ ଉଦିତ କେଣେ ସୂର୍ଯ୍ୟ ଅସ୍ତଗଲା
ଏସନକ ରଣ ହେଲା ବାରଣ ନୋହିଲା ।
କାହାର ରଣେ ପଡ଼ିଲେ କେତେକେତେ ଯୋଧି
ଅନ୍ତ ନୋହିଲା ଯେ ମହାସମରେ ବିରୋଧୀ ।
ଦୁଇ ଦଳଙ୍କୁ ବାଧିଲା ସେ ଦିନର ଯୁଦ୍ଧ
ରଥୀ ଯେ ପଡ଼ିଲେ ତହିଁ ପଞ୍ଚଶ ପରାର୍ଦ୍ଧ ।
ଅଶୀ ପରାର୍ଦ୍ଧ ପଡ଼ିଲେ ଦୁଇଦଳ ସେନା
ଅଶ୍ୱଯୋଦ୍ଧା ପଡ଼ିଲେକ ନୋହିଲା ଗଣନା ।
କେହୁ ଗଣିବ ପଦାତି ପଡ଼ିଲେ ବା କେତେ
ଚାନେକ ଉଚ୍ଚ ହୋଇଲେ ଯୋଜନ ପର୍ଯ୍ୟନ୍ତେ
କ୍ଷୁଧା ପିପାସା ଭୁଲିଲେ ହେଲା ଅର୍ଦ୍ଧରାତି
ଯୁଦ୍ଧ ପରିଶ୍ରମେ ସର୍ବେ ଅଶକତ ହୋନ୍ତି ।
ଯୁକତେ ପଉଷ ମାସ ଘୋଟିଲା କୁହୁଡ଼ି
ଶୀତରେ ଯୋଦ୍ଧାଏ ଶସ୍ତ୍ର ନ ପାରିଲେ ଧରି ।
ଅତି ଶୀତ ହେତୁ ସର୍ବେ କମ୍ପିତ ହୋଇଲେ
କାର୍ମୁକରେ ଶର ଯୋଚି ବିନ୍ଧି ନ ପାରିଲେ ।
ସୈନ୍ୟମାନଙ୍କର କଷ୍ଟ ଦେଖି ଜଗନ୍ନାଥ
ପାର୍ଥଙ୍କୁ ବୋଇଲେ ଯୁଦ୍ଧ କର ହେ ସ୍ଥଗିତ ।
ଶଙ୍ଖଶବ୍ଦ କଲେ ଯହୁଁ ଦେବ କମ୍ବୁପାଣି
ରହିଲା ରଣ ଅଢ଼ାଇ ପ୍ରହର ରଜନୀ ।
ସେତେବେଳେ କାହାର ଯେ ଚେତନା ନ ଥିଲା
ସମରକ୍ଷେତ୍ରେ ଏପରି ଘଟଣା ହୋଇଲା ।
ମହାରଥୀ ରଥୀମାନେ ରଥେ ନିଦ୍ରାଯାନ୍ତି
ହସ୍ତୀମାନଙ୍କ ଉପରେ ଯୋଦ୍ଧାଏ ଘୁମାନ୍ତି ।
ଅଶ୍ୱଙ୍କ ପରେ ଶୋଇଲେ ଯୋଦ୍ଧା କୁନ୍ତ ଧରି
କେବଣ ଯୋଦ୍ଧା ଶୋଇଲେ ମଡ଼ାକୁ ଆବୋଟି
ଏହିବେଳେ ସଞ୍ଜୟଙ୍କୁ ପୁଚ୍ଛେ ଧୃତରାଷ୍ଟ୍ର
ଏତେ ରାତ ହେଲା କପାଁ ନ ଫେରିଲେ ଆଠ ।

ସଞ୍ଜୟ ବୋଇଲେ ଶୁଣ ଅମ୍ବିକାର ସୁତ
ଦୁଇଦଳ ଯୁଦ୍ଧ ଆଜ ହୋଇଲା ବହୁତ ।
ଭୀଷ୍ମ ଯେ ବିନ୍ଧିଲେ ଘୋର ଅନ୍ଧକାର ଶର
ଦିବସ ମଧ୍ୟେ ଘୋଟିଲା ଘୋର ଅନ୍ଧକାର ।
ଉଭୟ ସଇନ୍ୟମାନେ ହୋଇଲେକ ଦଣା
ଚାହିଁଣ ନ ଗଲା ତହିଁ ପର କେ ଆପଣା ।
ଆଜଦିନ ବଡ଼ ଗୋଳ ହୋଇଲା ସମରେ
ବହୁଗଜ ଅଶ୍ୱ ଯୋଦ୍ଧା ପଡ଼ିଲେ ଆଟରେ ।
ଭୀଷ୍ମ ଆଜ ଅପମାନ ବହୁତ ପାଇଲେ
ଦଶ ସହସ୍ର ରଥୀ ଆଜ ମାରି ନ ପାରିଲେ ।
ମାରି ନ ପାରିଣ ସୁଦ୍ଧା ରଣ ନ ଛାଡ଼ନ୍ତି
ରାତ୍ର ଅର୍ଦ୍ଧ ହୋଇଲାକ ରଣ ରଙ୍ଗେ ମାତି ।
ତାହା ଶୁଣି ସଞ୍ଜୟଙ୍କୁ ଧୃତରାଷ୍ଟ୍ର କହି
ଅର୍ଜ୍ଜୁନ ଜୀବନ ଧନ୍ୟ ସଂସାରେ ଅଟଇ ।
ରଥ ଗଜ ବହୁ ସୈନ୍ୟ ପଡ଼ିଲେ ଆଟରେ
ଅଗଣ୍ୟ ସୈନ୍ୟ ପଡ଼ିଲେ ସମର ଭୂମିରେ ।
ଭୀଷ୍ମ ଦେବ ଅପମାନ ପାଇଲେ ବହୁତ
ତେବେ ଜିଣି ନ ପାରିଲେ ଜୟକଲା ପାର୍ଥ ।
ଦ୍ରୋଣଙ୍କର ତହୁଁ ସର୍ବେ ବିଦ୍ୟାଶିକ୍ଷା କଲେ
ଯୁଦ୍ଧରେ ପ୍ରସିଦ୍ଧ ପାର୍ଥ ହେଲେ କେଉଁ ବଳେ ।
ସଞ୍ଜୟ ବୋଇଲେ ଶୁଣ ଶାନ୍ତନୁଙ୍କ ନାତି
ଦ୍ରୋଣଙ୍କର ବିଦ୍ୟାରେ କି ପାର୍ଥ ହନ୍ତା ଷଢି ।
ସତ୍ୟଯୁଗେ ଶ୍ୱେତ ନାମେ ରାଜା ଯାଗ କଲା
ବଶିଷ୍ଠଙ୍କୁ ସେ ଆଚାର୍ଯ୍ୟ ପଣରେ ବରିଲା ।
ଦ୍ରୋଣ ବୃଷ୍ଟିର ଆବର୍ତ୍ତ ଏହି ମେଘ ତିନ
ମୁନିବରଙ୍କର ହେଲେ ଏ ସ୍ରୁବ ପ୍ରୋକ୍ଷଣି ।
ଘୃତ ସମୁଦ୍ରରୁ ଘୃତ ଆଣି ତିନି ମେଘେ
ମୂଷଳ ଧାରେ ବର୍ଷିଲେ ନେଇ ମହାଯାଗେ ।
ଏ ବିଧିରେ ଚତୁର୍ବିଂଶ ବର୍ଷ ମହାଯାଗ
ଲଭେ ବୈଶ୍ୱାନର ଘୃତ ଖାଇଲେ ସରାଗେ ।
ମନ୍ଦାଗ୍ନି ହୋଇଣ ହେଲା ଲୁଦ୍‌ବୁଦୁ ବ୍ୟାଧି
ଇନ୍ଦ୍ରଙ୍କୁ ଅଗ୍ନି ଦେବତା ମାଗିଲେ ଔଷଧି ।
ବ୍ରହ୍ମା ବସ୍ତୁ ରୁଦ୍ର ଚନ୍ଦ୍ର ସୂର୍ଯ୍ୟଙ୍କୁ ମାଗିଲା
କେହି ତାହାକୁ ପରମ ଔଷଧି ନ ଦେଲା ।
ଅଗ୍ନି ଦେବ ଏହିପରି ଔଷଧି ଖୋଜିଲା
ସତ୍ୟ ତ୍ରେତୟା ଯାଇଣ ଦ୍ୱାପର ହୋଇଲା ।

ଏତେକାଳଯାଏ ଯତ୍ନେଁ ନ ପାନ୍ତେ ଔଷଧ
ମନ ମଧ୍ୟରେ ଅନଳ ହେଲେ ଅତି କ୍ଷୁବ୍ଧ ।
ପାର୍ଥଙ୍କ ଅଜ୍ଞାତବାସ ହୋଇଲା ଯେ କାଳେ
ଅନଳ ମନେ ବିଚାର କଲେ ତେତେବେଳେ ।
ଏ ସମୟେ ଯେବେ ମୁହିଁ ପାର୍ଥ ପାଶେ ଯିବି
ତାକୁ ଜଣାଇଲେ ନିଶ୍ଚେଁ ବ୍ୟାଧିରୁ ତରିବି ।
ଏହା ବିଚାରି ଅନଳ ବିପ୍ରରୂପ ହୋଇ
ବନେ ପାର୍ଥଙ୍କ ଅଗ୍ରତେ ମିଳିଲେକ ଯାଇ ।
ବୋଇଲେ ଦରିଦ୍ର ବିପ୍ର ଦେଖ ମୋ ଅବସ୍ଥା
ଭିକ୍ଷା ମାଗିବାକୁ ମୁହିଁ ନୁହଇ ଶକତା ।
ମୋହର ତହୁଁ ଦରିଦ୍ର ନାହିଁ ଆନ ଜନ
ମାତା ପିତା ବନ୍ଧୁ ଆଦି ନାହିଁ କେ ମୋ ଆନ
ଜନ୍ମହୁଁ ଦରିଦ୍ର ମୁହିଁ ବହୁକାଳୁ ରୋଗୀ
ଆହାର ମୈଥୁନ ନିଦ୍ରା ସବୁ ପରିତ୍ୟାଗୀ ।
ତୁମ୍ଭେ ଜଗତବନ୍ଦନ ଅଟ ମହାମଲ୍ଲ
ତୋହର ପ୍ରସାଦେ ମୋର ବ୍ୟାଧି ହେବ ଭଲ
ଶୂରବର ସୁନ୍ଦର ତୁ କକ୍ଷା ଜଗଜ୍ଜେଠି
ତ୍ରୈଲୋକ୍ୟ ପ୍ରସିଦ୍ଧ ବାବୁ ତୋର ନାମଗୋଟି
ତୋହର ଦର୍ଶନେ ମୋର ବ୍ୟାଧି ନଷ୍ଟ ପାଉ
ମୋର ସନ୍ତୋଷରେ ତୋର ଯଶ ବୃଦ୍ଧି ହେଉ
ପାର୍ଥ ବୋଇଲେକ ତୁମ୍ଭେ ଶୁଣ ଦ୍ୱିଜବର
କିପରି ଆରୋଗ୍ୟ ହେବ ତୁମ୍ଭର ଶରୀର ।
ତହୁଁ ଅଗ୍ନି ଅର୍ଜ୍ଜୁନକୁ ସତ୍ୟ କରାଇଲେ
ମୁଁ ଯାହା ମାଗିବି ତୁମ୍ଭ ଦେବୁଟିକ ଭଲେ ।
ଅଗ୍ନିଙ୍କର ଏହିପରି ବଚନକୁ ଶୁଣି
ଉର୍ଦ୍ଧ୍ୱ ହସ୍ତେ ଜଳ ଟେକିଦେଲା ସାରମଣି ।
ଅନଳ ବୋଇଲେ ତୁମ୍ଭେ ଶୁଣ ହେ ଅର୍ଜ୍ଜୁନ
ମୋର ରୋଗ ଭଲ ହେବ ଯେଉଁପରି ଜାଣ ।
ଖାଣ୍ଡବ ବନରେ ଅଛି ଆରୋଗ୍ୟ ଔଷଧି
ତା ଖାଇଲେ ଭଲ ହେବ ଲଦ୍ଧୁବୁଦୁ ବ୍ୟାଧି ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ହୁତାଶନ
ସତ୍ୟ କରାଇଣ ମୋତେ ବିହ୍ୱଳ କଷଣ ।
ନିରଞ୍ଜନରୂପୀ ବୃକ୍ଷ ଖାଣ୍ଡବ ବନରେ
ଅଣାଶୀସହସ୍ର ଯୂଥ ତା ଇନ୍ଦ୍ର ରକ୍ଷାକରେ ।
ଅନେକ ସଂଗ୍ରାମ ତହିଁ କରିବେ ମୋ ପିତା
ସତ୍ୟ କଲି ନ ଜାଣିଣ ହେ ଅଗ୍ନି ଦେବତା ।

କପଟ ରୂପେ ବୁଲୁଛୁ ମୁହିଁ ଘୋରବନେ
ଇନ୍ଦ୍ର ସଙ୍ଗେ ଯୁଝିବି ମୁଁ କେହ୍ନେ ଶସ୍ତ୍ରହୀନେ ।
ଅଗ୍ନିଦେବ ବୋଇଲେ ତୁ ଥାଅ ଏହିଠାରେ
ସବୁ ଦେବଅସ୍ତ୍ର ଆଣିଦେବି ତୋତେ ଖରେ ।
ଅର୍ଜ୍ଜୁନକୁ ରହାଇଣ ଚଳିଲେ ବହ୍ନି
ବ୍ରହ୍ମାଣ୍ଡକୁ ଭେଦିଗଲେ ବୈକୁଣ୍ଠକୁ ପୁଣି ।
ବିଷ୍ଣୁଙ୍କୁ ମାଗିଲେ ଯାଇ ନନ୍ଦିଘୋଷ ରଥ
ଶଙ୍ଖ ଗୋଷ୍ଠିଗ୍ରନ୍ଥି ଶ୍ୱେତ ଅଶ୍ୱଙ୍କ ସହିତ ।
ମନଭେଦୀ ଶର ଆଉ ନାରାୟଣ ଅସ୍ତ୍ର
ଗାଣ୍ଡିବ ଧନୁ ଆଦିର ବିଷ୍ଣୁଙ୍କର ଶସ୍ତ୍ର ।
ଏ ସକଳ ଅସ୍ତ୍ର ନେଇ ଚଳିଲେ ବହ୍ନି
ଶିବପୁରେ ଯିବାପାଇଁ ବିଚାରିଲେ ପୁଣି ।
ତହୁଁ ଚଳିଗଲେ ଅଗ୍ନି କୈଳାସ ପର୍ବତେ
ରୁଦ୍ରଙ୍କୁ ମାଗିଲେ ବ୍ୟାଧି ଆରୋଗ୍ୟ ନିମନ୍ତେ ।
ପାଶୁପତ ଶର ଆଉ ପିନାକ କାର୍ମୁକ
ହରଷରେ ସଦାଶିବ ଦେଲେ ଯେ ଏତେକ ।
ଅକ୍ଷୟ ତୂଣ ଯେ ବେନି ମାଗନ୍ତେ ଉମାଙ୍କୁ
ସନ୍ତୋଷରେ ତାହା ଆଣି ଦେଲେ ଅନଳଙ୍କୁ ।
ବ୍ରହ୍ମାଙ୍କୁ ମାଗିଲେ ଯାଇ ଅଗ୍ନି ବ୍ରହ୍ମଶକ୍ତି
ସେହି ଶକ୍ତି ସମର୍ପିଲେ ତାଙ୍କୁ ବେଦପତି ।
ବୈଶ୍ୱାନର ବିଜେ କରି ନନ୍ଦିଘୋଷ ରଥେ
ସପ୍ତ ବ୍ରହ୍ମାଣ୍ଡ ବୁଲିଲେ ସେ କ୍ଷଣକ ମାତ୍ରେ ।
ଇନ୍ଦ୍ରଦେବଙ୍କୁ ମାଗିଲେ ସେ ଇନ୍ଦ୍ର ଶକତି
ପର୍ବତାସ୍ତ୍ର ଦେଲେ ହିମବନ୍ତ ନରପତି ।
ନିର୍ଘାତକୁ ମାଗିଲେ ସେ ମେଘଶସ୍ତ୍ର ବାଣ
ଅଗ୍ନି ଶର ବଜ୍ରଚୌଶି ଦେଲେ ତତକ୍ଷଣ ।
ଆଦିତ୍ୟଙ୍କୁ ମାଗିଲେ ଯେ ଚନ୍ଦ୍ର ସୂର୍ଯ୍ୟାବର୍ତ୍ତ
ହେମ ଶର ଦେଲେ ପୁଣି ଇନ୍ଦ୍ର ଦଇବତ ।
କୁବେରଠୁଁ ରତ୍ନାବଳୀ ଗଦା ମାଗିନେଲେ
ଏକ ରଥକେ ସପତ ବ୍ରହ୍ମାଣ୍ଡ ବୁଲିଲେ ।
ପବନାଶର ମାଗିଲେ ପବନ ଦେବଙ୍କୁ
କାଳପାଶ ମାଗିଲେ ଯେ କୃତାନ୍ତ ଦେବଙ୍କୁ ।
ବରୁଣ ଦେବତାଠାରୁ ନେଇ ଜଳପାଶୀ
ଅନନ୍ତଙ୍କଠାରୁ ନେଲେ ନାଗପାଶ ଆସି ।
କଉଶିକ ଶର ଦେଲେ ଅଶ୍ୱିନୀକୁମାର
ପୃଥ୍ୱୀଭେଦ ଶର ଦେଲେ ପୁଂସ ଅସ୍ତ୍ର ବର ।

ସଞ୍ଜୟ କହିଲେ ଶୁଣ ରାଜା ଧୃତରାଷ୍ଟ୍ର
ନିଦଶ ଦେବେ ଜାଣନ୍ତି ଅଗ୍ନିଙ୍କର କଷ୍ଟ ।
ଦେବତାଙ୍କୁ ମାଗୁଁ ଅଗ୍ନି ଆରୋଗ୍ୟ ନିମନ୍ତେ
ସର୍ବ ଦେବତାଏ ଅସ୍ତ୍ର ଦେଲେ ତୋଷ ଚିତ୍ତେ ।
କଉତୁକେ ମାଗିଆଣି ସେହି ଶରମାନ
ଅର୍ଜ୍ଜୁନ ପାଶେ ମିଳିଲେ ଆସି ହୁତାଶନ ।
ବୋଇଲେ ଆମ୍ଭ କଲ୍ୟାଣେ ସୁଖୀ ହୁଅ ପାର୍ଥ
ଏହି ଶସ୍ତ୍ରମାନ ତୋତେ ହେଉ ପରାପତ ।
ଅରଜୁନ ଆରୋହିଲା ନନ୍ଦିଘୋଷ ରଥ
ମାତଳିକୁ ଆଣି ଦେଲେ ଅଗ୍ନି ଦଇବତ ।
ଖାଣ୍ଡବ ବନକୁ ଗଲେ ଅଗ୍ନି ପାର୍ଥ ଜେନ
ପାର୍ଥକୁ ଛୁହାଇ କନେ ଲଗିଲେ ଦହନ ।
ଊଣାଇଶସସ୍ର ଯୁଣ ଖାଣ୍ଡବର ସ୍ଥଳୀ
ଅଶୀସସ୍ର ସ୍ବରଶତ ବୃକ୍ଷ ଅଛି ପୂରି ।
କ୍ଷୁଦ୍ରବୃକ୍ଷ ଯେତେ କେହୁ କରିବ ଗଣନ
ସମସ୍ତ ଅଗ୍ନିଦେବତା କରିଲେ ଦହନ ।
ଜାଣି ଅସଂଖ୍ୟ ସମର କଲା ମଘବାନ
ଯୁଦ୍ଧ ନ ସରିଲା ତିନରାତ ତିନଦିନ ।
ଯକ୍ଷ ଗନ୍ଧର୍ବ ଚାରଣ ଦେବ ସଙ୍ଗେ ଘେନ
ଅର୍ଜ୍ଜୁନକୁ ହାରିଗଲେ ରଣେ ସସ୍ତ୍ରଯୋନ ।
ସୁଖରେ ଭକ୍ଷଣ କରେ ଅଗ୍ନି ମହୌଷଧି
ନିର୍ମଳଙ୍କ ହେଲା ଅଙ୍ଗ ଗଲା ତାଙ୍କ ବ୍ୟାଧି ।
ଖାଣ୍ଡବବନ ସମସ୍ତ ଦହନ ହୋଇଲା
ଶୋଷକ ସର୍ପ ବକରେ ଗୋପ୍ୟ ହୋଇଥିଲା ।
ଶୂନ୍ୟେ ରହିଲା ଚାରକ୍ଷୀ ନାମରେ ଯେ ପକ୍ଷୀ
ଅଗ୍ନି ରାଜ ବୃକ୍ଷଗୋଟି ମାନ ରହିଅଛି ।
ଭୁଞ୍ଜିଣ ତୁଷ୍ଟ ହୋଇଲେ ଦେବ ବୈଶ୍ୱାନର
ପାର୍ଥକୁ ବୋଇଲେ ତୋଷେ ମାଗ ମୋତେ ବର
ତୋ ଯୋଗୁ ଶାନ୍ତ ହେଲା ମୋ ତିନିଯୁଗ ବ୍ୟାଧି
ତୋହର ମନର ବାଞ୍ଛା କରିବି ମୁଁ ସିଦ୍ଧି ।
ପାର୍ଥ ବୋଇଲେ କି ବର ମାଗିବି ମୁଁ ତୋତେ
ଜାଣି ସବୁ ଅନୁଗ୍ରହ କର ଦେବ ମୋତେ ।
ତାହା ଶୁଣିଣ ଆନନ୍ଦ ହେଲେ ବୈଶ୍ୱାନର
ଯେତେ ଅସ୍ତ୍ର ଆଣିଦେଲ ରହୁ ତୋର କର ।
ତଳହସ୍ତ କରିଣ ଯେ ମାଗିଲେ ଅର୍ଜ୍ଜୁନ
ଊର୍ଦ୍ଧ୍ୱହସ୍ତ କରିଦେଲେ ଦେବ ହୁତାଶନ ।

ନୃପତି ଲଭିଣ ତହୁଁ ଅନଳ ବୋଇଲେ
ବ୍ରହ୍ମା ବିଷ୍ଣୁ ଆଦି ସମ ନୋହିବେ ତୋ ତୁଲେ
ଅନେକ କାଳର ବ୍ୟାଧି ଗଲା ତୋ ଯୋଗରେ
କୋଟି ବ୍ରହ୍ମାଣ୍ଡର ଜିତା ହୁଅ ତୁ ସମରେ ।
ବାଞ୍ଛାଫଳ ଦେଇ ତହୁଁ ଅଗ୍ନି ଚଳିଗଲେ
ସେ ଅସ୍ତ୍ରମାନଙ୍କୁ ପାର୍ଥ ତୂଣୀରେ ରଖିଲେ ।
ସଞ୍ଜୟ କହିଲେ ଶୁଣ ରାଜା କୁରୁସାଇଁ
ତେଣୁ ପାର୍ଥ ସମସ୍ତଙ୍କୁ ସମରେ ଜିଣଇ ।
ତୁମ୍ଭେ ଯେ ବୋଇଲ ଏକା ଦ୍ରୋଣଙ୍କର ବିଦ୍ୟା
ତହିଁରେ କି ହୋଇଅଛି ପାର୍ଥ ଏତେ ଯୋଦ୍ଧା
ଅଷ୍ଟମ ଦିବସ ଆସି ସମାପ୍ତ ହୋଇଲା
ଭୀଷ୍ମଙ୍କର ପ୍ରତିଜ୍ଞା ଯେ ବ୍ୟର୍ଥ ହୋଇଗଲା ।
ଆଉ ରଣ କରିବାକୁ ଅଛି ଦେବନନ୍ଦନ
ଏଥିରେ କି ରାଜା ତୁମ୍ଭେ ହେବ ଯଶସ୍ୱାନ ।
ସଞ୍ଜୟ କହନ୍ତେ ଏହା ପ୍ରସରିଲା ରାତି
ଦଣ୍ଡ ସାଜ ବୋଲି ଆଜ୍ଞା ଦେଲେ କୁରୁପତି ।
ରାଜା ଆଜ୍ଞାରେ ସାଜିଲେ ତହୁଁ ସମଦଣ୍ଡ
ଘୋର ବାଦ୍ୟ ଶବଦରେ କମ୍ପଇ ବ୍ରହ୍ମାଣ୍ଡ ।
ସାଜନ୍ତି ଯୋଦ୍ଧାଏ ରଥ ଗଜ ଯେ ତୁରଙ୍ଗ
କଟେସ୍ତେ ମନ୍ତ୍ରିଣ ରଥ ଚଳାଇଲେ ବେଗ ।
ଦିନକର ନାଥ ଉଦେ ହୋଇଲେ ପୂର୍ବରେ
ଅରୁଣ ପ୍ରକାଶ ପ୍ରାପ୍ତ ରକତ ବର୍ଣ୍ଣରେ ।
ସଂଜ୍ଞାର ବଲ୍ଲଭ ନାଥ ପୃଥ୍ୱୀଜନ ଚିନ୍ତା
ଅର୍କଦୈତ୍ୟ ନିସୂଦନ ବିହନ୍ତା ବିଧାତା ।
ମେଘନାଦ କାଳମେଘ ମେଘ ପିଙ୍ଗରୁଚି
ବୃଦ୍ଧଶ୍ରବା ସିଦ୍ଧଶ୍ରବା ଅଶ୍ୱସେନ ଯୋତି ।
ଏହି ସପ୍ତଅଶ୍ୱେ ତୋର ରଥେ ଯୋଗୁଛନ୍ତି
ନିମିଷକ ମଧ୍ୟେ କୋଟି ବ୍ରହ୍ମାଣ୍ଡ ଭ୍ରମନ୍ତି ।
ଶୂନ୍ୟେ ବିଚରଣ କର ଅର୍କ ନିସୂଦନ
ଦିଗମ୍ବର ପୁରୁଷ ତୁ ଦେବ ନିରଞ୍ଜନ ।
କରଇ ପ୍ରାର୍ଥନା ମୂର୍ଦ୍ଧ୍ନି ବିନୟ ଯୁକତେ ,
ଭକତବତ୍ସଳ ସ୍ୱାମୀ କୃପା କର ମୋତେ ।
ପ୍ରଭାତେ ଉଦୟନାଥ ଉଦୟ ପର୍ବତ
ମେରୁ ପ୍ରଦକ୍ଷିଣ କରି ପଶ୍ଚିମରେ ଅସ୍ତ ।
ପରମାନନ୍ଦ ପୁରୁଷ ଜଗଜ୍ଜନ ଗୁରୁ
ତୁମ୍ଭ ବିନା ଆଦ୍ୟ ଅନ୍ତ ଜଗତରେ କରୁ ।

ଜୟ ହେ ଅଭୟ ବରଦାତା ଦିନକର
ସୁରସିଦ୍ଧ ମୁନିମାନେ ଭକତ ତୋହର ।
ସତ୍ୟ ଶଉର୍ଯ୍ୟ ପ୍ରଭୃତି ସ୍ଥାବର ଚୈତାନ
ଶୂନ୍ୟରୁ ଜନମ କରୁ ସମସ୍ତ ନିର୍ମାଣି ।
ଭଜଇ ମୁଁ ଅହର୍ନିଶି ତୁମ୍ଭ ପଦ୍ମପାଦେ
ମୁକତି ଲଭିବାପାଇଁ ତୁମ୍ଭର ପ୍ରସାଦେ ।
ଶ୍ରୀଭାସ୍କର ଦେବଙ୍କର ଚରଣେ ଦଇମା
ମୁକତି ଇଚ୍ଛେ ଶାରଳା ଦାସ ଶୂଦ୍ରମୁନି ।

---

## ଭୀଷ୍ମଙ୍କର ନବମ ଦିନ ଯୁଦ୍ଧ ଓ ଦୁର୍ଯ୍ୟୋଧନ ନିକଟରୁ ଅର୍ଜୁନ ଦ୍ୱାରା ଅନର୍ଘମଣି ମୁକୁଟ ଆନୟନ

ତିଲଙ୍ଗ ଦେଶର ରାଜା ମନୁ ନରପତି
ଅଗସ୍ତିଙ୍କ ପାଦେ କଲେ ବିନୟେ ଭକତି ।
ଅନୁଗ୍ରହ କର ତୁମ୍ଭେ ଋଷି ବ୍ରହ୍ମବେତ୍ତା
ପ୍ରଳୟରୁ ବଞ୍ଚାଇବାକୁ ତୁମ୍ଭେ ଯେ ଶକତା ।
ବାଲ୍ୟତ କାଳରେ ତୁମ୍ଭେ ଖେଳ କୁତୁହଳେ
ବାରିନିଧିକୁ ଚଣ୍ଡୂଷ କଲ ମନ୍ତ୍ରବଳେ ।
ଏ ମହାଭାରତ ଅଟେ ଅଦ୍ଭୁତ ଅଶ୍ରୁତି
ସଂସାର ଜନଙ୍କୁ ଦେଲ ତୁମ୍ଭେ ଗତି ମୁକ୍ତି ।
କପରି ସଂଗ୍ରାମ କଲେ ଭୀଷ୍ମ ନବଦିନ
ଏହା ସଂକ୍ଷେପିଣ ମୋତେ କହନ୍ତୁ ଆପଣ ।
କହନ୍ତି ଅଗସ୍ତି ମୁନି ମହା ବ୍ରହ୍ମବେତ୍ତା
ଶୁଣ ଆହେ ବୈବସ୍ୱତ ମନୁ ମହାଶ୍ରୋତା ।
ଅଷ୍ଟମ ଦିବସ ଅନ୍ତେ ପାଣ୍ଡବ ସଇନ
ଭୀଷ୍ମଙ୍କୁ ଜିଣିବାପାଇଁ କଲେ ଶଙ୍ଖଧ୍ୱନି ।
ସାଜନ୍ତି ସେ ନନ୍ଦିଘୋଷ ନିଦଶର ପତି
ସୁରସିଦ୍ଧ ମୁନିମାନେ ଯାକୁ ସଦା ଚିନ୍ତି ।
ସେ ସ୍ୱାମୀ ରଥେ ବିଜୟ ଶଙ୍ଖ ଚକ୍ରଧାରୀ
ଆକାଶେ ଗମନ୍ତି ଶଙ୍ଖଆଦି ଦିବ୍ୟସ୍ୱର ।
ଦିବ୍ୟ ମୂରତି ଯତିଧର୍ମ୍ୟଙ୍କର ନାଥ
ଚଳନ୍ତି ପାଣ୍ଡବବଳ ପଶ୍ଚିମ ମୂରତି ।
ବାଜଇ ଯେ ବୀରତୂର ଟମକ ଡାଉଣ୍ଡି
ଅନେକ ରଥେ ଯୋଦ୍ଧାଙ୍କ ରଥମାନ ମଣ୍ଡି ।
ପୂର୍ବରେ ପାଣ୍ଡବବଳ ପଶ୍ଚିମେ କୌରବ
ଆଗୁଆଣି ଥାଟେ ସଜେ କଲେ ଭୀଷ୍ମଦେବ ।
ଚଉବର୍ଣ୍ଣୀ ହସ୍ତ ଦଳ ଅଜଟଳ ଟେନୁ
ଦିସ୍ୱାର୍ଜୁନ ରଥେ ଚଢେ ଶାନ୍ତନୁଙ୍କ ସୂନୁ ।
ପାଣ୍ଡବଙ୍କ ବର୍ଷ୍ଣ ଯେହ୍ନେ ଅଗ୍ନି ତେଜ ଦିଶି
ଖାଣ୍ଡବ ଦହନେ ଯେହ୍ନେ ଅଗ୍ନି ତେଜରାଶି ।
ସେହିପରି ଭୀଷ୍ମଙ୍କର ତେଜ ଯେ ପ୍ରକାଶି
ଦେହି ହଦୃଶେ ପାର୍ଥର ତେଜ ଉତ୍କାଶି ।
ପ୍ରତିଜ୍ଞା କରଣ ସେହ୍ନ ଛାଡ଼ିଲେ ଉକ୍ରୋଧ
କ୍ଷତ୍ରି ବୃତ୍ତି ରକ୍ଷିବାରେ ଆରମ୍ଭିଲେ ଯୁଦ୍ଧ ।
ଅର୍ଜୁନଙ୍କର ନିର୍ଭର ସଂଗ୍ରାମକୁ ଦେଖି
ଛାଡ଼ିଲେ ନାରଚ ଭୀଷ୍ମ ଉକ୍ରୋଧ ଉପେକ୍ଷି ।
ଲୁହାଶର ଶଙ୍ଖଚିଲ ତୀକ୍ଷ୍ଣ ତୀକ୍ଷ୍ଣ ମୁନା
ଟାଣି ଛାଡ଼ନ୍ତେ ଭେଦିଲା ଅର୍ଜୁନର ଦେହା ।
ବାସବର ନନ୍ଦନ ଯେ କ୍ଷୋଭ ଜଗତକୃତ
ବିସ୍ତାର କରଣ ଚଉଦର କଲା ବୃଷ୍ଟି ।
ଶରେ ଶର ବାଜଣ ଯେ ହେଲା ଉଡ଼ଜାଳ
ଝଲିକଲା ଅଗ୍ନି ଜାଣି ବଡ଼ବା ଅନଳ ।
ପୁନରପି ଛାଡ଼ିଲେ ଯେ ଭୀଷ୍ମ ଦଶବାଣ
ଯେସନେକ ବଳାହକେ ଝାମ୍ପନ୍ତି ଗଗନ ।
ବାସବ ସୁତ ଛାଡ଼ିଲା ତହୁଁ ଦଶ ଶର
ଭୀଷ୍ମଙ୍କର ନାରଚକୁ କଲା ଛାରଖାର ।
ଗଙ୍ଗାର ନନ୍ଦନ ତହୁଁ ସହସ୍ରେ ବାଣ ପେଷି
ଆକାଶ ପଥ ଘୋଟିଣ ନାରାଚ ବରଷି ।
ଅନୁକ୍ଷଣେ ଛାଡ଼ନ୍ତି ସେ ଶର ପୁଣି ପୁଣି
ଦ୍ୟଗ୍ରହସ୍ତେ ପାର୍ଥ ତାହା ଦୂରୁ ଦିଏ ହାଣି ।
ବେନି ଯୋଦ୍ଧା ସମ ଜେଣ୍ଟି ଲୁହନ୍ତି ଯେ ସାନ
ଅହେ ବଳ ମଧ୍ୟେ ଦୁହେଁ କରନ୍ତି ସଂଗ୍ରାମ ।
ଦ୍ରୋଣ ଦ୍ରୁପଦର ଚେଣେ ବଢ଼ିଲା ସମର
ଦୁଃଶାସନ ମାନ୍ଧାତର ରଣ ଘୋରତର ।
ସହଦେବ ଶକୁନିର ରଣେ ହେଲା ଭେଟ
ଜାଣନ୍ତି ସେ ଗଦାଗଦ ସମରେ ଗରିଷ୍ଠ ।
ଲକ୍ଷ୍ମଣ କୁମର ତୁଲେ ଯୁଝେ ଅଭିମନ୍ୟୁ
ବାଜିଲା ଯେ ରଣଟୋଳ ଏହି ବେନି ସୂନୁ ।
ନକୁଳର ସଙ୍ଗେ ରଣ କରଇ ଦୁର୍ଜ୍ଜୟ
ସମରରେ ଦୁହିଁଙ୍କର ଅଭେଦ ଯେ କାୟ ।
କଣ୍ଠୁରଥ ଆଗେଳି ଯେ ଧୃଷ୍ଟଦ୍ୟୁମ୍ନ
ଅଶ୍ୱତ୍ଥାମା ତୁଲେ ସେହି କରଇ ସଂଗ୍ରାମ ।

ସୋମଦତ୍ତ ହସ୍ତରେ ଶିଖଣ୍ଡୀ ସମର
ବାଳାଦିତ୍ୟ ପ୍ରାୟ ଦିଶେ ଦୁହିଁଙ୍କ ସମର ।
ଆର୍ଦ୍ରା ବିଲ ସମ ଧନୁ ଦୁହିଙ୍କର ହସ୍ତେ
ଅନାଇ ଦିଶଇ ଦୁହେଁ ହେଷ୍ଟ ଯେ ବସନ୍ତେ ।
ପଞ୍ଚଷଠି ନାରାଚକୁ ଘେନି ସୋମଦତ୍ତ
ହାନିଲା ଭେଦିଲା ଯାଇ ଶିଖଣ୍ଡୀର ଗାତ୍ର ।
ଯେସନ ନଭ ସର୍ପମାନେ ପଶନ୍ତି ବିବରେ
ସେହିପରି ଭେଦିଲା ଏ ଶିଖଣ୍ଡୀ ଶରୀରେ ।
ଘାଏ ମୂର୍ଚ୍ଛାଗତ ହେଲା ପଦ୍ମାବତୀ ସୁତା
ତାକେ ସୋମଦତ୍ତ ଚୋଟେ କେହୁ ନ କରୁ ରକ୍ଷା ।
ଯଦ୍ୟପି ପ୍ରାକର୍ମୀ ନ୍ତ ହେବ ଗଜମତ୍ତ
କେଶରୀ ଛାମୁରେ କବା ତାହାର ଆୟତ୍ତ ।
ଏତେ ବହୁ ପ୍ରତିଜ୍ଞା କରି ସୋମଦତ୍ତ
ପାଞ୍ଚାଳକୁମର ତହିଁ ହୋଇଲା ଅଚେତ ।
ହେଶୁନକର ସୋମଦତ୍ତ ଯୁଦ୍ଧ ଜୟ ହେଲା
ଚେତା ପାଇଣ ଶିଖଣ୍ଡୀ ଗର୍ଜିଣ ଉଠିଲା ।
ଗନ୍ଧର୍ବ ଅସ୍ତ୍ର ଗୋଟିକ ଧରି ଭୁଜାକର୍ଣ୍ଣ
ଗୁଣେ ଯୋଡ଼ ଟଙ୍କାରିଲା ତାହା ଘନ ଘନ ।
ଏକଶରେ କ ସହସ୍ର ଆଦିତ୍ୟ ଭାଷି
ତେଜ ତେଜେ ପ୍ରଜ୍ୱଳ ହୁଏ ଅନ୍ଧକାର ନଷ୍ଟି ।
ଆକାଶ କମ୍ପ ନ ସେହି ଶରକୁ ପେଷନ୍ତେ
ବୃନ୍ଦାରକେ ଦେଖିଣ ଭୟ କଲେ ଶୂନ୍ୟପଥେ ।
ଆକାଶେ ଅଦୃଶ୍ୟ ହେଲା ତେଜ ନର ତାର
ଧନୁରୁ ଟଙ୍କାରେ ମୁଞ୍ଚନ୍ତେ ବାହାର ।
ସେହି ଶରକୁ ଶିଖଣ୍ଡୀ ଦେଇ ଆଜ୍ଞା ଦେଲେ
ସୋମଦତ୍ତ ଶିର ବେଗେ କାଟ ତୁ ବୋଇଲେ
ଆଜ୍ଞା ପ୍ରମାଣେ ସେ ଅସ୍ତ୍ର ଶୀଘ୍ର ଯାଇ ଘୋଟି
ଲକ୍ଷେ ଶର ସୋମଦତ୍ତ କଲା ଉର୍ଦ୍ଧ୍ୱେ ବୃଷ୍ଟି ।
ମହାବଳ ପ୍ରକାଶିଲା ବେଜ ଅସ୍ତ୍ର ତେଜ
ସୋମଦତ୍ତ ଶର ସବୁ କରିଲା ବନ୍ଦ୍ୟ ।
ସୋମଦତ୍ତର ଆଗରେ ଘୋଟିଣ ଅସିଲା
ତା ରଥ ହସ୍ତ ଧ ଥି ଭସ୍ମ କଲେ ହେଲା ।
ମହାଭୟ ପାଇଲା ତା ସୋମଦତ୍ତ ଦେଖି
ରମ୍ଭାପତ୍ର ପରି କମ୍ପେ ବୁଜ ଦେଇ ଆଖି ।
ଗନ୍ଧର୍ବ ଶର ପଡ଼ିଲା ଧାଇ ହୃଦଗତେ
ପିଠିକି ନକଳି ଯାଇ ପଡ଼ିଲା ଅଚେତେ ।

ଜମ୍ବୁଦୈତ୍ୟ ନାଶଗଲା ସେ ଅସ୍ତ୍ର ଆଘାତେ
ତାହାର ଆଘାତେ ନର ବଞ୍ଚିବ କେମନ୍ତେ ।
ଶିଖଣ୍ଡୀର ବାଣଘାତେ ସୋମଦତ୍ତ ମଲେ
ଶିଖଣ୍ଡୀଙ୍କ ସୋମଦତ୍ତ ସୈନ୍ୟ ଯେ ଦେଖିଲେ
ଅନୁକ୍ଷଣେ ନାଗର ଯେ ସମସ୍ତେ ବରଷି
ଧର୍ମି ଲଙ୍ଘିଣ ବନ୍ଧନେ ସର୍ବେ ବାଣରାଶି ।
କ୍ଷବ ମଧ୍ୟରେ ଯେସନେ ଦିଶେ ନିଶାପତି
ଏମନ୍ତ କ୍ଷେତ୍ରେ ଶିଖଣ୍ଡୀ ଦିଶେ ସେହିମତି ।
ସମୁଦ୍ର ମନ୍ଥନେ ଯେସନେ ଦିଶନ୍ତି ଅନନ୍ତ
ସେହି ପ୍ରକାରେ ଦିଶଇ ପଦ୍ମାବତୀ ସୁତ ।
କ୍ଷିତି କଠରେ ଯେସନେ ପ୍ରଜ୍ୱଳିତ ଅଗ୍ନି
ଥାଇ ପ୍ରକାଶେ ଶିଖଣ୍ଡୀ ସେହି ତେଜ ଜାଣି ।
ଶ୍ରୀଭୁଜେ ଧନୁ ତାହାର ପିନାକ ସଦୃଶ
ଯୋଦ୍ଧା ହୋଇ ନ ରହିଲେ କେହି ତାର ପାଶ
ଆସିଣ ଘେରିଲେ ମାକୁ ପଞ୍ଚସହସ୍ର ରଥେ
ଶିଖଣ୍ଡୀଙ୍କ ହଣନ୍ତି ଯେ ଅଜାଣୁ ଅ ପ୍ରାୟେ ।
ଚଉଦ ନାରାଚ ଘେନି ପାଞ୍ଚାଳର ସୁତ
କୌରବ ଆଠକୁ ସେହି ଏକା କରେ ହତ ।
ଏକଶର ବରନ୍ତେ ଯେ ପାଞ୍ଚଦଶ ପୁଷ୍ଟି
ଅପୁରେ ବାଣ ଘାନ୍ତେକ ସେହୁ କରେ ବୃଷ୍ଟି ।
ଅହୋ ବଳ ପ୍ରଶଂସନ୍ତି ଶିଖଣ୍ଡୀ ମହିମା
ସାଧୁ ସାଧୁରେ ଶିଖଣ୍ଡୀ ଭୂଜ ମହାତମା ।
ଭୁଜାକର୍ଣ୍ଣ ଦିବ୍ୟ ଯୋଗେ ଅତି ସାମର୍ଥ୍ୟ
ଯେତେକ ନାରାଚ ହନେ ସେ ହୁଏ ଅବ୍ୟର୍ଥ ।
ନାରାଚମାନେ ହାନନ୍ତେ ନ ଦିଶଇ ମୂଳ
ସମରେ ବିମୁଖ ହେଲେ ତହିଁ ସର୍ବ ସୈନ୍ୟ ।
ଅନେକ ନାରାଚ ହାନିବାରୁ ରଥୀମାନେ
ଅଭେଦ୍ୟ କବଚେ ନ ଭେଦନ୍ତି ଶାସ୍ତ୍ରଣ ମୁନେ ।
ଉଗ୍ର ପ୍ରସନ୍ନ ଜାଣେ ଭୁଜାକର୍ଣ୍ଣ ବିଦ୍ୟା
ହେଶୁନକର ଶିଖଣ୍ଡୀ ଯେ ରଣେ ମହାଯୋଦ୍ଧା ।
ଅନିର୍ଣ୍ଣୟ ଶର ଜାଣେ ଦ୍ରୁପଦର ବଳା
ଅଧା ଲକ୍ଷ ରଥେ ତହୁଁ ଘୋର ଯୁଦ୍ଧ କଲା ।
ଯେସନେକ ଚୂତଫଳ ପଡ଼େ ବାତଘାତେ
ପଡ଼ିଲେ ଅନେକ ରଥୀ ଶିଖଣ୍ଡୀ ବଣାଘାତେ ।
ଶୋଣିତ ନଦୀ ବହିଲା ଶିଖଣ୍ଡୀର ଯୁଦ୍ଧେ
ଗଜଅଶ୍ୱ ରଥୀ ମଲେ ସାତଅଙ୍କ ମଧ୍ୟେ ।

ଶିଖଣ୍ତୀର ରଣ ଦେଖି କଉରବେ ଭଗ୍ନ
ଏକାଳେ ଶିଖଣ୍ତୀ କୋପେ ଧାଏଁ ଗଜଗାଜ ।
ରଣରଙ୍ଗେ ଜୟଦ୍ରଥ କୁତାନ୍ତ ଦେବତା
କ୍ଷତ୍ରୀ ହୋଇ ତା ସମ୍ମୁଖେ ନାହିଁ କେ ରହନ୍ତା
ଭୀଷ୍ମଙ୍କ ଆଗେ କହିଲେ ଯାଇଁ ସୁରଗଣେ
କୁରୁସୈନ୍ୟ ଶେଷ ହେଲେ ଶିଖଣ୍ତୀର ରଣେ
ଶୁଣି କୋପାନଳ ହେଲେ ଭାରତର ମଲ୍ଲ
ସଂଶୟ ଲାଗିଲ ମୋତେ କୃପଙ୍କର ବୋଲ ।
କୋପେଣ ବୋଇଲେ ଭୀଷ୍ମ ଗୁଡ଼ି ଧର୍ମବାଟ
ଆଜ ନଷ୍ଟେ ଦହିବି ମୁଁ ପାଣ୍ତବଙ୍କ ଥାଟ ।
ମାନବାଣ ଭୂଜବାଣ ଗଙ୍ଗା ଦେଇଥିଲେ
କ୍ରୋଧେ ଭୀଷ୍ମ ସେହି ଦୁଇ ବାଣକୁ କାଢ଼ିଲେ
ମହାବୃଷ୍ଟି କାଳେ ଯେହ୍ନେ ଗର୍ଜ୍ଜଇ ଜଳଦ
ସେହି ପରାଯେ ଶୁଭଇ ଭୀଷ୍ମ ଗୁଣନାଦ ।
କାଳାନ୍ତକ କାଳେ ଯେହ୍ନେ ଅକାଶେ ତପନ
ଯେନ ବାଣଙ୍କର ତେଜେ ଦିଶଇ ତେସନ ।
ମାନବାଣ ଅଟଇ ଯେ ପ୍ରତ୍ୟକ୍ଷରେ ହରି
ଯେସନ୍ତ ଭୂଜବାଣ ସେହି ରୁଦ୍ର ଅବତରି ।
ଯୁଗତେ ଅଟନ୍ତି ହରି ହର ଏକ ଆତ୍ମା
କଉତୁକେ ଶରରୂପ ଧଇଲେ ମହାତ୍ମା ।
ସଂସାରକୁ ସେ ଦହନ କରିବା ନିମନ୍ତେ
ମାନବାଣ ଭୂଜବାଣ ଧଇଲେକ ହସ୍ତେ ।
ବ୍ରହ୍ମା ରୁଦ୍ର ଚନ୍ଦ୍ର ସୂର୍ଯ୍ୟ ଆଉ ଦିଗପାଳ
ହେଲେ ମଧ୍ୟ ଏହାଙ୍କର ପୂରଇବ କାଳ ।
ସେହି ଅସ୍ତ୍ରକୁ ସମାନ ନୋହେ ଫାଲଗୁନ
ଧର୍ମକୁ ଲଙ୍ଘିଣ ଭୀଷ୍ମ ବିନ୍ଧିଲେ ତା ଯେନ ।
ସେ ଦୁଇ ଅସ୍ତ୍ରର ତେଜ ଉଲ୍‌କାପାତ ଜାଣି
ଆକାଶେ ଅଦୃଶ୍ୟ ହେଲେ ଦିନକର ମଣି ।
ହାସେ ଘୂର୍ଣ୍ଣିଗଲେ ଦୁଇଦଳର ସଇନ
ଭୀଷ୍ମ ରଖ ବୋଲକର ଶୁଭିଲାକ ଧ୍ୱନ ।
ନନ୍ଦଘୋଷ ରଥକୁ ଯେ ବିକାଶିଲ ତେଜ
କ୍ଷଣମାହେ ରଥ ନାଶ ହୋଇବ ଦହ୍ୱନ୍ୟ ।
ଅର୍ଜ୍ଜୁନ ବୋଲନ୍ତି ତୁମ୍ଭେ ଶୁଣ ବାସୁଦେବ
ଭୀଷ୍ମଙ୍କର ତେଜମୋତେ ବଡ଼ ଅସମ୍ଭବ ।
ସଂଗ୍ରାମ ହୋଇଲା ନବଦିନ ପର୍ଯ୍ୟନ୍ତେ
ଏମନ୍ତ ଶର ତ ଦେଖିନାହିଁ ଭୀଷ୍ମ ହସ୍ତେ ।

ପ୍ରଳୟ ଅନଳ ପ୍ରାୟ ଭୀଷ୍ମ ଅସ୍ତ୍ର ତେଜ
ଟାରଲେ ପାଣ୍ତବଦଳ ରଖ ଦେବରାଜ ।
ପାର୍ଥ ମୁଖୁ ଦୁଃଖପଦ ବଚନକୁ ଶୁଣି
ମନେ ବିସ୍ମରନ୍ତି ପ୍ରଭୁ ଦେବ ଚକ୍ରପାଣି ।
ନାଗର ନକଟେ ଦେଖି ହାସେ ଫାଲଗୁନ
ଶରର କମ୍ପଇ ଧନୁ ନ ପାରଇ ଯେନ ।
ଶ୍ରୀହରି କହନ୍ତି ହରି ପାର୍ଥ ଭୟକଲ
ଆଜ ନଷ୍ଟେ ପାଣ୍ତବଙ୍କ ସୈନ୍ୟ ନାଶଗଲା ।
ଏହି ଅସ୍ତ୍ର ନାଶିବାକୁ ନାହିଁ ତାର ବୁଦ୍ଧି
ନଷ୍ଟେ ଦୁର୍ଯ୍ୟୋଧନେ ଭୀଷ୍ମ ଦେଲାକ ସମୃଦ୍ଧି ।
ଶସ୍ତ୍ର ନ ଧରିବି ଯେବେ ମୁହିଁ ଏତେବେଳେ
ପାଣ୍ତବେ ମରିବେ ନଷ୍ଟେ ଭୀଷ୍ମ ସଙ୍ଗାନଳେ ।
ମାନ ଭୂଜବାଣ ଦେଖି ପଣ୍ତୁ ବଳ ଘୂର୍ଣ୍ଣି
ତିନ ଯୋଜନରେ ଏକା ନନ୍ଦଘୋଷ ଅଛି ।
କଉରବ ସୈନ୍ୟମାନେ ଗଲେ ଅପସରି
ତିନ ଯୋଜନେ ରହିଲେ କୁରୁ ଦଣ୍ତଧାରି ।
ଭୀଷ୍ମ ପାର୍ଥ ବେନି ରଥୀ ପୁଣି ରହିଛନ୍ତି
ସୁଦର୍ଶନ ଚକ୍ର କରେ ଧରି ଯଦୁପତି ।
ନନ୍ଦଘୋଷ ରଥୋପରୁ ଅଇଲେ ଉତ୍ତୁରି
ମାନ ଭୂଜବାଣ ଦେଖି ଗଲେ ଅପସରି ।
ଅଧରେ ଦନ୍ତ ଚାପିଣ ଚକ୍ର ଧରି କରେ
ଧାଇଁକାରେ ଉଠିଲେ ସେ ଭୀଷ୍ମ ରଥପରେ ।
ଦେଖିଣ ହାସରେ ତାହା ଶାନ୍ତନୁନନ୍ଦନ
କୃଷ୍ଣ ଦେଖି ଭୀଷ୍ମ ତେଜ୍ୟା କଲେ ଧନୁର୍ବାଣ ।
ରଥରେ ଥାଇ ଗାଙ୍ଗେୟ ହେଲେ ପରଣାମି
ଶିରେ କରଯୋଡ଼ି ବୋଲେ କୋପ କପାଁ ସ୍ୱାମି
ତୁ ଯେବେ ସମର ଇଚ୍ଛା କଲୁ ମହାବାହୁ
ତୋହବାଦେ କଉରବେ ବର୍ତ୍ତିବେ ବା କାହୁଁ ।
କୋପେ ବୋଲନ୍ତି ଭୀଷ୍ମଙ୍କୁ ଦେବ ଚକ୍ରପାଣି
ନିଶ୍ଚୟ ଏ ଚକ୍ରେ ତୋତେ ପକାଇବି ହାଣି ।
ମାନବାଣ ଭୂଜବାଣ ଦୁହେଁ ଏକଆତ୍ମା
ସେ ଶସ୍ତ୍ର ପେଶନ୍ତେ ସ୍ୱର୍ଗେ ହାସିଲେକ ବ୍ରହ୍ମା ।
କ୍ଷୀରୋଦଶାୟୀ ହୋଇଲେ ଭସ୍ମେଦେବଲୋକେ
ସ୍ୱର୍ଗ ତେଜ ପଳାଇଲେ ସର୍ବ ବୃନ୍ଦାରକେ ।
ଯମ ସଂଯମନୀ ଗୁଡ଼ି ଷଡ଼ଯୂଣେ ରହେ
ବହନ୍ତାସ୍ଥଂସେ ପାତାଳେ ଗୋପ୍ୟ ହେଲେଭୟେ

ନବଦିନ ଯାଏ କଲୁ ଅଦ୍ଭୁତ ସଂଗ୍ରାମ
ଏତେଦିନେ ଆଜ ତୁମ୍ଭ ଛାଡ଼ିଲୁଟି ଧର୍ମ ।
କଳିକାଳ ଅନ୍ତେ ହେବ କଳ୍କି ଅବତାର
ମ୍ଳେଚ୍ଛ ନିଧନାର୍ଥେ ହେବ ଏ ଅସ୍ତ୍ର ବାହାର ।
ଜନ୍ତୁଙ୍କର ନାଶ ପାଇଁ କଳ୍କି ନାରାୟଣ
ସେ କାଳେ ଏ ଅସ୍ତ୍ର ଧରି କରିବେ ନିଧନ ।
ଯେବେ ଧାତା କ୍ଷୀରୋଦରେ ଥିଲେକ ସେଶୋଇ
ଜାହ୍ନବୀ ଏ ଅସ୍ତ୍ର ତୋତେ ଦେଲେକ ସ୍ନେହରାଇ
ଏ ଦେବ ଅସ୍ତ୍ରକୁ ତୁମ୍ଭ କପାଇଁ ଭରସୁ
ମାନବ ଯୁଦ୍ଧରେ ତୁମ୍ଭ ଦେବଶର ପେଷୁ ।
ଭୀଷ୍ମ ବୋଇଲେ ହେ ହରି କୋପତେଜମୋତେ
ତେବେ ସତ୍ୟବାକ୍ୟ କହିପାରିବି ମୁଁ ତୋତେ
ହରି ବୋଇଲେ ବାହୁଡ଼ା ତୋର ଏହି ଶର
ବିଳମ୍ବ କରିଲେ ନାଶ ହୋଇବ ସଂସାର ।
ନାରାୟଣ ବାକ୍ୟେ ଭୀଷ୍ମ ମନେ ଚିନ୍ତି ତାଙ୍କୁ
ବାହୁଡ଼ାଇ ସଂହାରିଲେ ତୂଣେ ସେ ଶରକୁ ।
ଭୀଷ୍ମ ବୋଲେ ହରି ମୋତେ କର ପ୍ରତିକାର
ଚକ୍ର କପାଁ ନ କରୁଛ ମୋ ଗଳେ ପ୍ରହାର ।
ଆଜ ବୈକୁଣ୍ଠ ପୁରକୁ କର ମୁହିଁ ଇଚ୍ଛା
ଆଜ ଭୁଜବାଣ ପେଷି ଚକ୍ରେ କଲ ବାଞ୍ଛା ।
ମୁକ୍ତି ଚିନ୍ତାମଣି ମୋର ମୁକ୍ତି ନ ଚିନ୍ତିଲୁ
ହେଲେ ନ ମାରଣ କପାଁ ଚକ୍ର ସଂହାରିଲୁ ।
କୃଷ୍ଣ ବୋଇଲେକ ତୁମ୍ଭ ଅଟ ମହାଜ୍ଞାନୀ
ବୈକୁଣ୍ଠ ପୁରକୁ ତୋତେ ସଙ୍ଗେ ଯିବ ଘେନି
ଭୀଷ୍ମ ବୋଇଲେ ମୋଠାରେ ଏତେକ ସଦୟ
ତୋତେ ଭକ୍ତି କରି ନାହିଁ ଘନେ ଦେବରାୟ
ଭୀଷ୍ମଙ୍କୁ ବୋଲନ୍ତି ତହୁଁ ପ୍ରଭୁ ଦେବରାଜ
ତୋହର ଯୋଗେ ହୋଇବ ମୋର ବହୁକାର୍ଯ୍ୟ
ଭୀଷ୍ମ ବୋଇଲେକ ହରି ତୁମ୍ଭ ବିଶ୍ୱବାସ
ମୁଁ ହାନି କରିବି ତୋର କାର୍ଯ୍ୟ ଅବା କିସ ।
ହରି ବୋଇଲେ ପାଣ୍ଡବେ ମୋର ପଞ୍ଚଆତ୍ମା
ତାହାଙ୍କ ବିବାଦୀ ତୁମ୍ଭେ ନ ହୁଅ ମହାତ୍ମା ।
ଭୀଷ୍ମ ବୋଇଲେକ ହରି କହୁଛ ଦଇନା
ଆଜରଣେ ବଜେ କର ପାଣ୍ଡବନ୍ତ ଘେନ ।
ଯେବେ ପାଣ୍ଡବଙ୍କୁ ଦୟା କଲ ହେ ଗୋବିନ୍ଦ
ଆଜ ନିଶ୍ଚେ କହିବଇଁ ମୋର ମୃତ୍ୟୁ ଭେଦ ।

ପୁଣି ଭୀଷ୍ମ ବୋଲେ ଶୁଣ ପୁରୁଷ ଉତ୍ତମ
ଆଜହୁଁ ସରିଲା ଜାଣ ମୋହର ସଂଗ୍ରାମ ।
ଦଶସହସ୍ର ରଥୀ ମୁହିଁ ଆଜ ମାରିବଇଁ
ଏଥିପାଇଁ କୋପ ମୋତେ ନ କର ଗୋସାଇଁ
ଗୋବିନ୍ଦ ବୋଇଲେ କର ଯେ ତୋହର ଇଚ୍ଛା
ପାଣ୍ଡବଙ୍କୁ ରକ୍ଷି ପୂର୍ଣ୍ଣ କର ତୋର ବାଞ୍ଛା ।
ଭୀଷ୍ମଙ୍କୁ ଦୃଢ଼ ପ୍ରତିଜ୍ଞା କରାଇ ଅଚ୍ୟୁତ
ବାହୁଡ଼ା ବିଜୟୀ କଲେ ନନ୍ଦିଘୋଷ ରଥ
ଶ୍ରୀହରି ନଉନ ଦେଖି ଧାଇଁ ବେନିଦଳ
ପୁଣିହିଁ ବଢ଼ିଲା ତହିଁ ମହାରଣ ଘୋର ।
ଚଉଦ ଦଣ୍ଡ ଆସିଣ ହୋଇଲାକ ଦିନ
ବହୁ ଶ୍ରମ ପାଇଲେକ ଉଭୟଙ୍କ ସୈନ୍ୟ ।
ଭୀଷ୍ମଙ୍କର କଥା ହରି କହନ୍ତି ପାର୍ଥକୁ
ସମର କରଇ ପାର୍ଥ ବନ୍ଦିଣ ହରିଙ୍କୁ ।
କୋଟିଏ କଉଣ ବାଣ ବିନ୍ଧି ଭୀଷ୍ମରଥୀ
ମାଇଲେକ ଦଶସହସ୍ର ଯୋଦ୍ଧା ତତ୍‌କ୍ଷଣାତ ।
ସମର କରନ୍ତେ ତହିଁ ସୂର୍ଯ୍ୟ ଅସ୍ତ ହେଲେ
ଦୁଇଦଳ ଯୁଦ୍ଧ ତେଜି ଯୋଦ୍ଧାପୁରେ ଗଲେ ।
ସ୍ନାନ ସନ୍ଧ୍ୟା ସାରି ତହୁଁ ରାଜା କୁରୁପତି
ବହୁ ଅଳଙ୍କାର ଘେନି ଇଷ୍ଟଙ୍କୁ ପୂଜନ୍ତି ।
ଭୀଷ୍ମଙ୍କ ପାଶରେ ଯାଇ ପରବେଶ ହେଲେ
ଅଳଙ୍କାର ମାନ ନେଇ ବିନତୀ ହୋଇଲେ
ପୌଷମାସ କୃଷ୍ଣପକ୍ଷ ଷଷ୍ଠୀ ତିଥି ଦିନ
ବୃହସ୍ପତି ବାର ମଘା ତାର ବିଦ୍ୟମାନ ।
ବାଣିଜ୍ୟ ନାମେ କରଣ ପ୍ରୀତିନାମେ ଯୋଗ
ଷଷ୍ଠୀ ପରେ ସପତମୀ ସେହି ରାତ୍ର ଭୋଗ ।
ପାଣ୍ଡବଙ୍କୁ ତହୁଁ ଘେନି ଦେବ ଚକ୍ରପାଣି
ସହଦେବ ସଙ୍ଗେ ବସି କରନ୍ତି ଗଣେଣି ।
ଗୋବିନ୍ଦ ବୋଇଲେ ଭୀଷ୍ମ କହିଲେ ବିଶ୍ୱାସ
କାଲି ସମରକୁ ମୁହିଁ ତେଜିବି ଅବଶ୍ୟ ।
ଭୀଷ୍ମ ବୋଇଲେକ ମୋତେ ଆଜର ରଜନୀ
ମୋହ ପାଶକୁ ଆସିବ ପାଣ୍ଡବଙ୍କୁ ଘେନି ।
ଚଳ ସହଦେବ ଯିବା ଭୀଷ୍ମଙ୍କ ପାଶକୁ
ଏକାନ୍ତେ ସେ ମୃତ୍ୟୁଭେଦ କହିବେ ଆମ୍ଭଙ୍କୁ ।
ସହଦେବ ବୋଲେ ଭୀଷ୍ମ ଭଣ୍ଡିଲେ ତୁମ୍ଭଙ୍କୁ
ମୃତ୍ୟୁଭେଦ ସେ କହିବେ ନ ଆସେ ମନକୁ ।

ଦୁର୍ଯ୍ୟୋଧନର ପାଶକୁ ଯାଆନ୍ତୁ କିରୀଟୀ
ମାଗନ୍ତୁ ତାଙ୍କୁ ଅନର୍ଘ ମଣି ମୁକୁଟଟି ।
ସହଦେବ ବାକ୍ୟ ଶୁଣି କହିଲେ କେଶବ
ଅଭିଷେକ ମୁକୁଟ ସେ ପାର୍ଥେ କିପାଁ ଦେବ ।
କରପଦ୍ମ ଯୋଡ଼ିଣ ଯେ ବୋଲେ ସବ୍ୟସାଚୀ
ମୁକୁଟ ନେବା ଉପାୟ ମୋର ପୂର୍ବୁ ଅଛି ।
ମାନଗୋବିନ୍ଦ ରାଜାଙ୍କୁ ଘୋଷଯାତ୍ରା ବେଳେ
ଚିତ୍ରସେନ ଗନ୍ଧର୍ବ ଯେ ବାନ୍ଧିନେଲା ବଳେ ।
ବିବାଦ ହୋଇଲି ମୁହିଁ ସେହି ଚିତ୍ରସେନେ
ବନ୍ଧନରୁ ମୁକ୍ତ କଲି ରାଜା ଦୁର୍ଯ୍ୟୋଧନେ ।
ରାଗେ ଭତପୂର୍ଣ ଫିଙ୍ଗିଦେଲା ଚିତ୍ରରଥ
ଆକାଶରୁ ବନ୍ଧିଲି ମୁଁ ଶରେ ଶରେ ପଥ ।
ସେହି ପଥେ ଦୁର୍ଯ୍ୟୋଧନ ଗଡ଼ି ଗଡ଼ି ଆସି
ଯୁଧିଷ୍ଠିରଙ୍କ ପାଦତଳେ ପଡ଼ିଲା ଆଶ୍ୱାସି ।
ବିନୟରେ ମୋର ପ୍ରତି ବହୁ ଅନୁରାଗ
ବୋଇଲା ହେ ପାର୍ଥ ତୁହି ବର ମୋତେ ମାଗ
ମୁଁ ବୋଇଲି ଦୁର୍ଯ୍ୟୋଧନ ହୋଇ ପରଣାମି
ଅନର୍ଘ ମଣି ମୁକୁଟ ଦିନେ ଦେବୁ ସ୍ୱାମି ।
ଅନୁଗ୍ରହ କରିଣ ଯେ କହିଲାକ ସେହି
ମାଗିବୁ ମୁକୁଟ ଯେବେ ନିଶ୍ଚେ ମୁଁ ଦେବଇଁ
ସେ କାଳେ ସତ୍ୟ କରିଛି ରାଜା ଦୁର୍ଯ୍ୟୋଧନ
ମହତ ବାକ୍ୟ ଲଙ୍ଘନ ହୋଇବ କେସନ ।
ଅର୍ଜୁନର ମୁଖୁଁ ଏହା ଶୁଣି ନାରାୟଣ
ହୃଦୟରେ ଆନନ୍ଦିତ ହେଲେ ସେହିକ୍ଷଣ ।
ପାର୍ଥକୃଷ୍ଣ ସହଦେବ ଏହି ତିନିଜଣ
ରଥରେ ବିଜୟ କଲେ ହସ୍ତିନା ଭୁବନ ।
ତହିଁ ପ୍ରବେଶନ୍ତେ ଶୋଭା ଦିଶେ ଅନୁପମ
ଦିଶେ ଯଥା ସ୍ରୋତସ୍ୱତୀ ତ୍ରିବେଣୀ ସଙ୍ଗମ ।
ଆସ୍ଥାନରେ ବସିଅଛି ରାଜା ଧାର୍ତ୍ତରାଷ୍ଟ୍ରି
ସଙ୍ଗରେ ବିଜୟ ଯାଇ କରିଲା କସଟି ।
ଦେଖିଣ ହରଷେ ବୋଲେ ରାଜା ଦୁର୍ଯ୍ୟୋଧନ
ବାବୁରେ ଅର୍ଜୁନ କିପାଁ କଲୁ ଆଗମନ ।
ପାର୍ଥ ପ୍ରଣମି ତାହାଙ୍କୁ ବୋଲଇ ଏଥନ
ପଦାର୍ଥେକ ମାଗିବି ମୁଁ ଦେବ ସେହିକ୍ଷଣ ।
ଦୁର୍ଯ୍ୟୋଧନ ବୋଇଲ ମାଗ ଯାହା ତୋର ଇଚ୍ଛା
ସତ୍ୟ ମୁହିଁ କହୁଅଛି ପୂରାଇବି ବାଞ୍ଛା ।

କରପଦ୍ମ ଯୋଡ଼ିକରି ବୋଲେ ଫାଲଗୁନ
ଅନର୍ଘମୁକୁଟ ଦେବ ଆଜର ରାଜନ ।
ଶୁଣି ଉପହାସ କଲେ ଦୁଃଶା ଅଶ୍ୱତ୍ଥାମା
ଦୁର୍ମୁଖ ଦୁର୍ବାଳ ଆଉ କର୍ଣ୍ଣ କୃପବ୍ରହ୍ମା ।
ଶକୁନି ବୋଲଇ ତୁମ୍ଭେ ନ ଜାଣ ହୋ କିଛୁ
ପୂର୍ବରୁ ଯେ ଦୁର୍ଯ୍ୟୋଧନ ସତ୍ୟ କରିଅଛି ।
ଏ ସମୟେ ଶଲ୍ୟ ବୋଲେ ପୂର୍ବ ସତ୍ୟ ଥିଲେ
ଜୀବନ ଅସ୍ୱାର୍ଥ ହେବ ବିଚଳିତ ହେଲେ ।
ଲକ୍ଷେ ରାଜା ମଧ୍ୟେ ଶ୍ରେଷ୍ଠ ଏ ମାନଗୋବିନ୍ଦ
ବାକ୍ୟୁ ବିଚଳିତ ହେଲେ ଏହି ମଧ୍ୟେ ମନ୍ଦ ।
ମାନଗୋବିନ୍ଦ ବୋଇଲା ଶୁଣରେ ଅର୍ଜୁନ
ତୁ ଗୁଣସାଗର ହଇ ମୋ ପ୍ରାଣ ସମାନ ।
ପୁଣି ଦୁର୍ଯ୍ୟୋଧନ ବୋଲେ ଘୋଷଯାତ୍ରା ବେଳେ
ଚିତ୍ରସେନ ମୋତେ ବନ୍ଧି ନେଉଥିଲା ବେଳେ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଉ ଶଲ୍ୟ ମହାରଥୀ
ସର୍ବେ ପଳାଇଲେ କେହୁ ନୋହିଲେ ରଖନ୍ତା
ସୋଦର ଗୁଡ଼ିଲା ପାର୍ଥ ମୋହର ନିମିତ୍ତ
ତାହାର ଋଣ ଶୁଝି ନ ପାରିବ କଦାଚ ।
ସେ ସମୟେ ଏହି ମୋର ଉପକାର କଲା
ଚିତ୍ରସେନଠାରୁ ମୋତେ ଛଡ଼ାଇ ଆଣିଲା ।
ଭୟଙ୍କର ଚିତ୍ରସେନ ଗୁଡ଼ିଲାକ ମୋତେ
କଲା ଉପକାର ଯେହୁ ନ ସୁମରେ ଚିତ୍ତେ ।
ସମସ୍ତେକ ସେହି ପ୍ରାଣୀ ନରକେ ପଡ଼ଇ
ଏହି କଥା ଗୋଟି ଜାଣ ଶାସ୍ତ୍ରରୁ ଅଟଇ ।
ଯଦ୍ୟପି ଅର୍ଜୁନ ମୋତେ ମାଗିବ ମୋ ଚୋଟି
ଏହିକ୍ଷଣି କହୁଛି ମୁଁ ତାହା ଦେବି କାଟି ।
ପଛରେ ନାରାୟଣ ସେ ମାନଚକ୍ରବର୍ତ୍ତୀ
ଅନର୍ଘ ମୁକୁଟ ଶିରୁ କାଢ଼ିଲା ଝଟତି ।
ଏକରେ ଟି ମାଣିକ୍ୟ ଯେ ତହିଁ ଅଛି ଲାଗି
ଲାଗିଅଛି କୋଟିପାଦ ଲକ୍ଷ୍ମୀ ସଉଭାଗୀ ।
ସେହି ମଣିତେଜେ ହୁଏ ଅନ୍ଧକାର ଦୂର
ତାହା ନେଇଣ ଅର୍ଜୁନ ଚଳିଲା ସତ୍ୱର ।
ସହଦେବ ବୋଲେ ଦେବ ଆଜର ପାହାନ୍ତି
ଭୀଷ୍ମଙ୍କ ତହିଁକି ଯିବା ନ ପାରୁଣୁ ରାତ ।
ଉଭୟ ଦଳକୁ ତହିଁ ନ ମାଡ଼ଇ ନିଦ
ସମର କଥାକୁ ଭଦ କରନ୍ତି ସେ ଖେଦ ।

ଶୁନ ଆଉଁ ଭୀଷ୍ମ ଦେବ ନିତ୍ୟକର୍ମ ସାରି
ଦେବତା ଘରେ ପଶିଣ ସୁଧର୍ମ ଆଚରି ।
ଅନର୍ଘମଣି ମୁକୁଟ ପାର୍ଥ ଶିରେ ବାନ୍ଧି
ପ୍ରବେଶିଲା ଦେବଘର ଦ୍ୱାରେ ମହାଯୋଧୀ ।
କୃଷ୍ଣ ସହଦେବ ପାର୍ଥ ପଛେ ରହିଥିଲେ
ନାସିକାରେ ସୂତା ଦେଇ ଶ୍ରୀକୃଷ୍ଣ ଛିଙ୍କିଲେ ।
ଲେଉଟିଣ ଭୀଷ୍ମଦେବ ଗୃହାନ୍ତେ ଦ୍ୱାରକୁ
ମୁକୁଟ ଦେଖି ବୋଇଲେ ଲଭ ଦୀର୍ଘାୟୁକୁ ।
ପୁନରପି ଆଉ ଥରେ ଛିଙ୍କନ୍ତେ ଶ୍ରୀପତି
ଶତ୍ରୁ ତୋର କ୍ଷୟ ଯାଉ ଭୁଞ୍ଜ ଭୂ ବିଭୂତି ।
ପୁଣି ଆଉ ଏକଥର ଛିଙ୍କନ୍ତେ ଅଚ୍ୟୁତ
ଭୀଷ୍ମ ବୋଲେ ପଞ୍ଚରାଜ୍ୟ ହେଉ ତୋତେ ପ୍ରାପ୍ତ
ଭୀଷ୍ମଙ୍କର ମୁଖୁଁ ଏହି ଦୃଢ଼ବାକ୍ୟ ଶୁଣି
ଅର୍ଜ୍ଜୁନ ସହ ଭିତରେ ଗଲେ ଚକ୍ରପାଣି ।
ଶ୍ରୀକୃଷ୍ଣଙ୍କ ମୁଖ ଦେଖି ବୋଇଲେ ଗାଙ୍ଗେୟ
ମାୟାବୀ ପୁରୁଷ ତୁହି ଅଟୁ ଦେବରାୟ ।
ମୁହିଁ ଅନର୍ଘ ମଣିର ମୁକୁଟ ଦେଖିଲି
ଦୁର୍ଯ୍ୟୋଧନ ପ୍ରାପ୍ତ ବୁଝି କଲ୍ୟାଣ ବାଞ୍ଛିଲି ।
ଗୋବିନ୍ଦ ବୋଇଲେ ତୁମ୍ଭେ ମହତ ଧାର୍ମିକ
ନୋହିବ କି ସିଦ୍ଧ ତୁମ୍ଭେ କହିଲ ଯେ ବାକ୍ୟ
ଅର୍ଜ୍ଜୁନ କୃଷ୍ଣଙ୍କ ପାଶେ ଠିଆ ହୋଇଥିଲେ
ଭୀଷ୍ମଦେବଙ୍କୁ ଚାହିଁଣ ଏପରି ବୋଇଲେ ।
ବୋଇଲେ ପଞ୍ଚକଟକେ ତୁମ୍ଭ ଏକ ଷଣ୍ଢୀ
ତୁମ୍ଭ କରେ ନଷ୍ଟ ଥିଲେ ପାଣ୍ଡବେ କି ବର୍ତ୍ତି ।
ଭୀଷ୍ମ କହିଲେକ ତୋତେ କହୁଁ ପୂର୍ବକଥା
ଶାନ୍ତନୁ ଯେ ସୋମବଂଶେ ଥିଲେ ମହାରଥୀ
ଗଙ୍ଗାଠାରେ ବଢ଼ାଇଲେ ପ୍ରୀତି ସେହୁ କୁଟେ
ଈଶ୍ୱରଙ୍କୁ ନ ଦେଖି ସେ ଥିଲେ ମେରୁ କୋଟେ
ଗଙ୍ଗା ତହିଁ ଏହିପରି ସତ୍ୟ କରିଥିଲେ
ଗାଙ୍ଗୀ ବୋଇଲେ ରହିବି ନାହିଁ ତୋର ଆଳେ
ଅନେକ ଅବସ୍ଥା ତାଙ୍କୁ ଦେଲେ ସେ ଜାହ୍ନବୀ
ଭୃତ୍ୟ ପ୍ରାୟକ ଶାନ୍ତନୁ ଥାନ୍ତି ପ୍ରିୟ ଭବି ।
ସପ୍ତପୁତ୍ର ମାରି ମାତା ଜଳେ ପକାଇଲେ
ତେବେ ସୁଦ୍ଧା ଶାନ୍ତନୁ ଯେ କିଛି ନ ବୋଇଲେ
ଅଷ୍ଟମରେ ମୁହିଁ ଜାତ ହେଲି ଯେତେବେଳେ
ଶାନ୍ତନୁ ଦେଖିଲେମୋତେଗଙ୍ଗାନେଲେ କୋଳେ

ଦେଖି ରାଗ ସଂହରି ନ ପାରିଲେ ଶାନ୍ତନୁ
ବୋଇଲେ ଗୋ ଗାଙ୍ଗୀ ପୁତ୍ର ବଧି ପାପ ହେଲୁ
ଧାତିକାରେ ଗଙ୍ଗା ମୋତେ ପକାଇ କୋଳରୁ
ରାଗେ ବୋଲେ ଜାଉଁ କିବା ଇଚ୍ଛା ହେଲେ ମରୁ
ମହତ ଲୋକର ବାକ୍ୟ ନ ହେବ ଅନ୍ୟଥା
ତେଣୁ ମୋର ଇଚ୍ଛାମୃତ୍ୟୁ ଶୁଣ ସାରକଥା ।
ଯାନ୍ତେ ଲୋଭେ କୋଳକରି ଧରନ୍ତେ ଗଙ୍ଗାଙ୍କୁ
ଗଙ୍ଗା ବୋଇଲେକ କପାଁ ଛୁଇଁଲୁ ଆମ୍ଭଙ୍କୁ ।
ଯେତେକାଳ ଯାଏ କରି ନ ଥିଲୁ ଇର୍ଷନା
ମୁହିଁ ତୋର ଭାର୍ଯ୍ୟା ଥିଲି ତେତେକାଳ ସିନା
ଯେତେବେଳେଗାଙ୍ଗୀବୋଲିବୋଲିବୁତୁମୋତେ
ବ୍ରତ ପୂରିବ ମୋହର କହିଅଛୁ ତୋତେ ।
ଆଜ ମୋତେ କୋଳ ତୁହି କଲୁ ଯେଣୁ ଅର୍ଥେ
ତୋର ଶିରଚ୍ଛେଦ ହେବ ଏହା ପୁତ୍ରହସ୍ତେ ।
ଏପରି ଶାପ ଦେଇଣ ଗଲେକ ଜାହ୍ନବୀ
ମୁହିଁ ସେ ପିତାଙ୍କ ପଦେ ଥାଏ ସଦା ସେବି
ବିଶ୍ୱାବସୁ ଗନ୍ଧର୍ବର ସୋମଦାସ ପୁତ୍ର
ଅଜବାହୁ ତିନିଗୋଟି କନ୍ୟା ତା ଥିଲେ ତ
ଅମ୍ବା ଆଉ ଅମ୍ବାଳିକା ଅମ୍ବାଳୀ ଅମ୍ବିକା
ଆମ୍ଭଙ୍କୁ ବରଣ କଲେ ତାଙ୍କ ମଧ୍ୟୁ ଏକା ।
ବରଦେଶେ ଗମନ୍ତେ ମୁଁ ବିବାହ ହେବାକୁ
ମୋତେ ଦେଖି ଶାନ୍ତନୁ ଯେ କରିଲେ ଶୋକକୁ
ବୋଇଲେକ ଗଙ୍ଗା ଶାପ ଦେଇଅଛି ମୋତେ
ମୋର ଶିରଚ୍ଛେଦ ହେବ ତୋର ପୁତ୍ରହସ୍ତେ
ଆରେ ପାର୍ଥ ପିତାଙ୍କର ଏହି ବାକ୍ୟ ଶୁଣି
ବରବେଶ ପରିତ୍ୟାଗ କଲି ସେହିକ୍ଷଣି ।
ମୁହିଁ ବିଭା ହେଲେ ଯେବେ ପିତା ହେବେ ନାଶ
ସେ ବିଭାରେ ମୋର ଆଉ ପ୍ରୟୋଜନ କିସ
ଏମନ୍ତ ଚିନ୍ତି ମୁହିଁ ଦାର ଉପେକ୍ଷିଲି
ବିଭା ନୋହିଲି ଶୃଙ୍ଗାର ମୁହିଁ ନ ଇଛିଲି ।
ଅମ୍ବାନାମରେ ଯେ କନ୍ୟା ଥିଲା ମୋତେ ବରି
ବିବାହ ନୋହିଲେ ତାକୁ କେହି ମୋତେ ଡରି
ପୁଣି ମୋ ପାଶକୁ ଆସି ସେ ପରମାସତୀ
ବହୁ ବିନୟେ କହିଲା କରିଣ ଭକତି ।
ମୁହିଁ ତାହାକୁ କରନ୍ତେ ବହୁତର ତମ
ପ୍ରୟାଗେ ଝାସକୁ ଗଲା ଧରି ମୋର ନାମ ।

ସ୍ୱଇଚ୍ଛାରେ ସହ ତହିଁ ପର୍ଶୁରାମ ଥିଲେ
ସ୍ତ୍ରୀହତ୍ୟା ହେବ ବୋଲି ନାସ୍ତି ସେ କରିଲେ
ସେ ନାରୀକି ଆଣି ମୋତେ ସମର୍ପନ୍ତେ ରାମ
ନାସ୍ତି କରନ୍ତେ ମୋ ଭୂଲେ କଲେକ ସଂଗ୍ରାମ
ଅନେକ ସମର କଲେ ସେହି ଦ୍ୱାଇ ବୀର
ଶତେବର୍ଷ ଯୁଦ୍ଧକରି ଗଲେ ଅପସର ।
ତହୁଁ ସେହି ଅମ୍ବା କନ୍ୟା ହୋଇଣ ନିରାଶ
ମୋତେ ଜିଣିବାକୁ ଦେଲା ପ୍ରୟାଗରେ ଝାସ
ବାଞ୍ଛା ସିଦ୍ଧ ତୀର୍ଥ ଜେବେ ସେ ଆନ ନୋହିଲା
ଦ୍ରୁପଦର ଘରେ ଯେବେ ପୁତ୍ରଯଜ୍ଞ ହେଲା ।
କଉରବ ନାଶିବାକୁ ଦ୍ରୌପଦୀ ଜନ୍ମ
ଶିଖଣ୍ଡୀ ନାମରେ ଅମ୍ବାକନ୍ୟା ଉତପନ୍ନ ।
ଆଜ ଯୁଦ୍ଧେ ଶିଖଣ୍ଡୀକି କରିବୁ ତୁ ଆଗ
ତାହାକୁ ଦେଖିଲେ ଶସ୍ତ୍ର ଛାଡ଼ିବି ମୁଁ ବେଗ ।
ଦ୍ରୋଣ ନାଶଯିବେ ଧୃଷ୍ଟଦ୍ୟୁମ୍ନର ହାତେ
କର୍ଣ୍ଣ ନାଶଯିବ ଜାଣ ତୋର ଶରଘାତେ ।
ଯୁଧିଷ୍ଠିରଙ୍କ କୋପେ ନାଶଯିବେ ଗୁରୁଶଲ୍ୟ
ଭୀମସେନ ମର୍ଦ୍ଦିବ ଯେ କଉରବ ଦଳ ।
ସହଦେବ ହସ୍ତେ ନାଶ ଯିବଟି ଶକୁନି
ନିଷ୍କଣ୍ଟକ ରାଜ୍ୟ ତୋତେ ଦେବ ଫାଲଗୁନି ।
ସାରଥିପଣେ ଶ୍ରୀକୃଷ୍ଣ ଯାକୁ କଲେ ରକ୍ଷା
ଆହ୍ମମାନଙ୍କ ପ୍ରତିଜ୍ଞା ହେବ କାହିଁ ରକ୍ଷା ।
ମୁହିଁ ଜିଣି ନ ପାରିଲେ ଦଶଦିନ ମଧ୍ୟେ
ଅନ୍ୟ ରଥୀ କେହୁ ଆଉ ଜିଣିବ କି ଯୁଦ୍ଧେ ।
ଏସନ ବେଳ ପ୍ରସର ହୋଇଲା ରଜନୀ
ଜଗତବନ୍ଦନ ନାଥ କଲେ ଶଙ୍ଖଧ୍ୱନି ।
ଜୟ ତୁ କେଶବ ଅବତାର ସର୍ବ ମୋକ୍ଷ
ତୁମ୍ଭର ନାମରେ ହୁଏ ମୁକତ ପ୍ରତ୍ୟକ୍ଷ ।
ନବଦୁର୍ବାଦଳ ପ୍ରାୟେ ତୁମ୍ଭର ଯେ ପିଣ୍ଡ
ଏକପାଦେ ଗୋପ୍ୟକଲ କୋଟିଏ ବ୍ରହ୍ମାଣ୍ଡ ।
ଗୋମୁଖ କେଶବଙ୍କର ଚରଣ ସ୍ମରେଟି
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଯେତକଟି ।
ସପତ ସମୁଦ୍ର ଅଟେ ତୁମ୍ଭର ଉଦର
ରସାତଳ ସୁତଳ ଯେ ତୁମ୍ଭର ପୟର ।
ଆକାଶ ଶିର ତୁମ୍ଭର ତୁଷ ରୋମାବଳ
ହାରିନାଥ ଅଗ୍ନିକୋଣେ ଅଛ ଦୁଷ୍ଟେ ବଳ ।

ନମୋ ଗୋମୁଖୀ କେଶବ ନମୋ ମହାପ୍ରଭୁ
ପରମଗତି ଲଭିବ ତୋର ନାମ ଭାବୁଁ ।
ତାହାଙ୍କର ପ୍ରିୟବତୀ ଅଟନ୍ତି କମଳା
କମଳପୁଷ୍ପ ଯାହାର ହୃଦେ ବନମାଳା ।
ଶାରଳା ଦାସ କରଇ ବିନୟେ ଭକତି
ଗୋମୁଖୀ କେଶବ ପାଦେ ରହୁ ମୋର ମତି ।
ଶୁଣ ସାଧୁଜନେ ଏବେ ମୋହର କାହାଣୀ
ଶୂନ୍ୟେ ଶବଦ ଭେଦିଲି ନ ଶୁଣି ନ ଜାଣି ।
ଝଙ୍କଡ଼ପୁର ବାସିନୀ ଶ୍ରୀଚଣ୍ଡୀ ଶାରଳା
ମୋହର କଣ୍ଠେ ଭୂଷଣ ସେହି ବନମାଳା ।
ପରମଗତି ଦାୟିନୀ ଦେବୀ ପିଙ୍ଗଳାକ୍ଷୀ
ମୁହିଁ ତୋହର ବଚନ ହୃଦେ ଅଛୁ ରଖି ।
ନିରମଳ ଅକଳଙ୍କ ଯା ମୁଖପଦ୍ମଟି
ମୁହିଁ ତାହାଙ୍କୁ ବହୁତ ଭାଗ୍ୟେ ଅଛୁ ଭେଟି ।
କୃପାଜଳ ବ୍ରହ୍ମାଙ୍କର କୁଳେ ଉତପନ୍ନ
ପିତାଙ୍କ ବାକ୍ୟେ ନର୍ମଦା ସରସ୍ୱତୀ ନାମ ।
ଗୋପ୍ୟାନ ଭାର୍ଗବୀ ବୋଲି ଚନ୍ଦ୍ରଭାଗା ନଦୀ
ଚିତ୍ରୋତ୍ପଳା ନାମେ ବହେ ଐଶାନ୍ୟରେ ଭେଦି
ପ୍ରସନ୍ନେ ସାଧବୀ ଛନ୍ତି ଭୂଷ୍ଟ ମୋହ ପ୍ରତି
ଯୋଗେ ଯୋଗେଶ୍ୱରୀ ମୋର ସେହି ବରଦାହି
ନିର୍ମଳ ଭୁବନ ଜମ୍ବୁଦ୍ୱୀପର ଐଶାନ୍ୟେ
କନକାବତୀ ପାଟଣା ପଶୁରାମ ଗ୍ରାମେ ।
କୁଶକେତୁର ତଟତ ଯେଉଁ କୁଶସ୍ଥଳୀ
ଯୋଗୀବୃନ୍ଦ ଧ୍ୟେନ ସଦା ଯେତୁ କୁଣ୍ଡଳୀ ।
କଳିକଲୁଷ ଧ୍ୱଂସିନୀ ଶ୍ରୀ ଶାରଳା ଚଣ୍ଡୀ
ବିପଦରେ ଡାକିଲେ ସେ ଶୀଘ୍ର ଦୁଃଖ ଖଣ୍ଡି
ସେ ଦେବୀର ପଦ୍ମପାଦ ସଦା କର ଧ୍ୟାନ
ଶାରଳାଦାସ ଭାରତ କରିଲା ରଚନ ।



## ଭୀଷ୍ମଙ୍କର ଶରଶଯ୍ୟା

ଏଥୁଅନନ୍ତରେ ପୁଣି ମନୁ ନରନାଥ
ଅଗସ୍ତିଙ୍କ ଶ୍ରୀ ଚରଣେ କରି ପ୍ରଣିପାତ ।
ପୃଚ୍ଛାକଲେ କହ ମୋତେ ଆହେ ତପସ୍ୱୀ
ସମର ବିଧାନ ପୁଣି ହେଲା କେଉଁପରି ।
ଅଗସ୍ତି କହିଲେ ଶୁଣ ମନୁ ନରପତି
ପାଣ୍ଡବଙ୍କୁ ମୃତ୍ୟୁଭେଦ ଦେଲେ ଭୀଷ୍ମ ରଥୀ ।

ସଞ୍ଜୟ କହିଲେ ଶୁଣ ରାଜା ଧୃତରାଷ୍ଟ୍ର
ଭୀଷ୍ମଙ୍କର ମୃତ୍ୟୁଭେଦ ହୋଇଲା ନିକଟ ।
ଭୀଷ୍ମ ଦୋଷ ନାହିଁ ତୋର ପୁତ୍ର ଅଟେ ମନ୍ଦ
ପାର୍ଥକୁ ମୁକୁଟ ଦେଲା ନ ଜାଣିଣ ଛନ୍ଦ ।
ସେ ମୁକୁଟ ବାନ୍ଧି ବୀର ଚଳେ ଧନଞ୍ଜୟ
ଶ୍ରୀକୃଷ୍ଣଙ୍କ ଛନ୍ଦକଥା ଶୁଣ କୁରୁରାୟ ।
ମୁକୁଟ ମସ୍ତକେ ବାନ୍ଧି କୂଟେ ତାଙ୍କ ଦେହ
ଦେବଘରେ ଭେଟିଲା ଯେ ଭୀଷ୍ମ ଧନଞ୍ଜୟ ।
ବସ୍ତ୍ରରତ୍ନ ଅଳଙ୍କାର ପାର୍ଥଦେହେ ମଣ୍ଡି
ଦଣ୍ଡ ପ୍ରଣାମ ହୋଇଲା ବାହାର ଏରୁଣ୍ଡି ।
ମୁକୁଟ ଦେଖିଣ ଦୁର୍ଯ୍ୟୋଧନ ପ୍ରାୟ ମଣି
ଏକାଳେ ଚିହ୍ନିଲେ କୂଟେ ଦେବ ଚକ୍ରପାଣି ।
ଭୀଷ୍ମ ବୋଇଲେ ଆମ୍ଭର ଆୟୁ ଯେନ ବର୍ତ୍ତି
ଶତ୍ରୁ ମାର ପଞ୍ଚରାଜ୍ୟେ ହୁଅ ଏକଛତ୍ର ।
ପଛରେ ଜାଣିଲେ ଯହୁଁ ପାଣ୍ଡବ କପଟି
ଭେଦ କରଣ ବୋଇଲେ ପ୍ରାପ୍ତ ହେଉ ସୃଷ୍ଟି ।
କୃଷ୍ଣଙ୍କର କୂଟ ଯହୁଁ ପଛକୁ ଜାଣିଲେ
ନିଜ ମୃତ୍ୟୁଭେଦ ତହୁଁ ତାହାଙ୍କୁ କହିଲେ ।
ଆଜର ଯୁଦ୍ଧେ ଶିଖଣ୍ଡୀ ରଥୀ ଯେ ହୋଇବ
ତାହାକୁ ଦେଖି ଛାଡ଼ିବେ ଶସ୍ତ୍ର ଭୀଷ୍ମ ଦେବ ।
ଭୀଷ୍ମ ନାଶଗଲେ ଜାଣ ଯୁଦ୍ଧହିଁ ସରିଲା
ସକଳ ଭାବନା ଏବେ ନିଷ୍ଫଳ ହୋଇଲା ।
ପୌଷ କୃଷ୍ଣ ସପ୍ତମୀ ଦଶମ ଦିନ ଯୁଦ୍ଧ
ଶୁକ୍ରବାର ପୂର୍ବାଫାଲଗୁନୀ ଋକ୍ଷ ଶୁଦ୍ଧ ।
ଆଟ ରହେ ସରସ୍ୱତୀ ସରିତର କୂଳ
ପ୍ରଭାତେ ସଜ ହୋଇଲେ ଉଭୟଙ୍କ ବଳ ।
ରଥ ଗଜ ଅଶ୍ୱ ଆଉ ଦୁହିଙ୍କ ସଇନ
ମୁଖରବ ଶବଦରେ କମ୍ପାନ୍ତ ମେଦିନୀ ।
ଆକାଶରୁ ବିଜେ କଲେ ଦେବ ବ୍ରହ୍ମମୁନି
ସାମବେଦ ପଢ଼ନ୍ତ ଯେ ବୀଣା କରେ ଘେନି ।
ନାରଦେ ଦେଖି ବିଜୟ କଲେ କୁରୁରାଜା
ଦ୍ରୋଣ କର୍ଣ୍ଣ ଶଲ୍ୟ କୃପ କଲେ ପାଦପୂଜା ।
ନବମ ଦିବସ ପରେ ସମରର ଶେଷ
ଭୀଷ୍ମ ସମ୍ଭାଷିଲେ ଯାଇ ନାରଦଙ୍କ ପାଶ ।
ନାରଦ ହସିଲେ ରୂପ ଭୀଷ୍ମଙ୍କର ବୁଝି
ଶେଷକାଳ ପ୍ରାଣୀଙ୍କୁ ଯେ ଗୋଚର ନୁହଇ ।

ତୁମ୍ଭେ ଏହା ଜାଣୁଛି କି ହେ ମାନଗୋବିନ୍ଦ
ଆଜ ରଣେ ପଡ଼ିବ ହେ ଭୀଷ୍ମଙ୍କୁ ପ୍ରମାଦ ।
ଏହା ଆଶା ତ୍ୟାଗ କର ତୁମ୍ଭେ ମହାରାଜା
ଭୀଷ୍ମଙ୍କୁ ବୋଲ ତୁ ଆଜ ସମରକୁ ନ ଯା ।
ଭାରତଯୁଦ୍ଧ ଦେଖୁ ଏ ବେଳେ ଥାଉ ବର୍ତ୍ତି
କୁଳର ଶ୍ରେଷ୍ଠ ଅଟନ୍ତି ଭୀଷ୍ମ ମହାରଥୀ ।
ଏତେକ କହି ନାରଦ ହେଲେ ଅନ୍ତର୍ଦ୍ଧାନ
ଭୀଷ୍ମଙ୍କ ପାଶକୁ ବିଜେ କଲା ଦୁର୍ଯ୍ୟୋଧନ ।
ହେ ତାତ ତୁମ୍ଭର ଆଜ ଯୋଗ ଅଛି ମନ୍ଦ
ତୁମ୍ଭର ପଡ଼ିବ ବିଘ୍ନ କହିଲେ ନାରଦ ।
କହନ୍ତି ଗାଙ୍ଗେୟ ତୁମ୍ଭେ ବାରୁ ଜ୍ଞାନବାନ
କାହାର ବଳେ ମେଣ୍ଟିବ କର୍ମର ଘଟନ ।
ମାତାରଜ ପିତାବୀର୍ଯ୍ୟ ମିଶେ ଯେତେବେଳେ
ଧାତା ଯାହା ଲେଖିଥାଇ ଜୀବର କପାଳେ ।
କେ ଆନ କରିବ ସେହି କର୍ମର ଲିଖନ
ଯାହା କହିଲେ ନାରଦ ମହାତପୋଧନ ।
ଏଥକୁ ସନ୍ତାପ ତୁ ନ କର କୁରୁବୀର
ହାରିବା ଜିଣିବା ଅଟେ ସମର ବେଭାର ।
ଏତେ କହି ଜୟଶଙ୍ଖ ଗାଙ୍ଗେୟ ବାଇଲେ
ବିଘ୍ନରାଜ ସୁମରଣି ରଥେ ବିଜେ କଲେ ।
ମନ୍ମଥ ସାରଥୀ ତହୁଁ ବାହିଲା ତୁରଙ୍ଗ
ଚଳିଗଲେ ଯୋଦ୍ଧାମାନେ ଭୀଷ୍ମଙ୍କର ସଙ୍ଗ ।
ପୂର୍ବଦିଗରେ ପାଣ୍ଡବେ ପଶ୍ଚିମେ କୌରବେ
ସାଜନ୍ତି ଯେ ନନ୍ଦିଘୋଷ ରଥ ବାସୁଦେବେ ।
ଗୋବିନ୍ଦ ବୋଇଲେ ଶୁଣ ବୀର ଫାଲଗୁନୀ
ଶିଖଣ୍ଡୀକୁ ସେନାପତି କରି ଆସ ଘେନି ।
ଅର୍ଜ୍ଜୁନ ବୋଇଲେ ଦେବ ଭୀଷ୍ମଙ୍କ ନିମନ୍ତେ
ଶିଖଣ୍ଡୀ ଶିରେ ମୁକୁଟ ବାନ୍ଧିବି କେମନ୍ତେ ।
ଯାହାକାଳେ ଅଯାର୍ଥିକ କେବେହେଁ ନ ବର
ଅଥବା ଜିଣିବା ରଣେ ହାରିଲେହେଁ ହାର ।
ନସତ ହୋଇଣ ଯେହୁ କରେ ମାତକାର୍ଯ୍ୟ
ତାଙ୍କ ଜୀବନ ସାର୍ଥକ ନୁହେ ଦେବରାଜ ।
ସ୍ୱାମୀ କୂଟ କପଟରେ ଯେ କରେ ସଂଗ୍ରାମ
କ୍ଷତ୍ରିୟ କୁଳେ ଦୂଷଣ ବୁଡ଼େ ସର୍ବଧର୍ମ ।
ଅନେକ ମଣାଇ କରି କହନ୍ତି ଶ୍ରୀପତି
ତଥାପି ମଙ୍ଗିଲା ନାହିଁ ପାର୍ଥ ମହାମତି ।

ସହଦେବଙ୍କୁ ହକାରି ବୋଇଲେ ଶ୍ରୀଧର
ମୁକୁଟ ବାନ୍ଧ ତୁ ନେଇ ଶିଖଣ୍ଡୀ ଶିରର ।
ଧୃଷ୍ଟ ଅର୍ଜୁନ ସମର ଅଟେ ମହାଘୋର
ଶିଖଣ୍ଡୀଙ୍କୁ ସେନାପତି କଲେ ଯୁଧିଷ୍ଠିର ।
ବହୁଭଣ୍ଡ ଅଳଙ୍କାର ଦେଲେ ତାର କାୟେ
ଖେଚର ପ୍ରାୟେକ ଦେଲେ ରଥ ଯେ ଗୋଟିଏ
କୃଷ୍ଣକର୍ଣ୍ଣର ସଦୃଶେ ହୟବର ବର
ଦେବଭୁବନେ ପାଉନ୍ତି ଯାଇ ବେଗକର ।
ସାତ୍ୟକି ସାରଥୀ ହେଲା ଶିଖଣ୍ଡୀ ରଥରେ
ବାହଇ ଯେ ତୁରଙ୍ଗମ ପବନହୁଁ ଖରେ ।
ସୂର୍ଯ୍ୟମଣ୍ଡଳ ସଦୃଶେ ଶିଖଣ୍ଡୀର ରଥ
ଚଢ଼ିଣ ଯାଆନ୍ତେ ଶଲ୍ୟ ଓଗାଳିଲା ପଥ ।
ସମରେ ଶିଖଣ୍ଡୀ ବୀର ଅଟେ ମହାଯୋଧୀ
କ୍ଷତ୍ରୀବର ସୁନ୍ଦର ସେ ଯୁଦ୍ଧରେ ପ୍ରସିଦ୍ଧି ।
ପର୍ବତ ଭେଦଯାଏ ସେ ଶର ବିନ୍ଧନ୍ତେ
କେ ତାର ଶର ସହିବ ନରଜନ୍ମ ମାନେ ।
ବହୁତ ସମର କଲା ବେଗେ ଗୁରୁଶଲ୍ୟ
ମହାଭାରତ ଯୁଦ୍ଧେ ସେ ଅଟେ ମହାମଲ୍ଲ ।
ନଘାତ ଶବଦ ଜାଣି ତାର ଗୁଣ ନାଦ
ଉଭୟ ଦଳ ମଧ୍ୟରେ ହେଲା ମହାଯୁଦ୍ଧ ।
ସମର କରନ୍ତି ଧୃଷ୍ଟ ଅର୍ଜୁନର ତୁଲେ
ଶର ବିନ୍ଧିଲେ ଆଦିତ୍ୟ ଅଦୃଶ୍ୟ ହୋଇଲେ ।
ନିମିଷକେ ଶତ ଶତ ଶରମାନ ବିନ୍ଧି
ପ୍ରତିଶରେ ଅର୍ଜୁନ ତା ସମସ୍ତ ନିରୋଧି ।
ଦିଗ କମ୍ପିତ ହୋଇଲା ଶସ୍ତ୍ରର ଗହନେ
ଆକାଶେ କମ୍ପିତ ହେଲେ ସର୍ବ ଦିଗପାଳେ ।
ଶର ଆଚ୍ଛାଦନରେ ଦିଶେ ଗଗନ ଅନ୍ଧାର
ଆକାଶରେ ତେଜ ନ୍ୟୂନ ହେଲା ରବିଙ୍କର ।
ଯେସନେକ ବୈଶ୍ୱାନର ଦହେ ତୃଣରାଶି
ତେସନେ ଅର୍ଜୁନ ଶର ଧୃଷ୍ଟ ପରେ ବର୍ଷି ।
ଅତିବେଗେ ଶରମାନ ଛନ୍ଦେ ଅନର୍ଯ୍ୟାପ
ଅନ୍ୟ ଯୋଦ୍ଧା ଟଳାଇଲେ ଦେଖି ତାଙ୍କ କୋପ
କୋପରେ ଗାଙ୍ଗେୟ ହେଲେ ସମରେ ସମ୍ମୁଖ
ପଡ଼ିଲା ଯୋଦ୍ଧାଙ୍କୁ ତହିଁ ଯୁଦ୍ଧେ ମହାଦୁଃଖ ।
ଦେହ ଅସାଷ୍ଟମେ ଗଙ୍ଗାନନ୍ଦନ ଯେ ବେଗେ
ଛତ୍ରଶରଙ୍କୁ କାଢ଼ିଣ ପେଷିଲେ ଯେ ବେଗେ ।
ବିକଟ ଦଶନ ଘୋର କରାଳ ସ୍ୱରୂପୀ
ବଜେ କର୍ଣ୍ଣଜଟାରଙ୍କୁ ଘେନି ପାଦେ କ୍ଷେପି ।
ବଗଳଇ ଶସ୍ତ୍ର ଶୁଦ୍ଧ ସ୍ଫଟିକକୁ ଜଣି
ଜଳ ସ୍ଫଟିକରେ ଯେସନେ ଦିଶେ ଅର୍କମଣି ।
ମହୀ କମ୍ପମାନ ହେଲା ସେ ଅସ୍ତ୍ର ଆସନ୍ତେ
ଯେ ଯାଏ ଲୁଚିଲେ ଯାଇ ନିଜ ନିଜ ରଥେ ।
ଶ୍ରୀକୃଷ୍ଣ କହିଲେ ଚାହିଁ ଅର୍ଜୁନର ମୁଖ
ଭୈରବାସ୍ତ୍ର କଲେ ଧୃଷ୍ଟ ପାରିଲେ ତୁ ରଖ ।
ତୁହି ଯେବେ ସମ୍ଭାଳି ନ ପାରିବୁରେ ପାର୍ଥ
ହନୁକୁ କହିବା ସେହି ଗୋପ୍ୟ କରୁ ରଥ ।
ନାରାୟଣଙ୍କ ବଚନେ ବୀର ଫାଲଗୁନି
ଅସ୍ତି ନାସ୍ତି ନ କହିଣ ହେଲା ସେହି ତୁନି ।
ଗୋବିନ୍ଦ କହିଲେ ଶୁଣ ବୀର ହନୁମାନ
ଭୈରବ ଅସ୍ତ୍ର ଆସଇ ଘୋଟିଣ ଗଗନ ।
ପୃଥିବୀ ଘୋଟିଲାଟି ହେ ମହା ବ୍ରହ୍ମତେଜ
ଏହିକ୍ଷଣି ହୋଇଯିବ ସକଳ ଦହିଧ୍ୟ ।
ଏହାର ପ୍ରତିଅସ୍ତ୍ର ନ ଜାଣେ ସବ୍ୟସାଚି
ତୋର ବୁଦ୍ଧିବଳେ ଏଥୁ ବେଳେ ଯିବା ବଞ୍ଚି ।
ଅଞ୍ଜନାନନ୍ଦନ ଅଙ୍ଗେ କଷ୍ଟି ତେଜ ବ୍ୟାପୀ
ଭୁଜେ ଥାଇ ନନ୍ଦିଘୋଷ ପାତାଳକୁ ଚାପି ।
କଣ୍ଠେ ଗିରି ସମାନ ଯେଉଁ ନନ୍ଦିଘୋଷ
ମାରୁତି ସ୍ୱୟନ୍ତେ ରଥ ହୋଇଲା ଅଦୃଶ୍ୟ ।
ନନ୍ଦିଘୋଷ ନ ପାଇଲା ଯହୁଁ ରୁଦ୍ରଶର
ଲେଉଟି ଶୂନ୍ୟରେ ଲଜ୍ଜେ ହୋଇ ସରସର ।
ଧାଡ଼ିକାରେ ହନୁମନ୍ତ ରଥକୁ ତୋଳିଲା
ପାତାଳ ପୁରରୁ ରଥ ବେଗରେ ଉଠିଲା ।
ରୁଦ୍ରଶର ଦେଖି ଭୀଷ୍ମ ନିସ୍ତେଜ ହୋଇଛି
ଶସ୍ତ୍ରକୁ ଲକ୍ଷ୍ୟ କରିଣ ପାଣ୍ଡବ ଚାହିଁଛି ।
ଡାକନ୍ତି ଭୀଷ୍ମ ପାର୍ଥରେ ଜଗ ଆଜ ବାଟ
ଆଜ ବାଣମୁଖୁଁ ତୁମ୍ଭେ ଯିବ କରେ ବର୍ତ୍ତି ।
ଏକଲକ୍ଷେ ଭୀଷ୍ମ ସ୍ଥିର କରି ରହିଛନ୍ତି
କୃଷ୍ଣ ଆଶ୍ରିତେ ପାଣ୍ଡବେ ସର୍ବେ ଗଲେ ବର୍ତ୍ତି ।
ଏସନକ ସମୟରେ ପାର୍ଥ ଧାଡ଼ିକାରେ
ହାଡ଼ବୋଡ଼ା ଶରକୁ କାଢ଼ି ବିନ୍ଧିଲେ କୋପରେ
ଭୀଷ୍ମଙ୍କ ରଥ ସାରଥି ସର୍ବ ହେଲା ଚୂନା
ଧନୁ ଛିଡ଼ି ଭୀଷ୍ମଙ୍କର ଭେଦିଲାକ ସେନା ।

ହାକୋଡ଼ା ଶରରେ ଭୀଷ୍ମ ହୋଇଲେ ଉତ୍ଥାନ
ଦେହରେ ଭେଦନ୍ତେ କ୍ଷଣେ ହେଲେ ଅଚେତନ
ଧାଡ଼କାରେ ଚେତ ଭୀଷ୍ମ ଘେନଲେ ଭୂପସ୍ତ୍ରୀ
ଦେଖିଲେ ରଥରେ ଚଢ଼ି ଆଗରେ ଶିଖଣ୍ଡୀ ।
ଯାହାକାଳେ ଅଯାନିକ ମୁଖ ନଗ୍ରଷିଲେ
କାର୍ଯ୍ୟ ନାଶଯାଏ ଅନୁକୂଳ କରଗଲେ ।
ଶିଖଣ୍ଡୀକି ଦେଖି ଭୀଷ୍ମ ଏହା ବିଚାରଣ
ଧନୁ ଶସ୍ତ୍ର ତ୍ୟାଗ କଲେ ହସ୍ତୁ ଦେହ୍ରକ୍ଷଣ ।
ଏକାଳେ କଣ୍ଟକ ଶର ବନ୍ଧିଲା ଶିଖଣ୍ଡୀ
ମଦନର ଅବକାରେ ଭୀଷ୍ମ ଅଙ୍ଗ ମଣ୍ଡି ।
ମଦନଶର ଭେଦିଲା ଯହୁଁ ଭୀଷ୍ମ ବପୁ
ଅମ୍ବା ଯେ ଶିଖଣ୍ଡୀରୂପେ ତାର ହେଲା ରିପୁ ।
ଭୀଷ୍ମଙ୍କ ଶରୀରେ ଯେତେ ଥିଲେ ରୋମାବଳୀ
ଶିଖଣ୍ଡୀର ଶରଘାତେ ତହୁଁ ଭେଦ ଗଲା ।
ଯଷ୍ଟିର ଆଘାତ ପ୍ରାପ୍ତେ ଯେହ୍ନେ ହୁଏ ସର୍ପ
ଶିଖଣ୍ଡୀର ଶରେ ଭୀଷ୍ମ ହେଲେ ସେହିରୂପ ।
ହୃଦୟ ପଞ୍ଜର ଜଇ ଚରଣ ଅଙ୍ଗୁଷ୍ଠି
ଅଙ୍ଗ ଶିଶୁମ୍ନକା ଘେନ ସବଦ୍ୱାର ଫୁଟି ।
ଘୋଟିବାରୁ ମନସିଜ ମୋହେ ଚନ୍ଦ୍ରକଳା
କୁଟିଳକ କନ୍ଦର୍ପ ଭୀଷ୍ମ ଯେ ଭେଦକା ।
ଏସନକ ଶରୀରକୁ ସେହି ହେଲା ଦୁଃଖ
ମନସିଜ ଶରେ ଭୀଷ୍ମ ହୋଇଲେ ବିମୁଖ ।
ଦେହ ପ୍ରାଭବୀ ହୋଇଲେ ଖସିବାରୁ ରେତ
ଅସ୍ୱାଭବକ ମତରୁ ହେଲା ଏହିମତ ।
ନବସସ୍ର ବର୍ଷ ଯେଉଁ ଅସ୍ଖଳିତ ବିନ୍ଦୁ
ଅମ୍ବାର ଦର୍ଶନମାତ୍ରେ ଖସିଲା ସେ ବିନ୍ଦୁ ।
ଭୀଷ୍ମଙ୍କର ଅସାଷ୍ଟମେ ଭକଲେ ସଇନ
ସମର ରହୁ ହୋଲଣ ଶୁଭିଲକ ଧ୍ୱନ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଯଷ୍ଟି ହରାଇଣ ଅନ୍ଧ ହୁଏ ଯେଉଁମତ ।
କଉରବ ବଳ ସର୍ବେ ସେହିପରି ହେଲେ
ବିଧବା ସ୍ତ୍ରୀ ପରାୟେ କାନ୍ଦଣ ବୁଲନ୍ତେ ।
ଧାମନ୍ତେ ଯେ କଉରବେ ଭୀଷ୍ମ ସନ୍ନିଧାନେ
ଦେଖିଲେ ଗାଙ୍ଗେୟ ଛନ୍ତି ବିରସ ବଦନେ
ଭୀଷ୍ମଙ୍କ ଅବସ୍ଥା ହାଦେ ଦେଖି ଧାର୍ତ୍ତରାଷ୍ଟ୍ର
ଶୋକରେ ହସ୍ତ ତାଡ଼ିଲା ଆପଣା ଲଲାଟ ।

ଆହେ ପିତାମହ ଯାମଦଗ୍ନ୍ୟ ପର୍ଶୁରାମ
ଯାହାକୁ ହାରିଲେ କରି ଦୁଃସହ ସଂଗ୍ରାମ ।
ଯାହାର ଧନୁ ଧରନ୍ତେ କମ୍ପମାନ ସ୍କନ୍ଦ
ତୋତେ କସ ବୋଲିବ ଯେ ମୋର କର୍ମ ମନ୍ଦ
ଆଗହୁଁ ମୋତେ ଯଦ୍ୟପି କହିଥାନ୍ତୁ ଏହା
ପାଣ୍ଡବେ ନୁହନ୍ତ କାଧି ତୋହର ଅସାହା ।
ଭୀଷ୍ମଙ୍କୁ କୋଳ କରିଲା ମାନଚନ୍ଦ୍ରବଶୀ
କର୍ଣ୍ଣ ଦୁଃଶା ଶକୁନ ଯେ ସମସ୍ତେ ରୋଦନ୍ତି ।
ସଞ୍ଜୟ୍ୟ ବିଦୁର ଭୁଲେ କହେ ଧୃତରାଷ୍ଟ୍ର
ଏବେଳେ ପୁଅକୁ ମୋର ହେଲୁ ଏତେ କଷ୍ଟ
ଏହା ସଂକ୍ଷେପି କପାଁ ନ କହିଲୁ ଆଗହୁଁ
ଭବଷ୍ୟତ ଜ୍ଞାତା ବୋଲି ଜାଣିବ ମୁଁ କାହୁଁ
ବୋଇଲୁ ସମରେ କୃଷ୍ଣ ଅରଜୁନ ମାରି
ପଞ୍ଚରାଜ୍ୟ କରିବ ତୋ ପୁତ୍ର ଦଣ୍ଡଧାରୀ ।
ମୁହିଁ ତୋର ବଚନକୁ ଆଶାକଲି ପିତା
ମହତଙ୍କ ବାକ୍ୟ ଏଣେ ହୋଇଲା ଅନ୍ୟଥା
କୌରବ କଳଙ୍କର ତୁ ପରମ ଔଷଧି
ତୁ ଥାଉଁ ନ ଗଲା ମୋର ଏହି କଷ୍ଟ ବ୍ୟାଧି
ଭୂରିଶ୍ରବା କୋଳକରି ଧଇଲେ ଭୀଷ୍ମଙ୍କୁ
ହୃଦେ ଭିଡ଼ି ସ୍ନେହଭରେ ଆକୋରିଲେ ତାଙ୍କୁ
ବାବୁ ଏସନ ଚରିତ ଆଗହୁଁ ତୁ ଜାଣୁ
କୌରବ ଥାଟେ ତୁ କପାଁ ପ୍ରତିଜ୍ଞା ବଖାଣୁ ।
ଦ୍ରୁପଦ ସୁତ ଶିଖଣ୍ଡୀ ହେଲା ରିପୁ ତୋର
ତୃଣ ପ୍ରାପ୍ତେ କାଟିଥାନ୍ତି ଶରୀରକୁ ତାର ।
ଭୂରିଶ୍ରବା ବୋଲେ ଏବେ ଅକର୍ତ୍ତବ୍ୟ ଅଙ୍ଗ
ଶଶକର ପରାକ୍ରମେ ନାଶଗଲା ସିଂହ ।
ଏତେ ଆଡ଼ମ୍ବରେ ଯୁଦ୍ଧ କପାଁ ଆରମ୍ଭିଲୁ
ବୃକ୍ଷରେ ଚଢ଼ାଇ ଦେଇ ମୂଳ କାଟିଦେଲୁ ।
ଏବେ ଆଜ୍ଞା ଦିଅ ମୁହିଁ ମାରିବି ଶିଖଣ୍ଡୀ
ତିରଣ ପ୍ରମାଣେ ମାଂସ କରି ଖଣ୍ଡି ଖଣ୍ଡି ।
କହୁଁ କହୁଁ ଭୂରିଶ୍ରବା ହେଲେ ମହାକ୍ରୋଧୀ
ଚକ୍ଷୁ ରକ୍ତବର୍ଣ୍ଣ ହେଲା ନ ଦିଶିଲା ବୁଦ୍ଧି ।
ଭୀଷ୍ମ ବୋଇଲେ ଶିଖଣ୍ଡୀ କାମିନୀ ଅଟଇ
ସେ ହେଲୁ ତାହାକୁ ଯୁଦ୍ଧେ ନ ମାରିଲି ମୁହିଁ
ମୁହିଁ ବିନାଶ ଲଭିଲି ଶିଖଣ୍ଡୀ ସମରୁ
ଧୃଷ୍ଟଦ୍ୟୁମ୍ନ ହାତେ ନାଶଯିବେ ଦ୍ରୋଣ ଗୁରୁ

ଧୃତରାଷ୍ଟ୍ର ଶତ ପୁତ୍ର ଭୀମ ସଂହାରିବ
ଅର୍ଜୁନର ଶରଘାତେ କର୍ଣ୍ଣ ନାଶଯିବ ।
ଶଲ୍ୟକୁ ନାଶିବେ ଯୁଦ୍ଧେ ରାଜା ଯୁଧିଷ୍ଠିର
ଶକୁନି ନାଶଯିବ ସେ ସହଦେବ ବୀର ।
କୃପ ଅଶ୍ୱତ୍ଥାମା ଦୁହେଁ ଯୁଦ୍ଧେ ଅବରଣି
ଭୂରିଶ୍ରବା ସୋମଦତ୍ତ ଯାଲୁ କେତେ ଗଣି ।
ତୁ ବାବୁ ମାନଗୋବିନ୍ଦ ଏବେ କର ବୁଦ୍ଧି
ଏକା ଶକୁନି କଥାରେ ହେଉ କପଁା ଧନ୍ଦ ।
ଆରେ ଦୁର୍ଯ୍ୟୋଧନ ମୋର ପିତା ଶାନ୍ତନୁ
ମାତା ଅଟଇ ଜାହ୍ନବୀ ବୁଝ ଏହା ଜାଣୁ ।
ମୋହର ଯେ ଇଚ୍ଛାମୃତ୍ୟୁ ଅଟଇ ବିଧି
ଜିଣିବାକୁ ପାଣ୍ଡବେ ଯେ ମୋତେ କଲେ ବୁଦ୍ଧି
ଆଜ କି ତୋତେ ପ୍ରାପତ ହୋଇବ ସମ୍ପଦ
ଏହି କଥାଗୋଟି ବାବୁ ଛାଡ଼ ତୋର ହୃଦ ।
ବଦନ୍ତି ଗାଙ୍ଗେୟ ଶୁଣ ହେ ମାନଗୋବିନ୍ଦ
ପାଣ୍ଡବଙ୍କ ଭୁଲେ ଆଉ ନ କର ତୁ ଦ୍ୱନ୍ଦ୍ୱ ।
ଛାଡ଼ଦେଅ ମନୁ ତୋର ଲୋଭ ମୋହ ରାଗ
ଯୁକତେ ପାଣ୍ଡବଙ୍କର ଅଛି ଏଥେଁ ଭାଗ ।
ମାନଗୋବିନ୍ଦ ବୋଇଲା ନ କହ ଏମନ୍ତେ
ସୀମାଏ ନ ଦେବି ଜୀବ ଥିବା ପରିଯନ୍ତେ ।
ଶୁଣିଣ ମଉନବ୍ରତ ହୋଇଲେ ଗାଙ୍ଗେୟ
ପ୍ରତିଜ୍ଞା କରି ଉତ୍ତର ଦେଲାକ ରାଧେୟ ।
କର୍ଣ୍ଣ ବୋଇଲାକ ଭୀଷ୍ମ କହିଲେ ଏ ବାଣୀ
ଶରୀର ମୋର କମ୍ପୁଛି ସେହି କଥା ଶୁଣି ।
ବଞ୍ଚିଲୁ କୌରବ ଅନ୍ଧେ ପାଣ୍ଡବେ ତୋ ପ୍ରୀତି
ମୃତ୍ୟୁଭେଦ କହିଲୁ ତୁ ଆଜର ପାହାନ୍ତି ।
ତୋତେ ଆଶା କରି ଆମ୍ଭେ ଅପସରି ଥିଲୁ
ଅନେକ ସୈନ୍ୟଙ୍କୁ ତୁହି ବୃଥା ମରାଇଲୁ ।
ଲଢ଼କ ଯୁଦ୍ଧ ସରିଲା ଜାଣ ଆଜଠାରୁ
ଏବେ ଦୁର୍ଯ୍ୟୋଧନ ହେବ ପଞ୍ଚରାଜ୍ୟ ମେରୁ
କର୍ଣ୍ଣ ଦ୍ରୋଣ ଅଶ୍ୱତ୍ଥାମା କୃପ ଶଲ୍ୟ ଆମ୍ଭେ
ତୁହି ଦେଖିବୁ ପାଣ୍ଡବେ ବର୍ତ୍ତିବେ କେମନ୍ତେ ।
ଭୀଷ୍ମ ବୋଇଲେ ଛାଡ଼ିଲୁ ଆମ୍ଭେ ସେ ସମର
ଯୁଦ୍ଧ ଶେଷ ଦେଖିବୁ ଯେ ରହି ଏହିଠାରେ ।
ପୁଣି ବୋଇଲେ ବାବୁ ରେ ଶୁଣ କୁରୁରାଜା
ଏହିଠାରେ ମୋ ର ପାଇଁ କରିଦିଅ ଶଯ୍ୟା ।

ଆଜ୍ଞା ପ୍ରମାଣରେ ସେହି ମାନଚକ୍ରବର୍ତ୍ତୀ
ମୃସଞ୍ଚ ଶଯ୍ୟା ଏ ଦେଲା ତୁଳାର ସୁପାତି ।
ଭୀଷ୍ମଙ୍କୁ ସେହି ଶଯ୍ୟାରେ ଶୁଆଇଲା ତୋଳି
ମହାତେଜ ଚଳନ୍ତେ ସେ ଶରୀର ପ୍ରଜ୍ୱଳି ।
ଶୁଆଇଲେ କଉରବେ ଗଲେ ନିଜ ସ୍ଥାନ
ରାତ୍ରଅର୍ଦ୍ଧେ ପାଣ୍ଡବଙ୍କୁ ଘେନି ଭଗବାନ ।
ପୌଷ ମାସ କୃଷ୍ଣପକ୍ଷ ସପ୍ତମୀର ରାତି
ପାଣ୍ଡବେ ଭେଟିଲେ ଯାଇ ଭୀଷ୍ମ ମହାରଥୀ ।
ଦେଖିଲେ ଭୀଷ୍ମଙ୍କର ଯେ ଏପରି ଅବସ୍ଥା
ଯୁଧିଷ୍ଠି ଶୋକେ ବୋଇଲେ ଏହା ହେଲା ପିତା
କୁଟୁମ୍ବ ଲୋକମାନଙ୍କୁ ଦେଇ ଏତେ ଶାସ୍ତି
କେବଣ ଯଶ ନେବଟି ମାନଚକ୍ରବର୍ତ୍ତୀ ।
ଭୀଷ୍ମ ବୋଇଲେକ ଆହେ ଦେବ ଚକ୍ରଧର
ଶକ୍ତି ନାହିଁ କରିବାକୁ ତୋତେ ନମସ୍କାର ।
କର ଚରଣ ମୋହର ଆଉ ନ ଚଳଇ
ମୋହର ଶରୀର ମୋତେ ଗୋଚର ନୁହଇ ।
ଭୀଷ୍ମଙ୍କ ଅବସ୍ଥା ଦେଖି ପ୍ରସନ୍ନ ଅଚ୍ୟୁତ
ବର ମାଗ ଭୀଷ୍ମ ତିନିବାର ସତ୍ୟ ସତ୍ୟ ।
ତୁ ମହାରଥୀ ଏ ମହୀମଣ୍ଡଳର ମଧ୍ୟେ
ତୋତେ ଜିଣିବା ସମର୍ଥ ନ ଥିଲା କେ ଯୁଦ୍ଧେ
ମୋହର ବଚନ ମାନି ପାଣ୍ଡବଙ୍କ ହିତେ
ଏସନ ଅବସ୍ଥା ହେଲୁ ଦେବ ଘଟସୂତ୍ରେ ।
ମାଗ ହୋ ଭୀଷ୍ମ ତୋହର ମନେ ଯେଉଁ କଥା
ତୁ ଯାହା ମାଗିବୁ ମୁହିଁ ଦେବାକୁ ଶକତା ।
ଭୀଷ୍ମ ବୋଇଲେ ହେ ହରି ଅନ୍ୟେ ନାହିଁ ମନ
ଅପୂର୍ବକ ପାପ ମୋର କ୍ଷମ ଭଗବାନ ।
ରଣରଙ୍ଗ କରି ଯେତେ ଦେଖନ୍ତି ତୋ ମୁଖ
ସର୍ବ ପାପ ନାଶି ପାନ୍ତି ବୈକୁଣ୍ଠରେ ସୁଖ ।
ସେହି ମହାଯଜ୍ଞ ମୋତେ ହୋଇଲା ପ୍ରାପତ
ଅପୂର୍ବିକ ଦୋଷ ପାରିକର ଜଗନ୍ନାଥ ।
ମାଘମାସ ଶୁକ୍ଳପକ୍ଷ ଯେଉଁ ଏକାଦଶୀ
ଏଥି ପ୍ରାଣଗଲେ ସୁଖୀ ହେନ୍ତି ହୃଷୀକେଶି ।
ସ୍ୱାମୀ ଅନେକ ଝିଙ୍ଗାସ କର୍ଣ୍ଣ କଲା ମୋତେ
ଶରୀର ରଖିଲି ଯୁଦ୍ଧ ଶେଷ ପରିଯନ୍ତେ ।
ଶ୍ରୀକୃଷ୍ଣ ବୋଇଲେ ମୋର ଭକ୍ତ ଯେତେ ଜନ
ସେ ତୋହର ଧର୍ମପୁତ୍ର ଏ ଦୃଢ଼ ବଚନ ।

ଏହି ପ୍ରତିବାକ୍ୟ ଦେଲେ ଦେବ ହୃଷୀକେଶ
ମୋତେ ଯେ ଭକତି ହେବ ସେ ତୋହର ଶିଷ୍ୟ
କାର୍ତ୍ତିକ ଶୁକ୍ଳପକ୍ଷ ଦଶମୀର ତିଥି
ଭୀଷ୍ମ ଦଶମୀ ନାମରେ ହୋଇବ ଯୁକତି ।
ମୋର ଭକତ ଯେବଣ ଜନ ଚିତ୍ତ ଶୁଦ୍ଧେ
ଭୀଷ୍ମଙ୍କର ନାମ ଘୋଷି ଦେଉଥିବ ଶ୍ରାଦ୍ଧେ ।
ପ୍ରୟାଗରେ ପିଣ୍ଡ ଦେଲେ ଯେତେ ଫଳଶ୍ରୁତି
ସେ ଫଳ ଲଭିବେ ଜନେ ତୋତେ କରି ଭକ୍ତି
ଆହେ ଭୀଷ୍ମ ତୁଳ ଶୁକ୍ଳ ଦଶମୀର ଦିନ
ଭୀଷ୍ମ ଦଶମୀ ନାମରେ ହୋଇବ ଗଣନ ।
ଭୀଷ୍ମେ ବୋଇଲେ ଏ ବ୍ରତେ ହୋନ୍ତିଲେକ ପୁଣ୍ୟ
କେହ୍ନେ ନ କରିବେ ଏହା ପୁଣ ଜନାର୍ଦ୍ଦନ ।
କୃଷ୍ଣ ବୋଇଲେ ଏ ବ୍ରତ ରାଜାର ସମାନ
ପ୍ରଥମରେ ବ୍ରତ କଲେ ପ୍ରାପ୍ତ ହୁଏ ପୁଣ୍ୟ ।
ଆଜହୁଁ ଭୀଷ୍ମ ଦଶମୀ ଆଉ ଏକାଦଶୀ
ଦ୍ୱାଦଶୀ ତ୍ରୟୋଦଶୀ ଯେ ଆଉ ଚତୁର୍ଦ୍ଦଶୀ ।
ଏହି ପାଞ୍ଚଗୋଟି ବ୍ରତ ତୋତେ ମୁଁ ଦେଲଇଁ
ଏହାପରି ବୋଇଲେ ଯେ ଦେବ ଯଦୁସାଇଁ ।
ଚଉଦଶ ଏକାଦଶୀରେ ଏହି ଅଟେ ରାଜା
ତୋହ ନାମରେ କରିବେ ସର୍ବଜନ ପୂଜା ।
ତୁ ଷନ୍ଦି ବୃତ୍ତି ତେଜିଲୁ ମୋର କାର୍ଯ୍ୟ ଅର୍ଥେ
ସର୍ବେ ଆତ୍ମଜ ପରାୟେ ପିଣ୍ଡ ଦେବେ ତୋତେ
ଭୀଷ୍ମ ବୋଇଲେକ ମୋତେ ଦେଲୁ ଯେ ସୁଗତି
ସର୍ବଧର୍ମ ପାଇଲଇଁ ଆହେ ଶ୍ରୀପତି ।
ପୁଣି ବୋଇଲେ ପାଣ୍ଡବେ ଅଟନ୍ତି ମୋ ପୁତ୍ର
ଏବେ ଅର୍ଜିଲେ ସମ୍ପଦ ପାଇ ପରମାର୍ଥ ।
ତହୁଁ ଅର୍ଜ୍ଜୁନେ ବୋଇଲେ ଭୀଷ୍ମ ମହାତେଜା
କରିଦିଅ ରଣ ଶେଷଯାଏ ଶରଶଯ୍ୟା ।
ଏଥିରେ କହୁଛ ମୃତପିଣ୍ଡ ଯେ ପଡ଼ିବ
ଆବର ରକତନଦୀ ଏଠାରେ ବହିବ ।
ଯୋଗିନୀ ପ୍ରେତ ପିଶାଚୀ ଏଠାକୁ ଆସିଣ
ନୃତ୍ୟରଙ୍ଗେ ମଡ଼ା ଖାଇ କରିବେ ଭ୍ରମଣ ।
ସୁଁପାତି ଶେଯେ ଲାଗିବ ମୋତେ ସୁଖେ ନିଦ୍ରା
ତାଙ୍କ ଭ୍ରମଣେ ଭାଜିବ ମୋର ମହାମୁଦ୍ରା ।
ନିଶାଚରଗଣ ପୀଡ଼ା ଦିଅନ୍ତି ଯେମନ୍ତେ
କର କାର୍ଯ୍ୟ ନିଦ୍ରା ଯଥା ନ ମାଡ଼ିବ ମୋତେ

ଭୀଷ୍ମଙ୍କ ବଚନେ ପାର୍ଥ ଯେଷି ମନଭେଦ
ଶଯ୍ୟା ଗୋଟିଏ କଲା ସେ ଶରେ ଶର ଛନ୍ଦ ।
ପୃଥ୍ୱୀର ଭିତରେ ଶର ନିଗାଳ ଭେଦିଲା
ଉପରକୁ ଛଅତାଳ ଉର୍ଦ୍ଧ୍ୱଗ ହୋଇଲା ।
ଶିର ସୀମସ୍ଥାନ ଆଉ ଜଙ୍ଘକୁ ଉଠାଇ
ନାରାଚ ରହିଲା ତେଜ ସହସ୍ର ଯେ ଯାଇ ।
ବେନିଲକ୍ଷ ବାଣ ବହେ ବେନି ଯେ ଭୁଜକୁ
ପାଞ୍ଚଗୋଟି ବାଣ ବିନ୍ଧ ବକ୍ଷସ୍ଥଳ ଠାକୁ ।
ବେନି ପାଦରେ ରହିଲା ମର୍ଭୁ ତେକ ବାଣ
ଏମନ୍ତ ଶଯ୍ୟାରେ ଭୀଷ୍ମ କଲେକ ଶୟନ ।
ସେ ଶରଶଯ୍ୟାକୁ ଭୀଷ୍ମ କଲେକ ମର୍ମଷା
ଶୂନ୍ୟେ ଶରୀର ରହିଲା ଶରହିଁ ଭରସା ।
ମହାରସ ଗଳତରେ ଅବଶ ଶରୀର
ଗଳ ନ ପାରିଣ ଦେହ ହୋଇଲା ସୁସ୍ଥିର ।
ନିଶ୍ଚଳ ହୋଇଣ ଭୀଷ୍ମ କେତେ ଦିନପାଇଁ
ଶରଶଯ୍ୟାରେ ରହିଲେ ଦୁଃଖସୁଖ ସହି ।
ଭୀଷ୍ମ ବୋଇଲେକ ସାଧୁ ସାଧୁରେ ଅର୍ଜ୍ଜୁନ
ପର ମନ ଜାଣୁ ତୁହି ତୋ ମହିମା ଧନ୍ୟ ।
ପର ମନ ଯେ ଜାଣଇ ସେହି ପରମାର୍ଥି
ପରକାଳରେ ତାହାର ନିଶ୍ଚେ ହୁଏ ହିତ ।
ମୋର ଆପୁ ଯେନ କର୍ଣ୍ଣି ଆରେ ଫାଲଗୁନ
ପଞ୍ଚରାଜ୍ୟେ ରାଜା ହୁଅ ଫଳୁ ଆମ୍ଭ ବାଣୀ ।
ବର ଦେଇଣ ଗାଙ୍ଗେୟ ହୋଇଲେ ତୃପତି
ପାଣ୍ଡବମାନେ ରହିଲେ ଭୀଷ୍ମଙ୍କର କତି ।
ଶରଶଯ୍ୟାରେ ଭୀଷ୍ମଙ୍କ ଦେହ କଲା ଜ୍ୱାଳା
ଦୁର୍ଯ୍ୟୋଧନେ ଜଳ ମାଗେ ଶାନ୍ତନୁଙ୍କ ବଳା
ବହୁଜଳ ଇଢ଼ାଇଲେ ନେଇ କୁରୁବୀର
ତଥାପି ଶାନ୍ତ ନୋହିଲା ଭୀଷ୍ମଙ୍କ ଶରୀର ।
ଅର୍ଜ୍ଜୁନକୁ ବୋଇଲେ ଯେ ଭୀଷ୍ମ ମହାରଥୀ
ବାବୁ ଦେହ ଜ୍ୱାଳାକର ଦିଏ ବଡ଼ ବ୍ୟଥା ।
ଏହା ଶୁଣି ଜଳଶର କାଢ଼ିଲେ କିରୀଟି
ଧନୁରେ ଯୋଗ ଦିଅନ୍ତେ ଜଳ ହେଲା ବୃଷ୍ଟି
ଆକାଶରୁ ବରଷଇ ଯେହ୍ନେ ଜଳଧର
ସେହି ସଦୃଶେ ପଡ଼ଇ ଗଙ୍ଗାଜଳ ଧାର ।
ଜଳ ପଡ଼ନ୍ତେ ଭୀଷ୍ମଙ୍କ ସୁଶୀତଳ କାୟେ
ନିଶ୍ଚିନ୍ତେ ରହିଲେ ଭୀଷ୍ମ ସେ ଶରଶଯ୍ୟାୟେ ।

ଜୟ ଜୟ ଜଗନ୍ନାଥ ଅନନ୍ତ ମୂରତି
ଜୟ ଜୟ ଜଗନ୍ନାଥ ବଇକୁଣ୍ଠ ପତି ।
ଜୟ ଜୟ ଜଗନ୍ନାଥ କମଳାରମଣ
ଜୟ ଜୟ ଜଗନ୍ନାଥ ଦୁଃଖ ନିବାରଣ ।
ଜୟ ଜୟ ଜଗନ୍ନାଥ ଜଗତ କରତା
ଜୟ ଜୟ ଜଗନ୍ନାଥ ସର୍ବ ପିତାମାତା ।
ସମସ୍ତେ ବୋଲନ୍ତି ତୁମ୍ଭେ ଦୟାନ୍ତି ପୁରୁଷ
ସାଧୁଙ୍କୁ ରକ୍ଷଣ ପୁଣି ଦୁଷ୍ଟଙ୍କୁ ବିନାଶ ।
ଜୟ ତୁ ଦେବ ଈଶ୍ୱର ଅଭୟ ଦାଲୁଙ୍କା
ସଂସାର ସାଗର ପ୍ରଭୁ ତୁମ୍ଭ ସିନ୍ଧ ଏକା ।
ଶଙ୍କର ଶୁଦ୍ଧସ୍ଫଟିକ ଜାଣିଣ ତାଙ୍କଙ୍କ
ନିଶାକର ମୌଳି ନାଥ ଜୟ ତ୍ରିଅମ୍ବକ
ସଂସାର ଅଗାଧ ଜଳେ ଅଗୋଚର ମାୟା
ସବୁ ଗୋପ୍ୟ କଲୁ ନାଥ ତୋର ଏକକାୟା ।
ନିରାକାର ପୁରୁଷ ଯେ ନିର୍ମଳ କାନ୍ତି
ନିସତ କଷଣୁ ମୋତେ ଉଦ୍ଧର ଧୂର୍ଜଟି ।
କାମୁକ ପୁରୁଷ ନାଥ ନାରୀ ଅର୍ଦ୍ଧକାୟେ
କାମୁକ ପୁରୁଷ ନାଥ ସ୍ୱର୍ଗଦା ସଦୟେ ।
ସୁଜନ ଜନମାନଙ୍କ ହୃଦ ଜପାମାଳା
ଭଇରବରୂପେ ଦେବ ପାନ୍ତି ମହାଖଳା ।
ଭୁଜେ ପିନାକ ଖଟ୍ୱାଙ୍ଗ ଆଉ ପାଶୁପତ
ଶିରେ ଶୁକଳ ଶୀତାଂଶୁ ଚନ୍ଦ୍ର ଲିଙ୍ଗଗାତ୍ର ।
ତ୍ରିପୁର ଧ୍ୱଂସିଲୁ ନାଥ କଉତୁକ ଖେଳେ
ଅନ୍ଧକ ନାଶିଲୁ ନାଥ ବଢ଼ାଇ ସଂତୋଷେ ।
ଯୋଗେ ଯୋଗେଶ୍ୱର ପରମ ଯେ ଯୋଗଜିତା
ମଦନନାଶନ ଜିତେନ୍ଦ୍ରିୟ ସର୍ବପିତା ।

ପ୍ରଳୟ ତାରଣ ନାଥ ଅଭୟ ଭବ ମା
ଶାରଳା ଦାସର ନାଥ ଘେନବା ଦାଇମା ।
ଆହେ ବୁଧଜନେ ନ ଘେନିବା ମୋର ଦୋଷ
ଏ ଜନ୍ମେ ପଢ଼ିଲି ନାହିଁ ନାହିଁ ପୂର୍ବାଭ୍ୟାସ ।
ଏ ଜନମେ ମୂରୁଖ ମୁଁ ନ ଜାଣଇ କିଛି
କାଞ୍ଚି ଭକ୍ତିରେ ଦୟା କଲେ ପିଙ୍ଗଳାକ୍ଷୀ ।
ଜାତ ଅନ୍ତ ମଧ୍ୟ ଅବସାନ ଯାର ନାହିଁ
ପରମ ଗତି ଇଚ୍ଛିଲେ ତୋ ଚରଣ ଧ୍ୟାଇ ।
ବଦନ୍ତି ଅଗସ୍ତି ଭୀଷ୍ମପର୍ବ ଅନ୍ତ କଥା
ଶୁଣ ବାବୁ ଅଷ୍ଟାଦଶ ପର୍ବର ବାରତା ।
କେହୁ ହେ ଯିବ ବା ଗଣି ଗଙ୍ଗାବାଲି ଦେଖି
ବଡ଼ବା ଅନଳେ କେବା ଜାଣୁ ଦେବ ଯୋଖି
ନିରାଶ୍ରିତ ଜନ ମୋର ଆଶ୍ରା କେହି ନାହିଁ
ଶରଣ ପଶିଲି ପ୍ରଭୁ ବେଗେ କର ବାହି ।
କୃପାଜଳ ନିଧିମା ଗୋ ପ୍ରସନ୍ନ ହୁଅଁ ତୁ ମା
ହୃଦଗତେ ମୁଁ ଚିନ୍ତିଲି ପ୍ରସନ୍ନ ଶାରଳା ।
କେଶରୀଆସନା ମାଗୋ ଝଙ୍କଡ଼ ନିବାସୀ
ଏ ଦୀନଜନକୁ ଭବତାପୁଁ ଉଦ୍ଧରସି ।
ଅନେକ ଜନ୍ମ ପାତକ ଦୁଃଖ ମୋର ଖଣ୍ଡି
ରଖାଅ ସେବାରେ ମାଗୋ ଶ୍ରୀଶାରଳା ଚଣ୍ଡୀ
ଶ୍ରୀମହାଭାରତ ଭୀଷ୍ମପର୍ବ ଦଶଦିନ
ଯୁଦ୍ଧ କଥା ତୋ କୃପାରେ କଲି ବିରଚନ ।
ନର୍ମଦା ସରସ୍ୱତୀଙ୍କ ପାଦେ ମୋର ସେବା
ନାରାୟଣ ଶ୍ରୀଶାରଳା ଦାସେ ମୁକ୍ତି ଦେବା ।

ମହାଭାରତ ଭୀଷ୍ମପର୍ବ ସମ୍ପୂର୍ଣ୍ଣ



ମୁଦ୍ରାକର—ଶ୍ରୀ କମଳଲୋଚନ ଗଡ଼ନାୟକ, ଶ୍ରୀ ରାଧାରମଣ ପ୍ରେସ, କଟକ —୧୯୮୫